


୧୯୮୨ ଜାନୁଆରୀ ୭ ତାରିଖ ଦିନ ଭାରତର ରାଷ୍ଟ୍ରପତି ଶ୍ରୀ ଏନ୍. ସଂଜୀବ ରେଡ୍ଡି ରାଉରକେଲା ଇସ୍ପାତ୍ କାରଖାନାର ଦ୍ୱିତୀୟ ବିଦ୍ୟୁତ୍ ପ୍ଲାଣ୍ଟର ଭିତିପ୍ରସ୍ତର ସ୍ଥାପନ କରୁଛନ୍ତି । ଏହି ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଯୋଗ ଦେଇଥିଲେ ।



୧୯୮୨ ଜାନୁଆରୀ ୭ ତାରିଖ ଦିନ ଭାରତର ରାଷ୍ଟ୍ରପତି ନୀଲମ ସଂଜୀବ ରେଡ୍ଡିଙ୍କ ରାଉରକେଲା ପାଇପ୍ ପ୍ଲାଣ୍ଟ ପରିଦର୍ଶନ ।



୧୯୮୨ ଜାନୁଆରୀ ୫ ତାରିଖ ଦିନ ଭାରତର ରାଷ୍ଟ୍ରପତି ଶ୍ରୀ ଏନ୍. ସଂଜୀବ ରେଡ୍ଡିଙ୍କ ଲିଙ୍ଗରାଜ ମନ୍ଦିର ପରିଦର୍ଶନ ।

# ଉତ୍କଳ ପ୍ରସଙ୍ଗ

ପୌଷ | ୧୯୦୩ ଶକାବ୍ଦ | ୩୮ଖଣ୍ଡ | ଷଷ୍ଠ ସଂଖ୍ୟା | ଜାନୁୟାରୀ ୧୯୮୨

**ସମ୍ପାଦନା ମଣ୍ଡଳୀ**

ନିର୍ଦ୍ଦେଶକ: ଶ୍ରୀ ମିହିର କୁମାର ସାଓ

ସମ୍ପାଦକ: ଶ୍ରୀ ବିପିନ ବିହାରୀ ପଟ୍ଟନାୟକ

ସହ ସମ୍ପାଦକ: ଡକ୍ଟର ସତ୍ୟନାରାୟଣ ନନ୍ଦ

ସହଯୋଗୀ ସମ୍ପାଦକ: ଶ୍ରୀ ସୁରେନ୍ଦ୍ର କୁମାର ପଟ୍ଟନାୟକ

ମୁଖ୍ୟ ସମ୍ପାଦକ

**ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟ**

ମୁଦ୍ରଣ

ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

ପ୍ରଚ୍ଛଦ ଶିଳ୍ପୀ ଶ୍ରୀ ଉଦୟ ଜେନା

ପ୍ରକାଶନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର
ବାର୍ଷିକ ଦେୟ ୧୦.୦୦
ପ୍ରତି ଖଣ୍ଡ ୧.୦୦

ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ଦରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେଭଳି ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠ ବୋଲି ଭାବିବା ଉଚିତ ନୁହେଁ ।

'ଉତ୍କଳ ପ୍ରସଙ୍ଗ' ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସଂପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁକ୍ଷେତ୍ରରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

# ମୋ' ଦୃଷ୍ଟିରେ...

'ଉତ୍କଳ ପ୍ରସଙ୍ଗ' ତାର ସହୃଦୟ ବିଦ୍ୱାନ୍ ପାଠକ ଓ ଲେଖକମାନଙ୍କୁ ସାଧାରଣତନ୍ତ୍ର ଦିବସର ଶୁଭେଚ୍ଛା ଜ୍ଞାପନ କରୁଛି ।

ଭାରତ ଏକ ସାଧାରଣତନ୍ତ୍ର ରାଷ୍ଟ୍ରବୋଲି ଆମର ଯେଉଁ ଗର୍ବ, ତାହା ଅତୁଟ ରହୁ, ମଙ୍ଗଳମୟଙ୍କ ନିକଟରେ ଏହାହିଁ ଆମର ନବବର୍ଷର ପ୍ରାର୍ଥନା । ଏହି ରାଷ୍ଟ୍ର ପ୍ରତିଦିନ ପ୍ରତି ମୁହୂର୍ତ୍ତରେ ଅଧିକ ବଳଶାଳୀ ଓ ତେଜସ୍ୱୀ ହେଉ, ଏହା ପ୍ରତ୍ୟେକ ଭାରତୀୟଙ୍କର ଆଶା ।

ସ୍ୱାଧୀନ ରାଷ୍ଟ୍ର ଗଠନ କରିବା ନିମନ୍ତେ ସାହିତ୍ୟ ଓ ସାହିତ୍ୟିକଙ୍କର ଅବଦାନର ଗୁରୁତ୍ୱ ଏବେ ସୁନାବେଢ଼ାଠାରେ ଅନୁଷ୍ଠିତ ସାହିତ୍ୟ ସମ୍ମିଳନୀରେ ଆଲୋଚନା କରାଯାଇ-ଥିଲା । ସାହିତ୍ୟ ସମାଜର ପ୍ରତିଫଳନ ହେଉ ବୋଲି ସମସ୍ତେ ଆଗ୍ରହ ପ୍ରକାଶ କରନ୍ତି । କିନ୍ତୁ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଏକ ନୂତନ ଚିନ୍ତାଧାରା ସେହି ସମ୍ମିଳନୀରେ ଉପସ୍ଥାପନ କରିଛନ୍ତି । ସାହିତ୍ୟିକ କେବଳ ସ୍ରଷ୍ଟା ନୁହେଁ, ଦ୍ରଷ୍ଟାମଧ୍ୟ । ତା'ର କୃତିରେ ଯେଉଁ ଚିତ୍ର ରୂପ ଲାଭ କରିଥାଏ, ତାହା କେବଳ ବର୍ତ୍ତମାନ ଭିତରେ ସୀମିତ ନହୋଇ ସୀମାହୀନ ଭବିଷ୍ୟତକୁ ମଧ୍ୟ ପ୍ରଭାବିତ କରି ପ୍ରଭାବିତ କରିଥାଏ । ତାର ପ୍ରକୃଷ୍ଟ ଭାରତୀୟ ଉଦାହରଣ ହେଲା, ମହାକବି ବାଲ୍ମୀକିଙ୍କ ରଚିତ ରାମାୟଣର ବର୍ଣ୍ଣିତ କଥାବସ୍ତୁକୁ ରୂପାୟିତ କରିବାକୁ ସ୍ୱୟଂ ଭଗବାନ ରାମଚନ୍ଦ୍ର ଅବତାର ଗ୍ରହଣ କରିଥିଲେ । ବର୍ଣ୍ଣାଡ଼ ଶ' ଭିକ୍ଟୋରୀୟ ଯୁଗରେ ମଧ୍ୟ ଫେବିଆନ ସମାଜବାଦର ସ୍ୱପ୍ନ ଦେଖିଥିଲେ । ଅଷ୍ଟାଦଶ ଶତାବ୍ଦୀର ଜୁଲ୍‌ଭର୍ଣ୍ଣ ବିଂଶ ଶତାବ୍ଦୀର ଆବିଷ୍କାର ନିଜ ରଚନାରେ ଲିପିବଦ୍ଧ କରି ଯାଇଛନ୍ତି । ସମାଜ ନିଜ ପ୍ରଗତି ନିମନ୍ତେ ସାହିତ୍ୟ ଉପରେ ନିର୍ଭରଶୀଳ । ସ୍ୱୟଂ ଭଗବାନ ଏହା ପ୍ରମାଣ କରିବାକୁ ଓହ୍ଲାଇ ଆସନ୍ତି ଏହି ଦୁଃଖଭରା ପୃଥିବୀକୁ ଓ ରାଜସୁଖ ଛାଡ଼ି ବନବାସୀ ହୁଅନ୍ତି । ସାହିତ୍ୟିକମାନେ ଏହି ଦାୟିତ୍ୱ ସବୁବେଳେ ସ୍ମରଣ ରଖିବେ ବୋଲି ମୁଖ୍ୟ-ମନ୍ତ୍ରୀଙ୍କ ଆଶାକୁ ପ୍ରତ୍ୟେକ ସାହିତ୍ୟ ପ୍ରେମୀଙ୍କ ଦୃଷ୍ଟି ଆକର୍ଷଣ କରିବା ଏହି ନବ ବର୍ଷରେ ଉତ୍କଳ ପ୍ରସଙ୍ଗର ପରମ କର୍ତ୍ତବ୍ୟ ।

ସର୍ବେ ଭବନ୍ତୁ ଜନଃ

[signature]



# ସାହିତ୍ୟର ଆହ୍ୱାନ

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ

ଭାରତର ଶ୍ରେଷ୍ଠ ରମଣୀୟ ସ୍ଥାନସ୍ଥାନଙ୍କ ମଧ୍ୟରେ ସୁନାବେଡ଼ା ଅନ୍ୟତମ । ଏ ସୁନାବେଡ଼ାର ଶ୍ୟାମବର୍ଣ୍ଣ ପର୍ବତମାଳା, ତରଙ୍ଗାୟିତ ଟଙ୍କଭୂମି, ଦେବଦାରୁ ଓ ପାଇନ୍ ଗଛର ଜଙ୍ଗଲ, ବିଶେଷତଃ ଶୀତ ଋତୁର ଧୂସର ପ୍ରହରରେ ମ୍ଳାନ ଚନ୍ଦ୍ରମାର ଦୃଶ୍ୟ ଯେ ଦେଖିନାହିଁ, ସେ ଓଡ଼ିଶାକୁ ଦେଖିନାହିଁ । କାଶ୍ମୀର ଉପତ୍ୟକା ଏହା ନିକଟରେ ପରାଜୟ ସ୍ୱୀକାର କରିବ । ଉପର କୋଲାବ୍ ଯୋଜନା ହୋଇଯିବା ପରେ କୋରାପୁଟ ଓ ସୁନାବେଡ଼ା ମଝିରେ ଏକ ସୁନ୍ଦର ହ୍ରଦ ସୃଷ୍ଟି ହେବ ଏବଂ ତାହା ପର୍ବତମାଳିନୀ ସୁନାବେଡ଼ାର ଏକ ବଳୟ ଭଳି ଶୋଭା ପାଇବ । ସୌନ୍ଦର୍ଯ୍ୟ ଦୃଷ୍ଟିରୁ ଏହି ସୁନାବେଡ଼ାରେ ଲେଖକ ସାମ୍ମୁଖ୍ୟର ସାହିତ୍ୟ ସମାରୋହ ନିଶ୍ଚୟ ତାତ୍ପର୍ଯ୍ୟପୂର୍ଣ୍ଣ ।

ସୁନାବେଡ଼ା, କୋରାପୁଟ ଜିଲ୍ଲାର ଅନ୍ତର୍ଭୁକ୍ତ । କୋରାପୁଟ ଜିଲ୍ଲା ଓଡ଼ିଶାର ସୀମାନ୍ତ ଜିଲ୍ଲା । ଏହି ଜିଲ୍ଲାର ପ୍ରତିଷ୍ଠିତ ସାହିତ୍ୟିକ, ସାହିତ୍ୟ ସାଧକ ଓ ସାହିତ୍ୟ ପ୍ରେମୀମାନଙ୍କୁ ଗୋଟିଏ ମୈତ୍ରୀ ସୂତ୍ରରେ ବନ୍ଧନ କରିବା ଓଡ଼ିଆ ସାହିତ୍ୟର ଦାୟିତ୍ୱ । ସେ ଦୃଷ୍ଟିରୁ ସୁନାବେଡ଼ାରେ ସାହିତ୍ୟୋତ୍ସବ ଅଭିନନ୍ଦନୀୟ ।

ଓଡ଼ିଶା ରାଜ୍ୟର ଅନ୍ୟ ଜିଲ୍ଲାମାନଙ୍କ ପରି କୋରାପୁଟ ଏକ ଜିଲ୍ଲା ହୋଇଥିଲେ ମଧ୍ୟ ଆୟତନ ଦୃଷ୍ଟିରୁ ଏହା ବୃହତ୍ତମ । ପୁରୀ, କଟକ, ବାଲେଶ୍ୱର ଜିଲ୍ଲାର ଆୟତନ ଯେତିକି, ଏକା କୋରାପୁଟ ଜିଲ୍ଲାର ଆୟତନ ସେତିକି । ସମଗ୍ର କେରଳ ରାଜ୍ୟର ଆୟତନ ଯେତେ, ତା'ର ଚାରି ଭାଗରୁ ତିନି ଭାଗ ହେଉଛି କୋରାପୁଟ ଜିଲ୍ଲା । କେବଳ ସେତିକି ନୁହେଁ ; ଓଡ଼ିଶାର ଅଧିକାଂଶ ବିଭବ ଏହି କୋରାପୁଟ ଜିଲ୍ଲାରେ ପୂର୍ଣ୍ଣ ହୋଇ ରହିଛି । ଓଡ଼ିଶାର ଖଣିଜ ସଂପଦ, ଜଙ୍ଗଲ ସଂପଦ, ନଦୀ ସଂପଦର ବହୁ ଅଂଶ ଏହି କୋରାପୁଟ ଜିଲ୍ଲାରେ ଅଛି । ଯେଉଁ ଶକ୍ତି ସାହାଯ୍ୟରେ ଆଜି ଓଡ଼ିଶାରେ ନୂତନ ଜୀବନର ଆବାହନ କରାଯାଉଛି, ସେ ବିଦ୍ୟୁତ୍ ଶକ୍ତିର ବହୁ ଅଂଶ କୋରାପୁଟ ଜିଲ୍ଲାର ମାଛକୁଣ୍ଡ ନଦୀରୁ ଉତ୍ପନ୍ନ ହେଉଛି । ଏହି ମାଛକୁଣ୍ଡର ଅନ୍ୟ ନାମ ମତ୍ସ୍ୟତୀର୍ଥ, ଏଠାରେ ଶ୍ରୀଚୈତନ୍ୟ ତାଙ୍କର ଦାକ୍ଷିଣାତ୍ୟ ଯାତ୍ରାବେଳେ ଆସି ରହିଥିଲେ । ଆଉ ଦୁଇଟି ପ୍ରଧାନ ନଦୀ କୋଲାବ ଓ ଇନ୍ଦ୍ରାବତୀରୁ ବିଦ୍ୟୁତ୍‌ଶକ୍ତି ସଂଗ୍ରହର ଯୋଜନା କାର୍ଯ୍ୟ ଶେଷ ହେଲେ ଓଡ଼ିଶାର ବିଦ୍ୟୁତ୍‌ଶକ୍ତିର ପରିମାଣ ଦୁଇ ଗୁଣକୁ ବୃଦ୍ଧି ପାଇବ । ଏ ସମସ୍ତ ଦୃଷ୍ଟିରୁ କୋରାପୁଟକୁ ନ ଜାଣିଲେ ଓଡ଼ିଶାକୁ ଜାଣିବା ସମ୍ଭବପର ନୁହେଁ ।

ଐତିହାସିକ ଦୃଷ୍ଟିକୋଣରୁ କୋରାପୁଟ ଜିଲ୍ଲା ଓଡ଼ିଶା ପକ୍ଷରେ ଏକାନ୍ତ ଅପରିହାର୍ଯ୍ୟ । ଅନେକେ ମନେ କରନ୍ତି, କୋରାପୁଟ ଜିଲ୍ଲାରେ ଓଡ଼ିଆ ଭାଷା ଏବଂ ଓଡ଼ିଆ ସଂସ୍କୃତିର ବିଶେଷ ଜାଗରଣ ହୋଇନାହିଁ ; କିନ୍ତୁ ତାହା ଠିକ୍ ନୁହେଁ । କଳିଙ୍ଗ ବିଜୟୀ ଅଶୋକ ଦୁଇଟି ସ୍ଥାନରେ ତାଙ୍କର ଶିଳାଲେଖ ଲେଖିଛନ୍ତି । ଗୋଟିଏ ଧଉଳି ପାହାଡ଼ରେ ଓ ଅନ୍ୟଟି ଜଉଗଡ଼ଠାରେ । ଏ ଦୁଇଟି ଶିଳାଲେଖରେ ସେ କୋରାପୁଟ ଜିଲ୍ଲାର ଅଧିବାସୀଙ୍କୁ ଲକ୍ଷ୍ୟକରି ଲେଖିଛନ୍ତି—"ଆଟବିକ ପ୍ରଜାମାନଙ୍କ ପ୍ରତି ମୁଁ ମୋର ଶ୍ରଦ୍ଧା ଜ୍ଞାପନ କରୁଛି" । 'ଆଟବିକ' ଶବ୍ଦ ଅଟବୀ ଶବ୍ଦରୁ ଉତ୍ପନ୍ନ । ଅଟବୀର ଅର୍ଥ ହେଉଛି ଅରଣ୍ୟ । ତେଣୁ ଏହି ଅରଣ୍ୟର ଅଧିବାସୀଙ୍କ ପ୍ରତି ସେ ତାଙ୍କର ଶ୍ରଦ୍ଧା ଜ୍ଞାପନ କରିଥିଲେ । ଓଡ଼ିଶାର ସଂସ୍କୃତିକୁ ଆଲୋଚନା କଲେ ଜଣାଯାଏ, ଓଡ଼ିଶା ହେଉଛି ତିନୋଟି ସଂସ୍କୃତିର ମିଳନ ସ୍ଥଳ । ତାହା ହେଉଛି ଆର୍ଯ୍ୟ, ଦ୍ରାବିଡ଼ ଓ ନିଷାଦ । ଉତ୍ତର ଭାରତ ବା ପଞ୍ଜାବ ଆଡୁ ଆର୍ଯ୍ୟ ସଂସ୍କୃତିର ଧାରା କ୍ରମଶଃ ଦକ୍ଷିଣ ଆଡ଼କୁ ବହି ଆସିଛି । ଉତ୍ତର ଭାରତ ଓ ଦକ୍ଷିଣ ଭାରତର ମଧ୍ୟ ସ୍ଥଳରେ ଓଡ଼ିଶାର ଅବସ୍ଥିତି ହୋଇଥିବାରୁ ଏହି ଭୂମି ଉତ୍ତରାଗତ ଆର୍ଯ୍ୟ ସଂସ୍କୃତି ଓ ପୂର୍ବରୁ ପ୍ରତିଷ୍ଠିତ ଥିବା ଦ୍ରାବିଡ଼ ସଂସ୍କୃତିର ମିଳନ ପାଇଁ ସୁଯୋଗ ଦେଇଛି ; କିନ୍ତୁ ଏ ଦୁଇଟି ସଂସ୍କୃତିଠାରୁ ଭିନ୍ନ ଆଉ ଏକ ସଂସ୍କୃତି ଏଠାରେ ବହୁ ପୂର୍ବରୁ ଥିଲା, ଯେଉଁଥିରୁ ଆମର ଜଗନ୍ନାଥ ସଂସ୍କୃତି ଉଦ୍ଭୂତ । ତାହା ହେଉଛି ନିଷାଦ

ସଂସ୍କୃତି । ଏହି ସଂସ୍କୃତିର ବାହକ ଓ ଧାରକ ହେଉଛି ଆଦିବାସୀବହୁଳ କୋରାପୁଟ ଜିଲ୍ଲା । ଏ ଜିଲ୍ଲା ହେଉଛି ପ୍ରାଚୀନ ନନ୍ଦପୁର ରାଜ୍ୟ । ଏ ରାଜ୍ୟ ସଂପର୍କରେ ତତ୍‌କାଳୀନ କବି ବିପ୍ର ଭାଗୀରଥି ତାଙ୍କର 'ଶୈବୋତ୍ତର ପୁରାଣ'ରେ ଉଲ୍ଲେଖ କରିଛନ୍ତି :—

"ଜମ୍ବୁଦ୍ୱୀପ ମଧ୍ୟେ ସାର ନନ୍ଦପୁର ରାଜ୍ୟ
ସଦାକାଳେ ପୂରି ଅଛି ସମସ୍ତ ଐଶ୍ୱର୍ଯ୍ୟ"

ଜମ୍ବୁଦ୍ୱୀପ ମଧ୍ୟରେ ଅର୍ଥାତ୍ ସମଗ୍ର ଭାରତବର୍ଷ ମଧ୍ୟରେ ଏହାକୁ ଶ୍ରେଷ୍ଠ ବା ସାର ବୋଲି ସେ ବର୍ଣ୍ଣନା କରିଛନ୍ତି । ପୁରାତନ ନନ୍ଦପୁର ରାଜ୍ୟ, ବର୍ତ୍ତମାନର କୋରାପୁଟ ଜିଲ୍ଲା । କୋରାପୁଟ ଜିଲ୍ଲାର ସାହିତ୍ୟିକ ବନ୍ଧୁଗଣ ଏ ସାହିତ୍ୟିକ ମିଳନରୁ ବିଶେଷ ଉପକୃତ ହୋଇ ପାରିବେ ।

ସାହିତ୍ୟିକମାନେ ସବୁ ଯୁଗରେ ପଥପ୍ରଦର୍ଶକ ହୋଇଛନ୍ତି । ସେମାନେ ସମାଜ ତଥା ଶାସନକୁ ସବୁ ସମୟରେ ବାଟ ଦେଖାଇଥାନ୍ତି । ତେଣୁ ସେମାନଙ୍କର ସ୍ଥାନ ସବୁଠାରୁ ଉଚ୍ଚରେ । ଆଦିକବି ବାଲ୍ମୀକି ପ୍ରଥମେ ରାମାୟଣ ରଚନା କଲେ । ରାମାୟଣ ରଚିତ ହେବା ପରେ ଭଗବାନ ରାମଚନ୍ଦ୍ର ମର୍ତ୍ତ୍ୟରେ ଅବତୀର୍ଣ୍ଣ ହେଲେ ଏହି ରାମାୟଣ ବର୍ଣ୍ଣିତ କଥାବସ୍ତୁକୁ ସତ୍ୟରେ ପରିଣତ କରିବା ପାଇଁ । ସମାଜରେ ଯେତେବେଳେ ଯେଉଁ ବିପ୍ଳବର ସୂତ୍ରପାତ ହୁଏ ବା ପରିବର୍ତ୍ତନ ଆସେ, ତା'ର ବହୁ ପୂର୍ବରୁ ସାହିତ୍ୟିକମାନେ ସେ ସବୁର ସନ୍ଧାନ ପାଇଥାନ୍ତି । ଯୁଗର ଶ୍ରେଷ୍ଠ ସାହିତ୍ୟିକଙ୍କ ପ୍ରାଣରେ ପ୍ରଚଣ୍ଡ ଆତ୍ମବିଶ୍ୱାସର ବହ୍ନି ପ୍ରଜ୍ୱଳିତ ହୋଇଥାଏ ଏବଂ ସେମାନେ ସମାଜରେ ବିପ୍ଳବକୁ ଆହ୍ୱାନ କରି ଆଣନ୍ତି । ଏ ପ୍ରଚଣ୍ଡ ଆତ୍ମବିଶ୍ୱାସ ଫଳରେ ବହୁ ସାହିତ୍ୟ ସୃଷ୍ଟିର ରୂପାୟନ ହୋଇଥାଏ । ବିଶ୍ୱ ସ୍ରଷ୍ଟା ସାହିତ୍ୟିକକୁ ଜନ୍ମ ଦେବା ପରେ, ସାହିତ୍ୟିକ ନିଜେ ସ୍ରଷ୍ଟାର ଗୌରବ ଲାଭ କରେ । ସେ ଯେଉଁ ଜଗତ ସୃଷ୍ଟି କରେ, ତା'ର ନିୟନ୍ତା ସେ ନିଜେ । ସେଥିରେ ସ୍ୱୟଂ ବିଧାତାଙ୍କର ମଧ୍ୟ କର୍ତ୍ତୃତ୍ୱ ନାହିଁ କି ନିୟନ୍ତ୍ରଣ ନାହିଁ ।

ଭର୍ତ୍ତୃହରି ଲେଖିଥିଲେ:—

ଅମ୍ଭୋଜିନୀବନନିବାସ ବିଳାସମେବ
ହଂସସ୍ୟ ହନ୍ତି ନିତରାଂ କୁପିତୋ ବିଧାତା
ନତ୍ୱସ୍ୟ ଦୁଗ୍ଧ ଜଳଭେଦବିଧୌ ପ୍ରସିଦ୍ଧାଂ
ବୈଦଗ୍ଧ୍ୟ, କୀର୍ତ୍ତିମପହର୍ତ୍ତୁମୟଂ ସମର୍ଥଃ ।

ପଦ୍ମବନ ଭିତରେ ହଂସ ରହେ । ବିଧାତା ହଂସ ଉପରେ କ୍ଷୁବ୍ଧ ହୋଇ ତା'ର ପଦ୍ମବନକୁ ପୋଡ଼ି ଦେଇ ପାରିବେ, କିନ୍ତୁ ହଂସର ଯେଉଁ ସ୍ୱାଭାବିକ ଗୁଣ ଅଛି, ("ଦୁଗ୍ଧ ଜଳ ଭେଦ ବିଧୌ ପ୍ରସିଦ୍ଧାଂ") ତାହା ନଷ୍ଟ କରି ପାରିବେ ନାହିଁ । ଜଳରୁ ଦୁଧକୁ ଅଲଗା କରିବାର ଶକ୍ତି କେବଳ ହଂସର ଥାଏ । ସେହିପରି ସାହିତ୍ୟିକମାନେ ବିଧାତାଙ୍କୁ ମଧ୍ୟ ସ୍ୱୀକାର କରି ନାହାନ୍ତି ।

"କବିର୍ମନୀଷିଭିଃ ପରିଭୂଃ ସ୍ୱୟଂଭୂଃ" ବୋଲି ବେଦରେ କୁହାଯାଇଛି । କବି ମନୀଷୀ, ଦ୍ରଷ୍ଟା, ସୃଷ୍ଟିକାରୀ । ସେ କ୍ରାନ୍ତଦର୍ଶୀ । ପୃଥିବୀ ପ୍ରସିଦ୍ଧ ନାଟ୍ୟକାର ବର୍ଣ୍ଣାଡ଼୍' ଶ ଆୟାରଲ୍ୟାଣ୍ଡରୁ ଇଂଲଣ୍ଡକୁ ଆସି ଗୋଟିଏ ଛୋଟ ଚାକିରି କରିଥିଲେ । ତାଙ୍କର ପ୍ରଥମ ଲେଖାସବୁ ଇଂଲଣ୍ଡରେ କେହି ଗ୍ରହଣ କରୁନଥିଲେ । ପ୍ରକାଶକମାନେ ମଧ୍ୟ ପ୍ରକାଶ କରୁ ନ ଥିଲେ । ତାଙ୍କୁ ଯେତେବେଳେ ଏହି ବିଷୟ ପଚରାଗଲା, ଉତ୍ତରରେ ସେ କହିଥିଲେ, "କିଛି ଚିନ୍ତା ନାହିଁ, ମୁଁ ଆୟାରଲ୍ୟାଣ୍ଡ ଛାଡ଼ି ଇଂଲଣ୍ଡ ଆସିଛି, ଇଂଲଣ୍ଡକୁ ଶିକ୍ଷା ଦେବା ପାଇଁ ।" ସେତେବେଳେ ଇଂଲଣ୍ଡର ଜନସାଧାରଣଙ୍କ ମନରୁ ଭିକ୍ଟୋରିଆ ଯୁଗର ନିଶା ଛାଡ଼ି ନ ଥିଲା ଏବଂ ଇଂଲଣ୍ଡରେ ପୁଞ୍ଜିବାଦୀ ସମାଜ ବିରଚନ ହୋଇ





ଗତ ଡିସେମ୍ବର ୨୫ ତାରିଖରେ ...

ରହିବ ବୋଲି ଜଣାପଡୁଥିଲା । ସେ ପ୍ରତିଷ୍ଠିତ ସମାଜର ପରିବର୍ତ୍ତନ ଯେ ହୋଇପାରେ, ଏହାକୁ ସେତେବେଳେ କେହି ବିଶ୍ୱାସ କରି ପାରି ନ ଥିଲେ । ନିୟମ, କାନୁନ, ଆଇନ ବା ଶାସନର ଯେ ପରିବର୍ତ୍ତନ ହେବ ନାହିଁ, ଏ ଧାରଣା ସେତେବେଳେ ବଦ୍ଧମୂଳ ହୋଇ ରହିଥିଲା । ବର୍ଣ୍ଣାଡ଼ ଶ ଏଚ. ଜି. ୱେଲସ୍, ସିଡ଼ନି ଓ ବିଏଟ୍ରିସ୍ ୱେବ୍‌ବାସ ସେତେବେଳେ 'ଫାବିୟାନ୍ ସୋସାଇଟି' ଗଢ଼ିଲେ । ସେ ସମୟରେ ଯେଉଁମାନେ ଶାସକ ବା ସମାଜ ନିୟନ୍ତା ଥିଲେ, ସମସ୍ତଙ୍କୁ ବର୍ଣ୍ଣାଡ଼ ଶ ଆହ୍ୱାନ କରି କହିଥିଲେ ଯେ ସେ ସମାଜ ବଦଳିବା ପାଇଁ ଯାଉଛି । ସାହିତ୍ୟିକମାନଙ୍କୁ କହିଥିଲେ, କୌଣସି କଥାକୁ ଗ୍ରହଣ କର ନାହିଁ । ପ୍ରଶ୍ନ କର । ପରୀକ୍ଷା କର । ନିରୀକ୍ଷାକର । ଗୌତମ ବୁଦ୍ଧ ତାଙ୍କର ଶିଷ୍ୟମାନଙ୍କୁ କହିଥିଲେ,

'ପ୍ରମାଣଂ ଭିକ୍ଷବଃ ଗ୍ରାହ୍ୟଂ
ମଦ୍‌ବଚଃ ନ ଚ ଗୌରବାତ୍' ।

ପ୍ରମାଣ ନ ପାଇଲେ କିଛି ଗ୍ରହଣ କରନାହିଁ, ଏପରିକି ମୋର ବାକ୍ୟକୁ ମଧ୍ୟ । ସାହିତ୍ୟିକମାନେ ପ୍ରଶ୍ନ କରିଛନ୍ତି ଏବଂ ସବୁବେଳେ ଗ୍ରହିଛନ୍ତି କିଛି ପରିବର୍ତ୍ତନ ହେବା ଦରକାର । ପୁରୁଣାର ପରିବର୍ତ୍ତନ ହେବା ଆବଶ୍ୟକ । ଏକ ପ୍ରଚଣ୍ଡ ଆତ୍ମବିଶ୍ୱାସ ସେମାନଙ୍କୁ ଅନୁପ୍ରାଣିତ କରିଚି । ବିଶ୍ୱକବି ରବୀନ୍ଦ୍ରନାଥ ଲେଖିଛନ୍ତି, ମୁଁ ଯଦି କାଳିଦାସଙ୍କ ଯୁଗରେ ଥାନ୍ତି, ତା' ହେଲେ ନବରତ୍ନଙ୍କ ମଧ୍ୟରେ ଗଣା ହୋଇଥାନ୍ତି । ସାରଳା ଦାସ ଯେତେବେଳେ ମହାଭାରତ ଲେଖିଲେ, ପ୍ରବଳ ବନ୍ୟାପୁଷ୍ଟ ଏକ ସ୍ରୋତସ୍ୱିନୀ ପରି ସେ କିଛି ଛନ୍ଦ, ବନ୍ଧ ନ ମାନି ତାଙ୍କର ଭାବଧାରାକୁ ପ୍ରବାହିତ କରିଗଲେ । ଯେପରି ତାଙ୍କ ସମୟରେ ଗଜପତି କପିଳେନ୍ଦ୍ର ଦେବଙ୍କ ସୈନ୍ୟମାନେ ବାଡ଼ବନ୍ଧ କିଛି ନ ମାନି କାବେରୀ ନଦୀ ପର୍ଯ୍ୟନ୍ତ ଆଗେଇ ଯାଇଛନ୍ତି । ସାରଳା ଦାସ, ଯେ କି ଅତି ନମ୍ର ଦୀନ ହୀନ ଭାବରେ ନିଜକୁ ପ୍ରକାଶ କରିଛନ୍ତି, ସେ ପୁଣି ପ୍ରଚଣ୍ଡ ଆତ୍ମବିଶ୍ୱାସ ନେଇ କହିଛନ୍ତି,—ମୁଁ ବାଲ୍ମୀକି ହୋଇ ଜନ୍ମ ହୋଇଛି, କାଳିଦାସ ହୋଇ ଜନ୍ମ ହୋଇଛି ଏବଂ ଏବେ ସାରଳା ଦାସ ହୋଇ ଜନ୍ମ ହୋଇଛି । ମୁଁ ସାହିତ୍ୟ ସରସ୍ୱତୀଙ୍କ ସେବା ପାଇଁ ଏହିପରି ବାରମ୍ବାର ଜନ୍ମ ନେବି ।

ଗଙ୍ଗବଂଶ ରାଜତ୍ୱ ସମୟରେ ଓଡ଼ିଆ ସୈନ୍ୟମାନେ ହୁଗୁଳୀ ନଦୀ ପର୍ଯ୍ୟନ୍ତ ଜୟ କରି ଯାଇଛନ୍ତି, ବିଜୟ କରିଛନ୍ତି । ସେତେବେଳର ବିଧବା ଶତ୍ରୁ ଲଳନାମାନଙ୍କର ଆଖିର କଜ୍ଜଳ ଧୋଇ ହୋଇ ଗଙ୍ଗା ଜଳକୁ କଳା କରି ପକାଇଛି । ଏହାକୁ ଲିପିବଦ୍ଧ କରିଛନ୍ତି ଗଙ୍ଗବଂଶାନୁଚରିତମ୍‌ରେ ବାସୁଦେବ ରଥ—

ରାଢ଼ାବରେନ୍ଦ୍ର ଯବନୀ ନୟନାଞ୍ଜନାଶ୍ରୁ—
ପୂରେଣ ଦୂର ବିନିବେଶିତ କାଳିମଶ୍ରୀଃ ।
ତଦ୍ ବିପ୍ରଲମ୍ଭ-କରୁଣାଧୃତ ନିସ୍ତରଙ୍ଗା
ଗଙ୍ଗାପିନୂନମମୁନା ଯମୁନାଧୁନାଭୂତ୍ ।।

ଏହା ଥିଲା ଓଡ଼ିଶାର ଗୌରବର ଦିନ ; କିନ୍ତୁ ପ୍ରତାପରୁଦ୍ରଙ୍କ ସମୟରେ ପରାଜୟ ଆରମ୍ଭ ହେଲା । ଏହି ନନ୍ଦପୁର ରାଜ୍ୟ ଦେଇ ସେ ଫେରି ଯାଇଛନ୍ତି, କୃଷ୍ଣ ଦେବରାୟଙ୍କ ଠାରୁ ପରାଜୟ ସ୍ୱୀକାର କରି । ଉତ୍କଳର ଗୌରବ ସୂର୍ଯ୍ୟ ଅସ୍ତମିତ ହେବା ସଙ୍ଗେ ସଙ୍ଗେ ଘୋର ଅନ୍ଧକାର ଘୋଟି ଆସିଛି । ଓଡ଼ିଶା ପକ୍ଷରେ ଏ ଅନ୍ଧକାର ଅଳ୍ପକାଳ ପାଇଁ ନୁହେଁ । ଦୀର୍ଘ ୩୦୦ ବର୍ଷର କାଳରାତ୍ରୀ କାଟିବାକୁ ପଡ଼ିଛି । କାଳର ଏ ଆହ୍ୱାନକୁ ସେତେବେଳର କବିଗଣ, ପଞ୍ଚସଖା ଗ୍ରହଣ କରିଛନ୍ତି । ଦାଣ୍ଡିବୃତ୍ତିଠାରୁ ଆରମ୍ଭ କରି ନବାକ୍ଷରୀ ପର୍ଯ୍ୟନ୍ତ, ଜଗନ୍ନାଥ ଧର୍ମରୁ ଆରମ୍ଭ କରି ଶୂନ୍ୟବାଦ ପର୍ଯ୍ୟନ୍ତ ଏମାନେ ସମସ୍ତ ପ୍ରକାର ପରୀକ୍ଷା କରିଛନ୍ତି । ଜଗନ୍ନାଥ ଦାସଙ୍କ ଭାଗବତ ଗାଁ ଗାଁରେ ପ୍ରତି ଘରେ ସ୍ଥାନ ପାଇଛି,



ଅନୁଷ୍ଠିତ ସାହିତ୍ୟ ଉତ୍ସବରେ ମୁଖ୍ୟମନ୍ତ୍ରୀଙ୍କ ପ୍ରଦତ୍ତ ଭାଷଣ)

## ସୁନାବେଡ଼ାରେ ସାହିତ୍ୟୋତ୍ସବ

ଗତ ଡିସେମ୍ବର ୨୫ ଓ ୨୬ରେ ସୁନାବେଡ଼ାଠାରେ ଓଡ଼ିଶା ଲେଖକ ସାମୁଖ୍ୟଦ୍ୱାରା ଆୟୋଜିତ ରାଜ୍ୟସ୍ତରୀୟ ଲେଖକ ସମ୍ମେଳନ 'ସାହିତ୍ୟୋତ୍ସବ-୯୧' ସଫଳତାର ସହିତ ଅନୁଷ୍ଠିତ ହୋଇଛି । ସୁନାବେଡ଼ାର ରଙ୍ଗମଣ୍ଡପରେ ଏହି ଉତ୍ସବ ଆୟୋଜିତ ହୋଇଥିଲା । ୨୫ ତାରିଖ ପୂର୍ବାହ୍ନରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ମଞ୍ଚ ଉପରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ନିକଟରେ ପ୍ରଦୀପ ଜାଳି ଏହି ସାହିତ୍ୟୋତ୍ସବ ଉଦ୍‌ଘାଟନ କରିଥିଲେ । କୋରାପୁଟ ଜିଲ୍ଲାବାସୀଙ୍କ ତରଫରୁ ଅର୍ଥମନ୍ତ୍ରୀ ଶ୍ରୀ ରଘୁନାଥ ପଟ୍ଟନାୟକ ସ୍ୱାଗତ ସମ୍ଭାଷଣରେ ସମସ୍ତଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଇଥିଲେ । ସାହିତ୍ୟକୁ ଗଣାଭିମୁଖୀ କରିବା ଏହି ସମାରୋହର ଉଦ୍ଦେଶ୍ୟ ବୋଲି ସଂପାଦକୀୟ ବିବରଣୀରେ ଲେଖକ ସାମୁଖ୍ୟର ସଂପାଦକ ଶ୍ରୀ ନେତ୍ରାନନ୍ଦ ସାମନ୍ତରାୟ ସୂଚନା ଦେଇଥିଲେ । ରାଜ୍ୟ ସଂସ୍କୃତିକ ବିଭାଗ ମନ୍ତ୍ରୀ ଶ୍ରୀଯୁକ୍ତ କିଶୋର ପଟ୍ଟନାୟକ ଏହି ଉତ୍ସବରେ ମୁଖ୍ୟ ଅତିଥି ରୂପେ ଯୋଗ ଦେଇଥିଲେ ।

ଏହି ସମାରୋହରେ ବିଶିଷ୍ଟ ସାହିତ୍ୟିକ ଶ୍ରୀ ସୁରେନ୍ଦ୍ର ମହାନ୍ତି ଓଡ଼ିଆ ସଂସ୍କୃତିର ବୈଶିଷ୍ଟ୍ୟ ପ୍ରତିପାଦିତ କରି ଏହା ସମଗ୍ର ଜାତି, ଭାଷା ଓ ସାହିତ୍ୟକୁ କିପରି ସମନ୍ୱିତ କରିଛି ସେ ସଂପର୍କରେ ଏକ ସାରଗର୍ଭକ ଭାଷଣ ଦେଇଥିଲେ । ସାହିତ୍ୟୋତ୍ସବର ଆବାହକ ଶ୍ରୀ ସାତକଡ଼ି ହୋତା ଏହି ସମାରୋହର ଆବଶ୍ୟକତା ଓ ତାତ୍ପର୍ଯ୍ୟ ବୁଝାଇଥିଲେ ।

'ଗଳ୍ପ ଓ ଉପନ୍ୟାସ' କର୍ମଶାଳାରେ ଡକ୍ଟର କୃଷ୍ଣ ପ୍ରସାଦ ମିଶ୍ର, କବିତାରେ ଶ୍ରୀ ରାଧାମୋହନଗଡ଼ନାୟକ ଓ ନାଟକରେ ଶ୍ରୀ ପ୍ରାଣବନ୍ଧୁ କର ଏବଂ ଉପାନ୍ତଅଞ୍ଚଳର ଭାଷା ଓ ସାହିତ୍ୟରେ' ଡକ୍ଟର ବଂଶୀଧର ମହାନ୍ତି ଅଧ୍ୟକ୍ଷତା କରିଥିଲେ ।

ସନ୍ଧ୍ୟାରେ ଅନୁଷ୍ଠିତ ସଂସ୍କୃତିକ କାର୍ଯ୍ୟକ୍ରମ ଉଦଘାଟନ କରିଥିଲେ ହିନ୍ଦୁସ୍ଥାନ ଏରୋନଟିକ୍‌ସର ଜେନେରାଲ ମ୍ୟାନେଜର ଶ୍ରୀ ବିଜୟ ରାଘବନ । ସଂସ୍କୃତିକ ବିଭାଗର ଶାସନ ସଚିବ ଶ୍ରୀ ଏ. ଏନ୍. ତିୱାରୀ, 'ଉତ୍କଳ ପ୍ରସଙ୍ଗ'ର ସଂପାଦକ ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟ, ଜୟପୁର ଆକାଶବାଣୀ ଷ୍ଟେସନ ଡାଇରେକ୍ଟର ଶ୍ରୀମତୀ ବୀଣା ଦେବୀ ପ୍ରମୁଖ ଏହି ସମ୍ମେଳନରେ ଯୋଗ ଦେଇଥିଲେ ।

ତର୍ଚ୍ଚା ହୋଇଛି । ଜଗନ୍ନାଥଙ୍କ ସହ ଆଉ ସ୍ମରିଜଣ ମିଶି ପଞ୍ଚସଖା ସାହିତ୍ୟ ସୃଷ୍ଟି କରିଛନ୍ତି । ରାଜାର ପରାଜୟ ଘଟେ; କିନ୍ତୁ ସାହିତ୍ୟିକର ନୁହେଁ । ସାହିତ୍ୟିକ କେବେହେଲେ ପରାଜୟ ସ୍ୱୀକାର କରେ ନାହିଁ । ସାହିତ୍ୟିକ କେବେହେଲେ ଆତ୍ମଗ୍ଲାନିରେ ନିଜକୁ ହଜାଇ ଦିଏ ନାହିଁ । ସାହିତ୍ୟିକ ଅନ୍ଧକାରରେ ଆଲୋକ ଦେଖାଏ ।

ଏହି ଅନ୍ଧକାରମୟ ଯୁଗର ଅନ୍ୟ ଏକ ବେଳରେ ଦେଖାଦେଲେ ଉପେନ୍ଦ୍ର ଭଞ୍ଜ । ସଂସ୍କୃତ ଭାଷା ଓ ସାହିତ୍ୟରେ ଯାହାସବୁ ଛନ୍ଦ ଓ ଅଳଙ୍କାର ଦୃଷ୍ଟିରୁ ଶ୍ରେଷ୍ଠ, ଉପେନ୍ଦ୍ର ଭଞ୍ଜ ଓଡ଼ିଆ ଭାଷାରେ ତାହାର ସଫଳତା ପ୍ରତିପାଦିତ କରି ଅମର ହୋଇଗଲେ । ସେ ଓଡ଼ିଆ ସାହିତ୍ୟ ଆକାଶର ସୂର୍ଯ୍ୟ । କାଳିଦାସଙ୍କ ଭାଷାରେ— "ପ୍ରଚଣ୍ଡ ସୂର୍ଯ୍ୟଃ ସ୍ପୃହଣୀୟ ଚନ୍ଦ୍ରମା" । ସୂର୍ଯ୍ୟ ପ୍ରଚଣ୍ଡ ଓ ଚନ୍ଦ୍ରମା ସ୍ପୃହଣୀୟ । ଉପେନ୍ଦ୍ର ଭଞ୍ଜ ଓଡ଼ିଆ ସାହିତ୍ୟର ସୂର୍ଯ୍ୟ ହେଲେ କବିସୂର୍ଯ୍ୟ ବଳଦେବ ରଥ, ଚନ୍ଦ୍ରମା । ତାଙ୍କର ସଙ୍ଗୀତର ମୂର୍ଚ୍ଛନା, ଚନ୍ଦ୍ରମାର ମାଧୁରୀ ସହିତ ତୁଳନୀୟ ।

ଉତ୍ତୀୟ ଯୁଗ ବା ଅଭିମନ୍ୟୁଙ୍କ ପରେ ପରେ ଓଡ଼ିଆ ସାହିତ୍ୟରେ ଏକ ପ୍ରକାର କ୍ଳାନ୍ତତା ପରିଲକ୍ଷିତ ହୋଇଥିଲା । ସେତିକିବେଳେ ଚକ୍ରାନ୍ତକାରୀମାନେ ଏହି ଓଡ଼ିଆ ଭାଷାକୁ ଲୋପ କରିଦେବାକୁ ଉଦ୍ୟମ କଲେ । ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ଭାଷା ନୁହେଁ ବୋଲି କହିବାକୁ ସେମାନେ ପଛାଇଲେ ନାହିଁ । ସେତିକିବେଳେ ଓଡ଼ିଆ ସାହିତ୍ୟର ତ୍ରିରଥୀ —ରାଧାନାଥ, ମଧୁସୂଦନ ଓ ଫକୀରମୋହନ ଓଡ଼ିଆ ସାହିତ୍ୟର ଐତିହ୍ୟ ଓ ସ୍ୱାତନ୍ତ୍ର୍ୟକୁ ପ୍ରମାଣିତ କରିବା ପାଇଁ ଏକ ପ୍ରଚଣ୍ଡ ପ୍ରାଣସ୍ରୋତ ପ୍ରବାହିତ କଲେ । ମଧୁସୂଦନ ରାଓ ରାଡ଼ିକ୍ସ ମଧ୍ୟରେ ବର୍ଣ୍ଣବୋଧ ଲେଖିଥିଲେ । ଉପେନ୍ଦ୍ର ଭଞ୍ଜଙ୍କ ସମୟରେ ଓଡ଼ିଆ ସାହିତ୍ୟ ତୁଙ୍ଗ ଶିଖରରେ ପହଞ୍ଚି ଯାଇଥିଲା । ତାଙ୍କ ପରେ ଆଉ ସେହି ସ୍ତରର ଓଡ଼ିଆ ସାହିତ୍ୟ ସୃଷ୍ଟି ହୋଇ ପାରିବ ନାହିଁ ବୋଲି ସମସ୍ତେ ମନେ କରିଥିଲେ, କିନ୍ତୁ ରାଧାନାଥଙ୍କ ସାହିତ୍ୟ ଅମରତ୍ୱର ସ୍ୱାକ୍ଷର ବହନ କଲା । ତାଙ୍କର ଅମିତ୍ରାକ୍ଷର ଛନ୍ଦ ଓ ବହୁ ନୂତନ ଛନ୍ଦର ପ୍ରୟୋଗ ଏହି ନବୀନତାର ସୂଚକ । ଫକୀର ମୋହନଙ୍କର ଗଳ୍ପ, ଉପନ୍ୟାସ ଓଡ଼ିଆ ସାହିତ୍ୟରେ ଅପୂର୍ବ ଆଲୋଡ଼ନ ସୃଷ୍ଟି କରି ପାରିଥିଲା । ସମାଜର ନିପୀଡ଼ିତ, ସାଧାରଣ ଚରିତ୍ରମାନଙ୍କୁ ନେଇ ଗଳ୍ପ ଉପନ୍ୟାସ ସୃଷ୍ଟି କରିବାରେ ଫକୀରମୋହନ ଅଗ୍ରଣୀ ହୋଇଥିଲେ । ଭଞ୍ଜଯୁଗ ପରେ ପରେ ଓଡ଼ିଆ ସାହିତ୍ୟ ସ୍ରୋତସ୍ୱିନୀ ପୁଣି ଅବ୍ୟାହତ ହୋଇ ବହି ଗଲିଲା । ରାଧାନାଥ ଯୁଗପରେ ସତ୍ୟବାଦୀ ଯୁଗ ଓ ତା'ପରେ ଓଡ଼ିଆ ସାହିତ୍ୟ ଆକାଶରେ ଅଳ୍ପକାଳ ପାଇଁ ଦେଖା ଦେଇଥିଲା ସବୁଜ ଯୁଗ । ଓଡ଼ିଆ କାବ୍ୟ କବିତା ଓ ଉପନ୍ୟାସକୁ ଯେଉଁମାନେ ଆଗେଇ ନେଇଛନ୍ତି ସେମାନଙ୍କ ମଧ୍ୟରୁ ଅନେକେ ଏଠାରେ ଉପସ୍ଥିତ ଅଛନ୍ତି ।

ପ୍ରଚଣ୍ଡ ଆତ୍ମ ବିଶ୍ୱାସ ଓ ଗଭୀର ଦେଶାତ୍ମବୋଧ ନ ଥିଲେ କେବେହେଲେ ସାହିତ୍ୟ ସୃଷ୍ଟି ହୋଇପାରିବ ନାହିଁ । ବର୍ତ୍ତମାନ ସେହି ଆହ୍ୱାନ ଆସି ପହଞ୍ଚିଛି । ଆଜି ଅନେକ ପରୀକ୍ଷା ଚାଲିଛି । ପରୀକ୍ଷା ନ ହେଲେ ସାହିତ୍ୟ କେବେହେଲେ ଆଗେଇ ପାରିବ ନାହିଁ । ଏ ପରୀକ୍ଷା କବିତା କ୍ଷେତ୍ରରେ, ଗଳ୍ପ କ୍ଷେତ୍ରରେ ଓ ନାଟକ କ୍ଷେତ୍ରରେ ଆନ୍ତର୍ଜାତିକ ସ୍ତରରେ ଚାଲିଛି । ଫାବିୟାନ୍ ସୋସାଇଟି ପରେ ଇଂଲଣ୍ଡରେ ବ୍ଲୁମସ୍‌ବେରି ଗ୍ରୁପ୍ ଗଢ଼ି ଉଠିଲା— ସାମୁଏଲ ବେକେଟ, ଭର୍ଜିନିଆ ଉଲ୍‌ଫ, ଟି. ଏସ୍. ଇଲିୟଟ, ଇ. ଏମ୍. ଫଷ୍ଟର, ଲିଟନ ଷ୍ଟ୍ରାଚି, ରୋଜର ଫ୍ରାଇ, ଲର୍ଡ

ହେଉଛି ସାହିତ୍ୟର ଧର୍ମ । କିନ୍ତୁ ପରୀକ୍ଷା ନାଁରେ ଅବାନ୍ତର ସୃଷ୍ଟି ବାଞ୍ଛନୀୟ ନୁହେଁ । ଯାହା କାହାରି ପକ୍ଷରେ ସତ୍ୟ ନୁହେଁ, ଯାହା ଏକାନ୍ତ ଅବୋଧ୍ୟ, ଏପରିକି ନିଜେ ଲେଖକଙ୍କୁ ପଚ୍ଚାରିଲେ ମଧ୍ୟ ସେ କ'ଣ ଲେଖିଛନ୍ତି ବୋଲି କହି ପାରିବେ ନାହିଁ, ସେପରି ସାହିତ୍ୟ ସୃଷ୍ଟି କରିବା ସମୀଚୀନ ନୁହେଁ । ଯେଉଁ ପରୀକ୍ଷାର କୌଣସି ଲକ୍ଷ୍ୟ ନାହିଁ, ଆଦର୍ଶ ନାହିଁ, ବୋଧଗମ୍ୟତା ନାହିଁ ବା ସତ୍ୟ ନାହିଁ ସେପରି ପରୀକ୍ଷାରେ ମନୋନିବେଶ କରିବା ଉଚିତ ହେବ ନାହିଁ । କବିତାରେ ଛନ୍ଦର ପରିବର୍ତ୍ତନ ହେବା ଆବଶ୍ୟକ; କିନ୍ତୁ ତାହା ଯେପରି ସୁଶ୍ରାବ୍ୟ ହେବ, ସୁଗେୟ ହେବ ସେଥିପ୍ରତି ଦୃଷ୍ଟି ରଖାଯିବା ଉଚିତ । ଦାଣ୍ଡି ବୃତ୍ତରେ ରାମାୟଣ ଲେଖା ଯାଇଥିଲେ ମଧ୍ୟ ତାହା ସୁଶ୍ରାବ୍ୟ ହେଉଥିଲା ଓ ବୋଲାଯାଇ ପାରୁଥିଲା । ଯଦି ଛନ୍ଦରେ ସ୍ୱାଦୁତା ନ ରହିବ, ତେବେ ତାହା ମନୋରମ ହେବ ନାହିଁ । ଉପେନ୍ଦ୍ର ଭଞ୍ଜଙ୍କ ଲେଖାସବୁ ବୋଧଗମ୍ୟ ନୁହେଁ । ମାତ୍ର, ତାହା ସୁଶ୍ରାବ୍ୟ ଓ ସୁଗେୟ । ଜଗନ୍ନାଥଙ୍କ ଭାଗବତ ମଧ୍ୟ ଯେତେ ସରଳ, ତାହା ସେତେ ନୁହେଁ । ମାତ୍ର ତାହା ସୁଶ୍ରାବ୍ୟ ଓ ସୁଗେୟ ।

ଅଶ୍ଳୀଳ ଓ କୁତ୍ସିତକୁ ସାହିତ୍ୟରେ ପ୍ରକାଶ କରିବା ଅନୁଚିତ । ତାହା ସର୍ବଦା ଓ ସର୍ବଥା ବର୍ଜନୀୟ । ଆଜିକାଲି ଏପରି ସଙ୍ଗୀତସବୁ ଗାନ କରାଯାଉଛି ଯାହାକୁ ଗୋଟିଏ ପରିବାର ଭିତରେ ବସି ଶୁଣିହେବ ନାହିଁ ।

ପାଶ୍ଚାତ୍ୟ ଦେଶମାନଙ୍କରେ ଆଜି ଅନେକ ଯୁବକ ଯୁବତୀ ପ୍ରାଚୁର୍ଯ୍ୟର ମଧ୍ୟରେ ବଢି ଆଦର୍ଶ ବିନା ଜୀବନରେ ଶାନ୍ତି ବା ସୁଖ ପାଇ ପାରୁ ନାହାନ୍ତି । ପ୍ରାଚୁର୍ଯ୍ୟର ସମାଜ ତାଙ୍କୁ ସନ୍ତୋଷ ଦେଇ ପାରୁ ନାହିଁ । ସେମାନେ ହିପି ହୋଇ ଯାଉଛନ୍ତି । ତେଣୁ ପ୍ରାଚୁର୍ଯ୍ୟ ବିରୁଦ୍ଧରେ ଏକ ଆଦର୍ଶହୀନ, ଲକ୍ଷ୍ୟହୀନ, ଛନ୍ଦହୀନ ଜୀବନର ବାହକ ହୋଇଛି, ପାଶ୍ଚାତ୍ୟ ଆଧୁନିକ ସାହିତ୍ୟ । ତାହା ଏଠାରେ ଅନୁକରଣୀୟ ନୁହେଁ ।

ଜୀବନର ସମସ୍ତ ଗୁଣକୁ ଘୋଡାଇ ପକାଉଛି । ଜଣେ କବି କହିଥିଲେ: ଜୀବନରେ ଗୋଟିଏ ଦୋଷ ଥିଲେ, ଗୁଣସବୁ ତାକୁ ଘୋଡ଼ାଇ ପକାଏ ।

"ଏକୋଽପି ଦୋଷୋଗୁଣସନ୍ନିପାତେ
ନିମଜ୍ଜତୀନ୍ଦୋଃ କିରଣେଷ୍ୱିବାଙ୍କଃ ।"

କିନ୍ତୁ ତା'ର ଉତ୍ତରରେ ଅନ୍ୟ କବି କହିଥିଲେ—

"ନ ତେନ ଦୃଷ୍ଟଂ କବିନା ହି କ୍ୱାପି
ଦାରିଦ୍ର୍ୟ ଦୋଷୋଗୁଣରାଶିନାଶୀ ।"

ଗୋଟିଏ ଦାରିଦ୍ର୍ୟ ଦୋଷ ଯେ ସମସ୍ତ ଗୁଣକୁ ନଷ୍ଟ କରି-ଦିଏ, ତାହା କବି ଦେଖିପାରି ନାହାନ୍ତି ।

ତେଣୁ ଏକ ଲକ୍ଷ୍ୟହୀନ ଆଦର୍ଶହୀନ ପ୍ରାଚୁର୍ଯ୍ୟ ପ୍ରକ୍ରି-ୟାରେ ଯେଉଁ ଅର୍ଥହୀନ, ଆଦର୍ଶହୀନ ସାହିତ୍ୟ ଲେଖା ଯାଉଛି; ତାହା ଏଠାରେ ଅନୁକରଣୀୟ ନୁହେଁ । ବିଟ୍‌ନିକ୍ ଓ ହିପିମାନଙ୍କ ପରି ପ୍ରାଚୀନ ଭାରତରେ ଚାର୍ବାକ୍‌ପନ୍ଥୀ-ମାନେ ଥିଲେ, ଯେଉଁମାନେ କହୁଥିଲେ—

"ଯାବତ୍ ଜୀବେତ୍ ସୁଖଂ ଜୀବେତ୍
ଋଣଂ କୃତ୍ୱା ଘୃତଂ ପିବେତ୍ ।"

କିନ୍ତୁ ଭାରତୀୟ ସାହିତ୍ୟ ଓ ସଂସ୍କୃତି ସେମାନଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ନାହିଁ ।

ମୁଁ ନୂତନର ପରୀକ୍ଷା ଓ ପରିବର୍ତ୍ତନର ଅତ୍ୟନ୍ତ ପକ୍ଷପାତୀ । କିନ୍ତୁ ଏ ପରିବର୍ତ୍ତନ ଅର୍ଥହୀନ ନ ହେଉ । ଏହା ସମାଜକୁ ଆଶା, ବିଶ୍ୱାସ, ଗର୍ବ ଓ ଗୌରବର ନୂତନ ଚେତନା ଦାନ କରୁ ।







# ସବୁଜ ବିପ୍ଳବର ସଫଳ କାହାଣୀ

କଳାହାଣ୍ଡି ଜିଲ୍ଲା ଜୁନାଗଡ଼ ଅନ୍ତର୍ଗତ ମେରିଆବନ୍ଧଲି ପଞ୍ଚାୟତର ଟଙ୍ଗରାଭାଡ଼ି ଗ୍ରାମରେ ସହଦେବ ଗଉଡ଼ଙ୍କ ଘର। ସେ ଜଣେ କ୍ଷୁଦ୍ର ଚାଷୀ। ଜମିରେ ଫସଲ କରି ସେଥିରୁ ଯାହାକିଛି ପାଆନ୍ତି ସେଥିରେ ନିଜ ଗୁଜୁରାଣ ମେଣ୍ଟେ ନାହିଁ। ଶୁଖିଲା ଭୂଇଁରେ ଫସଲ ବା ଉତ୍ପୁରିବ କେମିତି ? ଏଇ ସମସ୍ୟାକୁ ଅନେକ ଭାବିଚିନ୍ତି ସହଦେବ ଜୁନାଗଡ଼ କୃଷକ ସେବା ସମବାୟ ସମିତିରୁ ଋଣ ଆଣି ନିଜ ଜମିରେ ସେଚକୂପଟିଏ ଖୋଳିଲେ। ଏଥର ତାଙ୍କର ଭାଗ୍ୟରେ ପରିବର୍ତ୍ତନ ଆସିଲା। କୂପ ଖୋଳିବା ପୂର୍ବରୁ ଯେଉଁ ଜମିରୁ ସେ ଅନେକ କଷ୍ଟ କରି ବର୍ଷକୁ ମାତ୍ର ସାତ ଶହ ଟଙ୍କା ଉପାର୍ଜନ କରୁଥିଲେ, ଏବେ ସେଥିରୁ ବର୍ଷକୁ ୨୨୯୦ ଟଙ୍କା ଯାଏ ଉପାର୍ଜନ କଲେଣି। ସବୁଜ ବିପ୍ଳବର ସ୍ୱପ୍ନ ସାର୍ଥକ କରିବା ଦିଗରେ ଚେଷ୍ଟିତ ସହଦେବ ଏବେ ତାଙ୍କ ସେଚକୂପରେ ବିଦ୍ୟୁତ୍ ଚାଳିତ ମଟରଟିଏ ମଧ୍ୟ ବସାଇଲେଣି। ଏଣିକି ତାଙ୍କର ଆଉ ଚିନ୍ତା ନାହିଁ। ସବୁଜ ଫସଲର ସ୍ୱପ୍ନରେ ସେ ଅଧିକରୁ ଅଧିକ ଶ୍ରମ କରୁଛନ୍ତି କୃଷି ସମୃଦ୍ଧି ନିମନ୍ତେ।

# ମୁଁ କ'ଣ ଜଣେ ସ୍ୱାଧୀନତା ସଂଗ୍ରାମୀ ?



ଶ୍ରୀ ସୂର୍ଯ୍ୟମଣି ନାୟକ

ଲେଖକ ଦେଶବନ୍ଧୁ ଚିତ୍ତରଞ୍ଜନଙ୍କର ଘରୋଇ କାର ଡ୍ରାଇଭର ଥିଲେ । ସେହି ସମୟରେ ସେ ଶ୍ରୀଅରବିନ୍ଦ, ମହାତ୍ମା ଗାନ୍ଧୀ, ପଣ୍ଡିତ ମୋତିଲାଲ, ଭଗିନୀ ନିବେଦିତା, ଉତ୍କଳ ଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ, ରାସ ବିହାରୀ ବୋଷ, ନେତାଜୀ ସୁଭାସ, ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ପ୍ରଭୃତି ଯୋଗଜନ୍ମା ମହାପୁରୁଷମାନଙ୍କର ସାନ୍ନିଧ୍ୟ ଲାଭ କରିଥିଲେ । ସେହି ସାନ୍ନିଧ୍ୟର ସ୍ମୃତିକୁ ଏଇ ନିବନ୍ଧରେ ଲିପିବଦ୍ଧକରି 'କୁସୁମ ପରଶେ ପଟ ନିଘଟେ' ପରି ଲେଖକ ଭାଗ୍ୟବନ୍ତ ହୋଇ ପାରିଛନ୍ତି । ଏଠାରେ ପାଠକପାଠିକାମାନଙ୍କ ପାଇଁ ଲେଖାଟି ପରିବେଷଣ କରାଯାଉଛି—

ମୁଖ୍ୟ ସଂପାଦକ

ଏହା ପ୍ରାୟ ୧୯୦୭-୧୯୦୮ ମସିହା ପୂର୍ବର ଘଟଣା । ସେତେବେଳେ କଲିକତା ସହରରେ ଆଜିଭଳି ଏତେ କୋଠାବାଡ଼ି ନ ଥିଲା । ବିଜୁଳି ବତୀ ମଧ୍ୟ ଜଳୁ ନ ଥିଲା । ଗ୍ୟାସ ବତୀଗୁଡ଼ିକ ରାସ୍ତାଘାଟକୁ ଆଲୋକିତ କରୁଥାଏ । ମଟରକାର ନିହାତି ସଂଭ୍ରାନ୍ତ ପରିବାରର ଥାଏ । ଟ୍ରାମ ଲାଇନ୍ ତିଆରି ସରିଥିଲେ ମଧ୍ୟ ଘୋଡାମାନେ ଟ୍ରାମକୁ ଟାଣୁଥାନ୍ତି । ହାଓଡ଼ା ପୋଲ ଏବଂ ମହାରାଣୀ ଭିକ୍ଟୋରିଆ ମନୁମେଣ୍ଟ ତିଆରି ହୋଇ ନ ଥାଏ ।

ଆମ ଓଡ଼ିଶାର ହଜାର ହଜାର ଲୋକ କଲିକତାରେ କୁଲି, ମୋଟିଆ ଭାବେ କାମ କରି ପେଟ ପୋଷନ୍ତି । ତେବେ ଏମିତି କେହି ଧନୀ ଘର ନ ଥିଲେ, ଯେଉଁମାନଙ୍କ ଘରେ ଓଡ଼ିଆ ପୂଜାରୀ ଓ ମାଳୀ କାମ କରୁ ନ ଥିଲେ । କାଳିଘାଟ ମନ୍ଦିରରେ ମଧ୍ୟ ଅଧିକାଂଶ ଓଡ଼ିଆ ଯଜମାନି କରୁଥିଲେ ।

ତେବେ ଯାହାହେଉ ମୁଁ ପ୍ରଥମେ ପ୍ରଥମେ କୁଲି, ପୂଜାରୀ ଓ ଶ୍ରମିକ ଭାବରେ କାର୍ଯ୍ୟ କରି ଶେଷରେ ଜଣେ ମିଲିଟାରୀ ଅଫିସରଙ୍କର ଘରୋଇ ଚାକର ଭାବେ ରହି କାର୍ଯ୍ୟ କରୁଥିବା ବେଳେ ମଟର ଚଳାଇବା ଶିଖିଗଲି । ତେଣୁ ମୋତେ ମଣିଷ କରି ଗଢିବାରେ ମେଜର ପ୍ରାଇସ୍ ସାହେବଙ୍କର ଅବଦାନ ଯଥେଷ୍ଟ ।

ଭବାନୀପୁରର ପ୍ରସିଦ୍ଧ ବାରିଷ୍ଟର ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସଙ୍କଠାରୁ ଖବର ପାଇ ମୁଁ ତାଙ୍କୁ ସାକ୍ଷାତ୍ କରି ଓ

ତାଙ୍କରି ଗୃହରେ ମୋର ମଟର ଡ୍ରାଇଭର ଭାବରେ ଚାକିରି ଆରମ୍ଭ ହେଲା । ସେତେବେଳେକୁ ପ୍ରଥମ ମହାଯୁଦ୍ଧ ଲାଗି ନ ଥାଏ ।

ଶ୍ରୀଯୁକ୍ତ ଦାସ ଜଣେ ଦୟାଳୁ, ବିଜ୍ଞ ଆଇନଜ୍ଞ ଏବଂ ଦେଶସେବକ ବୋଲି ସମସ୍ତେ ଜାଣନ୍ତି । ମୁଁ ତାଙ୍କର ଗାଡ଼ି ଡ୍ରାଇଭର ଭାବେ ଚାକିରି କରିବା ମଧ୍ୟ ଈଶ୍ୱରଙ୍କର ଏକ ମହତ ଇଚ୍ଛା । ସାଧାରଣତଃ ବାରିଷ୍ଟରଙ୍କୁ ଆଲିପୁର କୋର୍ଟକୁ ନେବା ଆଣିବା କରିବା ତଥା ସହର ମଧ୍ୟରେ ବିଭିନ୍ନ ସ୍ଥାନକୁ ନେବା ମୋର ପ୍ରଧାନ କାମ ଥିଲା ।

ଠିକ୍ ଏହି ସମୟରେ "ବନ୍ଦେ ମାତରମ୍" ଆନ୍ଦୋଳନ କଲିକତା ତଥା ଦେଶର ବିଭିନ୍ନ ସ୍ଥାନରେ ତୀବ୍ର ଭାବରେ ଚାଲିଥାଏ । ମଝିରେ ମଝିରେ ଖବର ଆସେ ଆଜି ଏତେ ଲୋକ ଫାଶି ପାଇଲେ, ଗିରଫ ହେଲେ ଇତ୍ୟାଦି ।

ଆନ୍ଦୋଳନରେ ଶ୍ରୀ ଅରବିନ୍ଦ ଗିରଫ ହୋଇ ଜେଲ୍‌ରେ ଥାଆନ୍ତି ଏବଂ ତାଙ୍କ ପାଇଁ ଦେଶବନ୍ଧୁ ଚିତ୍ତରଞ୍ଜନ କେଶ୍ ଲଢୁଥାନ୍ତି । ଆଲିପୁର କୋର୍ଟ ହଲ୍‌ର କାଠଘଡ଼ା ମଧ୍ୟରେ ବହୁଥର ମୁଁ ଶ୍ରୀଅରବିନ୍ଦଙ୍କୁ ଦେଖିଛି । ସେ ବହୁ ଶାନ୍ତ ସରଳ ଭାବରେ ଗୋରା ବାରିଷ୍ଟରମାନଙ୍କ ସହ କଥାଭାଷା କରନ୍ତି ।

ଶୁଭ ସମୟ ଆସିଲା । ଶ୍ରୀଅରବିନ୍ଦ ପ୍ରମାଣ ଅଭାବରୁ ଖଲାସ ହେଲେ । ମାତ୍ର ତାଙ୍କ ଉପରେ ଗୋରା ସରକାରଙ୍କର କଡ଼ା ନଜର ଥାଏ । "ବନ୍ଦେ ମାତରମ୍" ଆନ୍ଦୋଳନ ଏକ ଭୟଙ୍କର ହିଂସାତ୍ମକ ଆନ୍ଦୋଳନ । ଏହି ଆନ୍ଦୋଳନରେ ବହୁ ହାକିମ ହୁକୁମାଙ୍କର ପ୍ରାଣନାଶ ହୋଇଛି ।

ଖଲାସ ହେବାପରେ ଶ୍ରୀଅରବିନ୍ଦ ଦେଶବନ୍ଧୁଙ୍କ ଘରକୁ ବୁଲି ଆସନ୍ତି । କାରଣ ଉଭୟଙ୍କର ଘର ପ୍ରାୟ ପାଖାପାଖି । ତାଙ୍କସହ ଆଉଜଣେ ବିପ୍ଳବୀ ମଧ୍ୟ ବାରିଷ୍ଟର ଦାସଙ୍କ ଘରକୁ ଆସନ୍ତି । ସେ ହେଉଛନ୍ତି ଶ୍ରୀଯୁକ୍ତ ରାସବିହାରୀ ବୋଷ । ଏହାଛଡ଼ା ଆଉ ଯେଉଁମାନେ ପର୍ଯ୍ୟାୟକ୍ରମେ ବାରିଷ୍ଟରଙ୍କ ଘରକୁ ଯିବା ଆସିବା କରନ୍ତି ସେମାନେ ହେଲେ (୧) ମହାମାନବ ମହାତ୍ମା ଗାନ୍ଧୀ (୨) କବିଗୁରୁ ରବୀନ୍ଦ୍ରନାଥ ଠାକୁର (୩) ସରୋଜିନୀ ନାଇଡୁ (୪) ଉତ୍କଳ ଗୌରବ ମଧୁସୂଦନ ଦାସ (୫) ଶ୍ରୀଯୁକ୍ତ ଶରତ ଚନ୍ଦ୍ର ବୋଷ (୬) ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ (୭) ଶ୍ରୀ ଜାନକୀ ନାଥ ବୋଷ ଏବଂ ବହୁ ମାନ୍ୟଗଣ୍ୟ ବ୍ୟକ୍ତି । ତେବେ ଉପରୋକ୍ତ ମହାନ୍ ବ୍ୟକ୍ତିମାନଙ୍କୁ ମୁଁ ବହୁଥର ଗାଡ଼ିରେ ନେବା ଆଣିବା କରିବାର ସୁଯୋଗ ପାଇଥିଲି ।

ଅରବିନ୍ଦଙ୍କର ନିଜର ଗାଡ଼ି ଥିଲା । ମାତ୍ର ସେ ତାକୁ ଆଉ ବ୍ୟବହାର କଲେ ନାହିଁ । ଥରେ ଦେଶବନ୍ଧୁ ମୋତେ ଅତି ସ୍ନେହଶୀଳ ଭାବରେ ନିର୍ଦ୍ଦେଶ ଦେଇଥିଲେ ତୁମକୁ ଶ୍ରୀଅରବିନ୍ଦଙ୍କ ପାଇଁ କିଛି କାମ କରିବାକୁ ପଡ଼ିବ । ମୁଁ ବହୁତ ଆନନ୍ଦରେ ତାଙ୍କ କଥା ମାନିଲି । ମାତ୍ର ଏହାର ତାତ୍ପର୍ଯ୍ୟ ବହୁ ବିଳମ୍ବରେ ହୃଦୟଙ୍ଗମ କଲି । ଗୋରା ପୋଲିସ୍‌ଙ୍କର କଡ଼ା ନଜର ସତ୍ତ୍ୱେ ମୁଁ ଚିତ୍ତରଞ୍ଜନଙ୍କ ଗାଡ଼ିକୁ ଶ୍ରୀ ଅରବିନ୍ଦଙ୍କର ନିର୍ଦ୍ଦେଶରେ ବିଭିନ୍ନ ସ୍ଥାନକୁ ନିଏ ଏବଂ ଶ୍ରୀ ଅରବିନ୍ଦ ମଧ୍ୟ ଚିନ୍ତାଶୂନ୍ୟ ହୋଇ ବସନ୍ତି । ମୁଁ ଜାଣିଥାଏ ଯେ ଏହା ଏକ ଭୟଙ୍କର ଆନ୍ଦୋଳନ ଏବଂ ମୋର କର୍ତ୍ତବ୍ୟ ମଧ୍ୟ ମହତ୍ । ତଥାପି ଭବିଷ୍ୟତ୍‌ରେ ଶ୍ରୀଅରବିନ୍ଦ ଯେ ପୃଥିବୀକୁ ଦିବ୍ୟ ଆଲୋକ ପଥରେ ଅଗ୍ରସର ହେବା ପାଇଁ ଦିଗ୍‌ଦର୍ଶନ ଦେବେ ଏକଥା ମୁଁ ବୁଝି ପାରି ନ ଥିଲି ।



କଲିକତା ସହର ମଧ୍ୟରେ ମୁଁ ଯେଉଁ କେତେଗୁଡ଼ିଏ ସ୍ଥାନକୁ ତାଙ୍କୁ ନେଇଥିଲି ତନ୍ମଧ୍ୟରୁ ବିଡ଼ନ୍ ଷ୍ଟ୍ରୀଟ୍‌ରେ ଥିବା ଭଗିନୀ ନିବେଦିତାଙ୍କ ଗହ ଅନ୍ୟତମ । ତା' ଛଡ଼ା କଲିକତା ବାହାରକୁ ମଧ୍ୟ ଆମେ ଯାଉ । ବର୍ଦ୍ଧମାନ ମହାରାଜାଙ୍କ ଗଡ଼ କଲିକତାଠାରୁ ୪୦ -୪୫ ମାଇଲ୍ ଦୂର । ମହାରାଜାଙ୍କ ସହ ଶ୍ରୀଅରବିନ୍ଦଙ୍କର ନିବିଡ଼ ସଂପର୍କ ଥିଲା । ଉଭୟଙ୍କ ମଧ୍ୟରେ ବହୁବାର ଆଲୋଚନା ହୋଇଛି । କଲିକତାରୁ ଯିବା ଆସିବା ବାଟରେ ଆମେ କେଉଁଠି ହେଲେ ବିଶ୍ରାମ ବା ଖାଦ୍ୟପେୟ ଗ୍ରହଣ କରୁନଥିଲୁ । ଆମ ସାଥିରେ ସବୁ ଥାଏ । ଏଠାକୁ ତାଙ୍କୁ ଏକା ଓ ଥରେ ଅଧେ ବାରିଷ୍ଟର ଓ ରାସବିହାରୀ ବୋଷଙ୍କୁ ମଧ୍ୟ ନେଇଛି । ବାଟରେ ଆମକୁ ପୋଲିସ ସନ୍ଦେହ କରନ୍ତି ନାହିଁ । କାରଣ ସଂଭ୍ରାନ୍ତ ପରିବାରର ଗାଡ଼ିଗୁଡ଼ିକ ମଧ୍ୟରେ ସେମାନେ ଦେଶବନ୍ଧୁଙ୍କ ଗାଡ଼ିକୁ ଜାଣିଥାନ୍ତି । ତା' ଛଡ଼ା ମୋତେ ସେମାନେ ବାଟରେ ମଧ୍ୟ ବହୁଥର ଦେଖିଥାନ୍ତି । ଆମ ଯାତ୍ରା ଦେଶବନ୍ଧୁଙ୍କ ଗୃହରୁ ଆରମ୍ଭ ହୁଏ ।

କେତେଥର ଶ୍ରୀଅରବିନ୍ଦଙ୍କୁ ମୁଁ ଚନ୍ଦନନଗରକୁ ନେବା ଆଣିବା ମଧ୍ୟ କରିଛି । ଏ ସହର ଫରାସୀ ସରକାରଙ୍କର ଓ ସେ ଦେଶର ସାହେବମାନେ ବହୁ ସଂଖ୍ୟାରେ ଏଠାରେ ଥାନ୍ତି । ସେମାନଙ୍କ ସହ ଶ୍ରୀଅରବିନ୍ଦଙ୍କର ଆଲୋଚନା ବହୁ ସମୟ ଧରି ଚାଲେ । ମୁଁ ବାହାରେ ତାଙ୍କୁ ଗାଡ଼ି ନିକଟରେ ଅପେକ୍ଷା କରିଥାଏ । ସେ ତାଙ୍କର ଆନ୍ଦୋଳନ ସଂପର୍କୀୟ ଆଲୋଚନା ମଧ୍ୟରେ ମୋ ଖାଦ୍ୟପେୟର ମଧ୍ୟ ଯତ୍ନ ନେଇଥାନ୍ତି । ମୁଁ ତାଙ୍କ କଲିକତା ଗହରେ ବହୁଥର ଖାଦ୍ୟ ଓ ପାନୀୟ ଗ୍ରହଣ କରିଛି । ସେ ବହୁ ଆଦରରେ ମୋତେ ଦିଅନ୍ତି ।

ଶ୍ରୀଅରବିନ୍ଦଙ୍କୁ ମୁଁ ତିନି ଚାରିଥର ଖଡ଼ଗପୁର ଆଣିଛି । ଏକ ସ୍କୁଲ ବା କଲେଜ ପରିସର ମଧ୍ୟରେ ତାଙ୍କର ବନ୍ଧୁମାନେ ଥାନ୍ତି । କିଛି ସମୟ ଆଲୋଚନା ପରେ ଆମେ ଫେରିଯାଉ । ମୁଁ ଏକା ଏକା ମଧ୍ୟ କେତେଗୁଡ଼ିଏ ପାର୍ଶଲ ପୁଡ଼ିଆ ଆଣି ଏହି ସ୍ଥାନରେ ଦେଇ ଯାଇଛି । ମାତ୍ର ଏଇ ପୁଡ଼ିଆରେ କଣ ଥାଏ, ତାହା ଜାଣିବାକୁ ଇଛା କରିନି । ମୋର ଏ କାର୍ଯ୍ୟ ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ଜ୍ଞାତସାରରେ ହେଉଥାଏ । ମାତ୍ର ଉତ୍କଳ ଗୌରବ ମଧୁସୂଦନ ଦାସ ଏ ବିଷୟରେ କିଛି ଜାଣିଥାନ୍ତି ।

ଶେଷ ଥର ପାଇଁ ମୁଁ ଶ୍ରୀଅରବିନ୍ଦଙ୍କୁ ଦେଶବନ୍ଧୁଙ୍କ କଲିକତା ଗୃହରୁ ଆଣି ଖଡ଼ଗପୁରରେ ଛାଡ଼ି ଦେଇଗଲି । ବାଟରେ ଆମକୁ ଗାଡ଼ି ସହ ନୌକାରେ ପାର ହେବାକୁ ପଡ଼ିଥିଲା । ଖଡ଼ଗପୁରରେ ସେ ମୋ ସହ ଶେଷ ଥର ପାଇଁ ଯେଉଁ କେତେ ପଦ କଥାବାର୍ତ୍ତା ହୋଇଥିଲେ ତାହା ମନେ ପଡୁଛି:

> "ସୂର୍ଯ୍ୟମଣି, ମୁଁ ଆଉ କଲିକତା ଫେରିବି ନାହିଁ । ତୁମେ ବାରିଷ୍ଟର ଦାସଙ୍କୁ ମୋ କୁଶଳ ବାର୍ତ୍ତା କହି ଦେବ ।"

ମୁଁ ପଚାରିଲି, "ମୁଁ ଏକା ଏକା ଫେରିଯିବି" ? ସେ ବହୁ ଆବେଗରେ କହିଥିଲେ, ତୁମେ ଯାଅ, ବାଟରେ କୌଣସି ସ୍ଥାନରେ ରହିବାକୁ ଇଚ୍ଛା କରିବ ନାହିଁ । ତା' ପରେ ସେ କେତୋଟି ଟଙ୍କା ଜଳଖିଆ ପାଇଁ ଦେଇ ମୋତେ ବିଦାୟ ଦେଇଥିଲେ ।

ସେହିଦିନଠାରୁ ମୁଁ ତାଙ୍କୁ ଆଉ କଲିକତାରେ ଦେଖି ନାହିଁ । ସେ ସୁଦୂର ପଣ୍ଡିଚେରୀରେ ଅଛନ୍ତି ବୋଲି ମୁଁ ଖବର ପାଇଲି । ମାତ୍ର ସେ କେଉଁ ବାଟରେ ପଣ୍ଡିଚେରୀ ଗଲେ ବା କିପରି ଗଲେ ତାହା ଏ ପର୍ଯ୍ୟନ୍ତ ମୁଁ ଜାଣି ନାହିଁ ।

### ଉତ୍କଳ ଗୌରବ ମଧୁସୂଦନ ଓ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ

ଦେଶବନ୍ଧୁଙ୍କ ଘରେ କିଛିଦିନ ରହିବା ପରେ ଖବର ଆସିଲା ଯେ ଓଡ଼ିଶାର ମଧୁବାବୁ କଲିକତା ଆସି ଗ୍ରାଣ୍ଡ ହୋଟେଲ୍‌ରେ ଅଛନ୍ତି । ଦେଶବନ୍ଧୁଙ୍କୁ ଗାଡ଼ିରେ ବସାଇ ମୁଁ ଗ୍ରାଣ୍ଡ ହୋଟେଲ୍ ଗଲି । ଉପର ମହଲରେ ବହୁତ ଭିଡ଼ ହୋଇଥାଏ । ବହୁ ହାକିମ ହୁକୁମା ତାଙ୍କୁ ସାକ୍ଷାତ କରିବାକୁ ଆସିଥାନ୍ତି । ମଧୁବାବୁ ନିଜ "କାମରା"ରୁ ବାହାରି ଆସିଲେ । ଗୋରା ହାକିମମାନେ ମୁଣ୍ଡରୁ ନିଜ ନିଜ ଟୋପି କାଢ଼ି ଦେଇ ବାମ ହାତରେ ଧରି ଜଣ ଜଣ ହୋଇ ମଧୁବାବୁଙ୍କ ସହ କରମର୍ଦ୍ଦନ କଲେ । ମୋ ଆଖିରୁ ଲୁହ ଝରି ଆସିଲା । ଜଣେ ଓଡ଼ିଆ ପୁଅକୁ ବିଲାତର ସାହେବ ତଥା କଲିକତାର ଉଚ୍ଚ ଶିକ୍ଷିତମାନେ ଏତେ ସମ୍ମାନ ଦିଅନ୍ତି ? ପରେ ସମସ୍ତେ ବସିଲେ, ଚା ଆସିଲା । ବଡ ବିଚିତ୍ର କଥା ମଧୁ ବାବୁ ଚା' ପିଆଲାରେ ମୁହଁ ଲଗାଇଲା ପର୍ଯ୍ୟନ୍ତ ବିଜ୍ଞ ବ୍ୟକ୍ତିମାନେ ଅପେକ୍ଷା କରିଥାନ୍ତି । ଏହାହିଁ ମଧୁବାବୁଙ୍କର ବ୍ୟକ୍ତିତ୍ୱର ଏକ ଝଲକ ।

ସେହି ଦିନରୁ ସେ ଧାରାବାହିକ ଭାବେ ଦେଶବନ୍ଧୁଙ୍କ ଘରକୁ ଅତିଥି ହୋଇ ଆସିବାର ମୁଁ ଜାଣିଛି । କଲିକତା ସହରରେ ବର୍ଷ ବର୍ଷ ଧରି ମୁଁ ତାଙ୍କୁ ଗାଡ଼ିରେ ବସାଇ ବହୁ ସ୍ଥାନକୁ ନେଇଛି ।

ମଧୁବାବୁଙ୍କ ସହ ଆଉ ଯେଉଁ ମହାନ୍ ଓଡ଼ିଆ ଏବଂ ଦେଶ ସେବକଙ୍କୁ ମୁଁ ନେବା ଆଣିବା କରୁଥିଲି ସେ ହେଉଛନ୍ତି ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ । ସେ ମଧ୍ୟ ଦେଶବନ୍ଧୁଙ୍କ ଗୃହରେ ବହୁ ଥର ଅତିଥି ହୋଇଛନ୍ତି । ମାତ୍ର ଉତ୍କଳମଣି ଅଧିକାଂଶ ସମୟ ବଡ଼ ବଜାର, ମହାଜାତି ସଦନ ବା ମଧୁବାବୁଙ୍କ ସହ ଗ୍ରାଣ୍ଡ ହୋଟେଲ କାମରାରେ ରହନ୍ତି । ଦେଶବନ୍ଧୁଙ୍କ ଗୃହରେ ଆମ ଓଡ଼ିଶାର ଉଦ୍ରଖ ଅଞ୍ଚଳର ଶ୍ରୀ ଜଗବନ୍ଧୁ ପଣ୍ଡା ପୂଜାରୀ ଭାବେ କାମ କରୁଥିଲେ । ତାଙ୍କରି ହାତ ରୋଷେଇର ଖାଦ୍ୟ ମହାତ୍ମା ଗାନ୍ଧୀ, ଉତ୍କଳମଣି, ଉତ୍କଳ ଗୌରବ, ସୁଭାସ ବୋଷ, ଶ୍ରୀ ଅରବିନ୍ଦ, ରାସ ବିହାରୀ, ସରୋଜିନୀ ନାଇଡୁ ଏବଂ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଖାଇବାର ସୁଯୋଗ ପାଇଛନ୍ତି ।

ଥରେ ପର୍ଯ୍ୟାୟକ୍ରମେ କବିଗୁରୁ ରବିନ୍ଦ୍ରନାଥ ଠାକୁର, ମଧୁବାବୁ ଓ ଉତ୍କଳମଣିଙ୍କୁ ଗାଡ଼ିରେ ଆଣି ଭବାନିପୁରରେ ଛାଡ଼ିଲି । ଦେଶବନ୍ଧୁଙ୍କ ଉପସ୍ଥିତିରେ ଓଡ଼ିଶାକୁ ସ୍ୱତନ୍ତ୍ର କରିବା ବିଷୟରେ ଆଲୋଚନା ହେଲା । ଉତ୍କଳମଣିଙ୍କ

ଯୁକ୍ତିକୁ କବିଗୁରୁ ଦୃଢ଼ ଭାବରେ ସମର୍ଥନ କଲେ । ସେଦିନ କିନ୍ତୁ ଉତ୍କଳମଣି ମୋ ଯିବା ପୂର୍ବରୁ ପାଦରେ ବୁଲି ବୁଲି ଆସି ଯାଇଥିଲେ । ଆଲୋଚନା ପରେ ମୁଁ ପୁଣି ସମସ୍ତଙ୍କୁ ନେଇ ନିଜ ନିଜ ସ୍ଥାନରେ ଛାଡ଼ି ଦେଇ ଆସିଲି ।

ବହୁ ସମୟରେ କଲିକତାରୁ ଦେଶବନ୍ଧୁଙ୍କଠାରୁ ଖବର ଆଣି ମୋତେ କଟକ ମଧୁକୋଠିକୁ ଆସିବାକୁ ପଡ଼େ । ମଧୁବାବୁଙ୍କର ମୋ ପ୍ରତି ଏଇ ନିର୍ଦ୍ଦେଶ ଥାଏ । କଟକ ଷ୍ଟେସନରେ କେତେ ହାତ ଟଣା ରିକ୍ସା, ଶଗଡ଼, ଘୋଡ଼ାଗାଡ଼ି ଆଦି ଥାଏ । ମୁଁ ଗାଡ଼ିରେ ନ ବସି, ଜିନିଷ ପତ୍ରକୁ ମୁଣ୍ଡରେ ଥୋଇ ବୁଲି ବୁଲି ଯାଏ ।

ମଧୁବାବୁଙ୍କ ପାଇଁ କଲିକତାରୁ କିଛି ଫଳ, ଫୁଲୁରି, କମଳା ରସ ସାଥିରେ ଆଣିଥାଏ । ତା'ଛଡ଼ା ସେ ମଧ୍ୟ ମୋତେ କହିଥାନ୍ତି, "ନାୟକ, ଆଉ ଥର ଆସିଲେ ମୋ ପାଇଁ ସିଲହଟର ସପୁରୀ ଆଣିବ ।" ଏଣୁ ସପୁରୀରୁ ମଧ୍ୟ ୨/୪ ଟି ଆଣିଥାଏ ।

ବହୁ ସମୟରେ ଉତ୍କଳମଣି ଓ ବ୍ରଜ ସୁନ୍ଦର ଦାସ ମଧୁବାବୁଙ୍କ ଘରକୁ ଆସନ୍ତି । ଟେବୁଲ ମଝିରେ ଗୋଟିଏ ବିରାଟ ଲଣ୍ଠନ ଜଳୁଥାଏ । ସେ ଘରି ପାଖରେ ଏମାନେ ବସି କେତେ କଥା ଆଲୋଚନା କରନ୍ତି । ମୁଁ ପାଖରେ ବସି ବହୁଥର ଆଲୋଚନା ଶୁଣିଛି । ସ୍ୱାଧୀନତା ଆନ୍ଦୋଳନ, ସ୍ୱତନ୍ତ୍ର ଓଡ଼ିଶା ଏବଂ ଆହୁରି କେତେ କଥା ଆଲୋଚନା ହୁଏ ।

କେତେବେଳେ କେତେବେଳେ ମୋତେ ବ୍ରଜସୁନ୍ଦରଙ୍କ ଘରକୁ ଓ ଉତ୍କଳମଣିଙ୍କ ଘରକୁ ବୁଲିଯିବାର ସୁଯୋଗ ମିଳିଛି । ବ୍ରଜବାବୁ ଆମ ନିଜ ଘର ପାଖ ସୟଦପୁରର (ତିଆରିଆ) ଦୟାଶୀଳ ଜମିଦାର ।

ଏହିପରି କିଛିଦିନ ପରେ ମୋତେ ପୁଣି କଲିକତା ଫେରିଯାଇ, ମୋର ନିତିଦିନିଆଁ ଡ୍ରାଇଭର କାର୍ଯ୍ୟ କରିବାକୁ ପଡ଼େ ।

## ସ୍ୱରାଜ ଆନ୍ଦୋଳନ

ମୁଁ ଭଲଭାବେ ଜାଣିଛି ଯେ, ପ୍ରଥମେ ପ୍ରଥମେ ମହାମାନବ ମହାତ୍ମା ଗାନ୍ଧୀଙ୍କ ସହ ଦେଶବନ୍ଧୁ ଚିତ୍ତରଞ୍ଜନ-ଙ୍କର ପଡ଼ୁ ନଥିଲା । ଦେଶବନ୍ଧୁ ସ୍ୱରାଜ ଆନ୍ଦୋଳନରେ ଯୋଗ ନ ଦେଲେ ହୁଏତ ଅଦ୍ଭୁତ କାର୍ଯ୍ୟର ସମାଧାନ ହୋଇ ପାରିବ ନାହିଁ—ଏହା ମହାତ୍ମା ଗାନ୍ଧୀ ମନେ ମନେ ଭାବୁଥିଲେ ।

ଦିନେ ସକାଳ ଜଳଖିଆ ପରେ ମଧୁବାବୁଙ୍କୁ ଗାଡ଼ିରେ ନେଇ ଗଣେଶ ଟକିଜ୍ ପାଖ କବିଗୁରୁଙ୍କ ଘରକୁ ଗଲି । ବଗିଚାରେ ବସି ରବୀନ୍ଦ୍ର ନାଥ ଠାକୁରଙ୍କସହ ମଧୁବାବୁଙ୍କର ବହୁ ଆଲୋଚନା ହେଲା । ଠାକୁର କହିଲେ, " କଲିକତାର ବୁଦ୍ଧିମାନ ଲୋକମାନେ ଯଦି ଗାନ୍ଧୀଙ୍କୁ ସମର୍ଥନ ନ କରିବେ ତେବେ ସେ ଏକା କିପରି ବିପ୍ଳବ କରିବେ ଏଥିପାଇଁ ଆପଣଙ୍କୁ ଏକ ମହତ୍ କାର୍ଯ୍ୟ କରିବାକୁ ପଡ଼ିବ । ନିମିକି, ସନ୍ଦେଶ ଓ ଚା' ଖାଇ ଆମେ ବିଦାୟ ନେଇ ଆସିଲୁ । ବିଦାୟ ସମୟରେ ଗାଡ଼ି ମଧ୍ୟକୁ ନିଜର ଲମ୍ବ ହସ୍ତଟିକୁ ବଢ଼ାଇ କବିଗୁରୁ ମଧୁବାବୁଙ୍କସହ କରମର୍ଦ୍ଦନ କଲେ ।

ତା' ପରଦିନ ମଧୁବାବୁଙ୍କୁ ଗ୍ରାଣ୍ଡ ହୋଟେଲରୁ ଏବଂ କବିଗୁରୁଙ୍କୁ ଗଣେଶ ଟକିଜ୍ ପାଖ ନିଜ କୋଠୀରୁ ଆଣି ଦେଶବନ୍ଧୁଙ୍କ ଗୃହରେ ପହଞ୍ଚିଲି । ଦୁଇ ବିଜ୍ଞ ପୁରୁଷ ଦେଶବନ୍ଧୁଙ୍କୁ ଅନେକ ବୁଝାଇଲେ ।

ଦିନେ ମହାତ୍ମାଗାନ୍ଧୀ କଲିକତା ଆସି ବାଲିଗଞ୍ଜ ବିରଳା କୋଠିରେ ଥାନ୍ତି । ମୋତେ ଗାଡ଼ି ନେଇ ସେଠାକୁ ଯିବାକୁ ପଡ଼ିଲା । ଗାନ୍ଧିଜୀ ବାହାରି ପଡ଼ିଲେ । ପଛ ସିଟ୍‌ରେ ଗାନ୍ଧିଜୀ ଓ ସରୋଜିନୀ ନାଇଡୁ ବସିଲେ । ଆମେ ଆସି ଚିତ୍ତରଞ୍ଜନଙ୍କ ଗୃହରେ ପହଞ୍ଚିଲୁ । କେତେଗୁଡ଼ିଏ ଆଲୋଚନା ପରେ ଉଭୟଙ୍କ ମଧ୍ୟରେ ମହା ମିଳନ ହେଲା । ଗାନ୍ଧୀଙ୍କ ସହ ଦେଶବନ୍ଧୁ ସେଦିନ ସଭାରେ ଯୋଗ ଦେଲେ । ସେହିଦିନଠାରୁ ଦେଶବନ୍ଧୁ ବିଲାତି ପୋଷାକ ଛାଡ଼ି ଖଦଡ଼ ଧୋତି ଚଦର ପିନ୍ଧି ଦେଶ ପାଇଁ କାମ କରିବାକୁ ଆଗେଇଗଲେ ।

ମୋତେ ତାଙ୍କର ଜୀବିତାବସ୍ଥାରେ ବହୁ ସ୍ଥାନକୁ ଆନ୍ଦୋଳନ ଓ ଗୋପନୀୟ ଆଲୋଚନା ତଥା ସଭାମାନଙ୍କୁ ନେବାକୁ ପଡ଼ିଛି । ଯେଉଁ ଦିନ ମହାତ୍ମା ଗାନ୍ଧୀ ଶ୍ୟାମ ବଜାର ଚିତ୍ତରଞ୍ଜନ ପାର୍କରେ ଭାଷଣ ଦେଇଥିଲେ ସେଦିନ ଦେଶ-ବନ୍ଧୁଙ୍କୁ ନେଇ ସେ ସଭାରେ ମୁଁ ବହୁତ କାମ କରିଛି ।

ଦେଶବନ୍ଧୁ ବିଭିନ୍ନ ସ୍ଥାନକୁ ଯାଇ ଆଲୋଚନା କରନ୍ତି । ମୁଁ ଗାଡ଼ି ନିକଟରେ ବସି ସୂତା କାଟେ । ମୋର ହାତ କଟା ସୂତା ଅତି ସରୁ ଓ ମଜଭୁତ । ଏହି ସୂତାର ଖଦଡ଼ା ଲୁଗାକୁ ଓଡ଼ିଶାର କେତେକ ସ୍ୱାଧୀନତା ସଂଗ୍ରାମୀ ମୋ ଠାରୁ ନେଇ ବୁଣାଇ ପିନ୍ଧିଛନ୍ତି ।

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କର ସୂତା କଟା ମଧ୍ୟ ମୋ ଉପରେ ବେଶ୍ ପ୍ରଭାବ ପକାଇଥିଲା । ସେ ସୂତା କାଟୁଥିବା ସମୟରେ କାହାରି ସହିତ କଥାବାର୍ତ୍ତା କରନ୍ତି ନାହିଁ ଏବଂ ଏହାହିଁ ତାଙ୍କ ରଚନାତ୍ମକ କାର୍ଯ୍ୟର ଏକ ବଡ଼ି ସୁଅଭ୍ୟାସ ।

## ଚିଦେଶବନ୍ଧୁ

କେବଳ ଦେଶବନ୍ଧୁ ନୁହନ୍ତି, ତାଙ୍କ ନିର୍ଦ୍ଦେଶରେ କଂଗ୍ରେସ ଅଧିବେଶନକୁ ଓ ବଡ଼ ବଡ଼ ସଭାମାନଙ୍କୁ ମୋତେ ବହୁ ସ୍ୱାଧୀନତାକାମୀ ବିଜ୍ଞ ବ୍ୟକ୍ତିମାନଙ୍କୁ ମଧ୍ୟ ନେବା ଆଣିବା କରିବାକୁ ପଡ଼େ । ଏଣୁ ଆନ୍ଦୋଳନରେ ମୁଁ

ଏକ ପ୍ରକାର ଝାସ ଦେଲି ବୋଲି ଏକ ସ୍ୱତଃଭାବ ମୋତେ ଉତ୍ସାହ ଯୋଗାଉଥିଲା ।

ଏହାପରେ ଦେଶବନ୍ଧୁଙ୍କ ଗୃହ ଏକ ପ୍ରକାର ସ୍ୱରାଜ୍ୟ ପୀଠ ଭାବେ କାମ କଲା । ନେତାଜୀ ସୁବାଷ ବୋଷ, ଶରତ ଚନ୍ଦ୍ର ବୋଷ ଏବଂ ପଣ୍ଡିତ ଗୋପବନ୍ଧୁ ଏବଂ ଆହୁରି ଅନେକ ଏହିଠାରେ ଅନେକ ସମୟ ଆଲୋଚନା କରନ୍ତି । ପୂଜାରୀ ଜଗବନ୍ଧୁ ଓ ମୋ ଉପରେ ଦେଶବନ୍ଧୁଙ୍କର ସଂପୂର୍ଣ୍ଣ ବିଶ୍ୱାସ ଥାଏ । ତାଙ୍କ ଘର ଗୋପନୀୟ କାଗଜପତ୍ର ଆଣି କଟକରେ ମଧୁବାବୁଙ୍କୁ ଦେବା ଓ ପୁନଶ୍ଚ କଲିକତା ଫେରିଯିବା ସ୍ୱାଧୀନତା ଆନ୍ଦୋଳନର ଏକ ବଶେଷ କାର୍ଯ୍ୟ ଥିଲା ।

ଇତି ମଧ୍ୟରେ ପ୍ରଥମ ମହାଯୁଦ୍ଧ ଶେଷ ହୋଇ ଯାଉଛି । ଆନ୍ଦୋଳନ ତୀବ୍ର ଭାବରେ ପୁଣି ଆଗେଇ ଚାଲିଲା । ସଭା ଓ ଶୋଭାଯାତ୍ରାକୁ ଗୋରା ପୋଲିସ୍‌ମାନେ ଘୋଡ଼ା ସବାର ବାହିନୀ ଦ୍ୱାରା ଛିନ୍ ଛତ୍ର କରି ଦେଲେ ।

ଦିନେ ପୂର୍ବାହ୍ନରେ ଦେଶବନ୍ଧୁଙ୍କ ଘରକୁ ଗୋରା ପୋଲିସ୍ ଘେରାଉ କଲେ । ଆମେ ସମସ୍ତେ ହତବାକ୍ ହୋଇଗଲୁ । ତଥାପି ମନରେ ବହୁତ ସାହସ ଥାଏ । ବୈଠକ ଘରେ ଗୋରା ହାକିମମାନଙ୍କ ସହ ଦେଶବନ୍ଧୁଙ୍କର ବହୁ ସମୟ ଆଲୋଚନା ଚାଲିଲା । ମାତ୍ର ସେମାନଙ୍କର ସାଲିସ୍‌କୁ ଦେଶବନ୍ଧୁ ଗ୍ରହଣ ନକରି ଗିରଫ୍ ପରୱାନାକୁ ଗ୍ରହଣ କଲେ । ଆମରି ଆଗରେ ସେ ପୋଲିସ୍ ଗାଡ଼ିରେ ବସି ଜେଲ୍‌କୁ ଚାଲିଗଲେ ।

ଆମ୍ଭେମାନେ ସେହିଦିନ ତାଙ୍କ ଘରେ ଥାଉ । ଆଉ ମୋ ଗାଡ଼ିରେ ବସିବ କିଏ ? ଶ୍ରୀ ଅରବିନ୍ଦ, ଶ୍ରୀ ରାସବିହାରୀ ପ୍ରଭୃତି ଏହାର ବହୁପୂର୍ବରୁ କଲିକତା ଛାଡ଼ି ଚାଲି ଯାଇଥାନ୍ତି । ଦେଶବନ୍ଧୁ ମଧ୍ୟ ଗଲେ । କିଛିଦିନ ପରେ ଖବର ଆସିଲା ଦେଶବନ୍ଧୁ ଖୁବ୍ ଅସୁସ୍ଥ ଆଉ ସେ ଦାର୍ଜିଲିଂରେ ଜେଲ୍ କର୍ତ୍ତୃପକ୍ଷଙ୍କ ଦ୍ୱାରା ଚିକିତ୍ସିତ ହେଉଛନ୍ତି । ମାତ୍ର ଏ ଖବର ମିଳିବାର ଅଳ୍ପଦିନପରେ ପୁଣି ପ୍ରଚାର ହେଲା, ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ଦାର୍ଜିଲିଂରେ ଶେଷ ନିଶ୍ୱାସ ତ୍ୟାଗକଲେ । କଲିକତା ନଗରୀ କାନ୍ଦି ଉଠିଲା । ଆମେ ସିଆଲଦା ଷ୍ଟେସନକୁ ଧାଇଁଲୁ । ତାଙ୍କର ମର ଶରୀର ଦାର୍ଜିଲିଂ ମେଲରେ ଆସିଲା । ହଜାର ହଜାର ଲୋକ କାନ୍ଦି କାନ୍ଦି ଶବ ଶୋଭାଯାତ୍ରାରେ ଚାଲିଲେ । ସେ ଦିନର କୋଟି କଣ୍ଠରେ କଣ୍ଠ ମିଳାଇ ଗାଇଥିବା ଶୋକ ସଂଗୀତଟି ମୋର ମନେ ଅଛି—

"ଚିତ୍ତରଞ୍ଜନ, ସ୍ୱଦେଶ ପ୍ରାଣ ଧନ
ହାରିଲେ ଜୀବନ ଦାର୍ଜିଲିଂ ରେ"—

ଏହା ପ୍ରାୟ ୧୯୨୪ର ଘଟଣା । ତା' ପରେ କାଳିଘାଟର କେଉଡ଼ତାଲ ଶ୍ମଶାନରେ ତାଙ୍କ ମର ଶରୀର ଜଳି ଉଠିଲା । ଦେଶବନ୍ଧୁ ଶହୀଦ ହେଲେ । ସେ ଦିନର ଘଟଣା ମୋତେ କାଲି ଭଳି ଲାଗୁଛି । ଦେଶବନ୍ଧୁଙ୍କ ସହ ମୋର ଏକ ଫଟୋ ଥିଲା । ଗତ ୧୯୫୫ ମସିହା ବନ୍ୟାରେ ତାହା ଭୁଆଡେ ନଷ୍ଟ ହୋଇଗଲା । ହୁଏତ ଏହା ମୋର ପରିବାର ପାଇଁ ଏକ ଶେଷ ସ୍ମୃତି ହୋଇ ରହିଥାନ୍ତା ।

## ନେତାଜୀ ସୁବାସ ଚନ୍ଦ୍ର ବୋଷ

ଏହାପରେ ମୋତେ କଲିକତା ସହରରେ ବହୁତ ଅସୁବିଧାରେ ଦିନ କାଟିବାକୁ ପଡ଼ିଛି । ପ୍ରଥମେ ପ୍ରଥମେ ମୁଁ ନେତାଜୀ ସୁବାଷ ବୋଷଙ୍କ ସହିତ ସଂପର୍କ ରଖିଥିଲି । ଦେଶବନ୍ଧୁଙ୍କ ଘରୋଇ ଡ୍ରାଇଭର ଏବଂ ମୋର କାର୍ଯ୍ୟ ସଂପର୍କରେ ସେ ପୂର୍ବରୁ ସବୁ ଜାଣିଥିଲେ । ତଥାପି ନେତାଜୀ ମୋତେ ଚଳିବା ପାଇଁ ମଝିରେ ମଝିରେ ଆର୍ଥିକ ସାହାଯ୍ୟ କରିଥାନ୍ତି । ତାଙ୍କ ଘରେ ମୁଁ ଦିନାକେତେ ଠିକା ଡ୍ରାଇଭର ଭାବେ କାର୍ଯ୍ୟ କରିଛି । କିଛିଦିନ ଅନ୍ୟାନ୍ୟ ମାଡ଼ୱାଡ଼ି ଛୋଟ ବଡ଼ କଂପାନୀ ଏବଂ ଗୋରା ସରକାରଙ୍କର ସଲିସିଟର ଶ୍ରୀଯୁକ୍ତ ଏନ. ସି. ମଣ୍ଡଳଙ୍କର ଘରେ ମଧ୍ୟ କାର୍ଯ୍ୟ କରିଛି ।

୧୯୨୪ରେ ଦେଶବନ୍ଧୁଙ୍କର ଦେହ ତ୍ୟାଗ ପରେ ମଧୁବାବୁଙ୍କର କଲିକତା ଆସିବା କମିଗଲା । ତଥାପି ସେ ଆସିଲେ ପୂର୍ବଭଳି ଗ୍ରାଣ୍ଡ ହୋଟେଲରେ ରୁହନ୍ତି ଓ ମୋତେ ଖବର ଦିଅନ୍ତି । ତା' ଛଡ଼ା ସେ ଶରତ ବୋଷ ଓ ସୁବାଷ ବୋଷଙ୍କର ଘରକୁ ମଧ୍ୟ ଯିବା ଆସିବା କରନ୍ତି । ମାତ୍ର ଏନ୍. ସି. ମଣ୍ଡଳଙ୍କର ଘରକୁ ମୋଟେ ଆସନ୍ତିନାହିଁ ।

"ଶରତ୍ ଚନ୍ଦ୍ର ବୋଷ ଓ ସୁବାଷ ଚନ୍ଦ୍ର ବୋଷଙ୍କର ତିନି ଚାରିଖଣ୍ଡ ମଟର କାର ଥିଲା । ସେଥିରେ ହିନ୍ଦୁ ଓ ମୁସଲମାନ ଡ୍ରାଇଭରମାନେ ଥିଲେ । ତଥାପି ମୁଁ ତାଙ୍କର ଫୋର୍ଡ଼ କଂପାନୀ ଗାଡ଼ିଟିକୁ ଅଧିକାଂଶ ସମୟ ଚଳାଇଥିଲି ।

## ଆନ୍ଦୋଳନରେ ମୋର ସକ୍ରିୟ ଅଂଶ ଗ୍ରହଣ

ଦିନେ ନେତାଜୀଙ୍କଠାରୁ ଖବର ପାଇ ତାଙ୍କୁ ଦେଖା କରିବାକୁ ଆସିଲି । ଆନ୍ଦୋଳନ ପାଇଁ କେତେଖଣ୍ଡ ଟ୍ରକରେ ଲୋକମାନଙ୍କୁ ବୋହିନେଇ ସେମାନଙ୍କୁ କ୍ଲାଇବ୍ ଷ୍ଟ୍ରିଟ୍ ଛକରେ ପର୍ଯ୍ୟାୟ କ୍ରମେ ଛାଡ଼ି ଦେବାକୁ ସେ ମୋତେ କହିଲେ । ମୋର ତାରିଖ ଅଥବା ମସିହା ମନେନାହିଁ । ତଥାପି ଆମ୍ଭେ ଆଠ ନଅ ଖଣ୍ଡ ଟ୍ରକରେ ବିପ୍ଳବୀମାନଙ୍କୁ ବୋହିନେଇ ଛାଡ଼ି ଦେଇ ଆସିଲୁ ।

କ୍ଲାଇବ୍ ଷ୍ଟ୍ରିଟ୍ ଓ ଡ୍ରେଉଳ ହାଉସୀ ଛକ ପାଖରେ ଗୋଟାଏ ବିରାଟ ମାର୍ବଲ ପଥରରେ ଭାରତୀୟମାନଙ୍କ ବିରୁଦ୍ଧରେ କିଛି ଲେଖା ଖୋଦନ କରାଯାଇଥିଲା । ଯେଉଁ ବିଦେଶୀ ପରିବ୍ରାଜକମାନେ ଭାରତ ଆସନ୍ତି ସେମାନେ ଉକ୍ତ ଲେଖା ପଢ଼ି ଭାରତୀୟମାନଙ୍କ ଉପରେ ଖରାପ ଧାରଣା ନେଇ ସ୍ୱଦେଶକୁ ଫେରନ୍ତି । ସୁବାସ ବାବୁଙ୍କ ଭଳି ଜାତୀୟ ବୀର ଏକାର୍ଯ୍ୟକୁ ଅନୁମୋଦନ କଲେ ନାହିଁ । ଶେଷରେ ବିପ୍ଳବ ମଧ୍ୟରେ ଏହି କଥା ଉଠାଇ ଦେବାକୁ ସେ ଚିନ୍ତା କଲେ ।

ନେତାଜୀଙ୍କ ନିର୍ଦ୍ଦେଶରେ ବିଭିନ୍ନ ସ୍ଥାନରେ ସଂଗ୍ରାମୀମାନଙ୍କୁ ପହଞ୍ଚାଇଦେବା ମୋର ସାଧାରଣତଃ ପ୍ରଧାନ କାର୍ଯ୍ୟ ଥିଲା । ସେଦିନ ମଧ୍ୟ ମୋ ସହ ଆଉ କେତେ ଜଣ ଡ୍ରାଇଭର ଏ କାର୍ଯ୍ୟରେ ଲାଗିଥିଲେ । ଆମେ କେବେ ପ୍ରତ୍ୟକ୍ଷ ଲଢ଼େଇକୁ ଆସୁନଥିଲୁ । କାରଣ ଆମର ଦାୟିତ୍ୱ ଓ କର୍ତ୍ତବ୍ୟ ଅନ୍ୟ ପ୍ରକାରର ଥିଲା ।

ସେଦିନ ବିପ୍ଳବୀମାନେ ହାତରେ ନିହଣ ହାତୁଡ଼ି ଧରି ମାର୍ବଲ ପଥର ଲେଖାଗୁଡ଼ିକୁ କାଟି ଖଣ୍ଡ ଖଣ୍ଡ କରିଦେଲେ । ତତ୍କ୍ଷଣାତ୍ ପୋଲିସ୍ ବାହିନୀ ଧାଇଁ ଆସି ଲାଠି ପ୍ରହାର ଓ ଗିରଫଦାରୀ କାମ ଆରମ୍ଭ କରିଦେଲେ । କିଛିକ୍ଷଣ ପରେ ପୁଣି ଗୋଟିଏ ଦଳ ଗାଡ଼ିରୁ ଓହ୍ଲାଇ ପଡ଼ି ପଥରକୁ କାଟିବାରେ ଲାଗିଲେ । ଘୋଡ଼ା ସବାର ବାହିନୀ ଦ୍ୱାରା ବିପ୍ଳବକୁ ଦମନ କରାଗଲା ସତ, ମାତ୍ର ନେତାଜୀଙ୍କ ଉଦ୍ୟମ ସଫଳ ହେଲା ।

ଆଉ ଦିନକର କଥା । ବିପ୍ଳବୀମାନେ ତଥା କଲିକତାର ହଜାର ହଜାର ଓଡ଼ିଆ ଓ ଅଣଓଡ଼ିଆ, ହାତରେ କଂଗ୍ରେସ ପତାକା ଧରି ସ୍ଲୋଗାନ ଦେଇ ଶୋଭାଯାତ୍ରାରେ ଯାଇ ପହଞ୍ଚିଲେ ମନୁମେଣ୍ଟ ଟାୱାର ପାଖରେ । ନେତାଜୀଙ୍କ ଭାଷଣ ଆରମ୍ଭ ହୋଇ ନ ଥାଏ । ପରିବେଶ ଥିଲା ଅତ୍ୟନ୍ତ ଶାନ୍ତ ।

ଆମେ ସମସ୍ତେ ପ୍ରାୟ ନେତାଜୀଙ୍କ ପାଖାପାଖିରେ ଥାଉଁ । ସେ ଚିନ୍ତାମଗ୍ନ ହୋଇ ବସିଥାନ୍ତି । ଏଇ ସମୟରେ ହଠାତ୍ ଘୋଡ଼ା ସବାର ବାହିନୀ ଧାଇଁ ଆସିଲେ । ଆରମ୍ଭ ହେଲା ଲାଠି ପ୍ରହାର । ଗୋରା ପୋଲିସ୍‌ଙ୍କ ଲାଠିର ପ୍ରଚଣ୍ଡ ପ୍ରହାର ନେତାଜୀଙ୍କର ମୁଣ୍ଡରେ ବାଜିଲା । ତାଙ୍କ ମୁଣ୍ଡରୁ ଝରି ଆସିଲା ରକ୍ତ ଧାର । ଖଦଡ଼ ପଞ୍ଜାବିଟି ପୂରା ଭିଜିଗଲା । ତାଙ୍କୁ ଗିରଫ କରାଗଲା ଓ ବହୁ ବିଳମ୍ବରେ ଡାକ୍ତରଖାନାକୁ ନିଆଗଲା । ସେ ଦିନର ପ୍ରଚଣ୍ଡ ଲାଠି ପ୍ରହାର, କେବଳ ମୋ ଉପରେ ନୁହେଁ, ଶହ ଶହ ଓଡ଼ିଆ ଶ୍ରମିକମାନଙ୍କ ଉପରେ ପଡ଼ିଥିଲା । ଏବେ ବି ସେ ବିଭତ୍ସ ଦୃଶ୍ୟ ମୋର ମନେ ପଡ଼ିଯାଉଛି ।

ଏହାର ବହୁଦିନ ପରେ ନେତାଜୀ ଜେଲରୁ ଆସି ପୀଡ଼ିତ ଅବସ୍ଥାରେ ନଜରବନ୍ଦୀଭାବେ ଏଲ୍‌ଗିନ୍ ରୋଡ଼ ଘରେ ରହିଲେ । ଏ ଖବର ପାଇବା ମାତ୍ରେ ମୁଁ ଯାଇଁ ତାଙ୍କୁ ଦେଖି ଆସିଲି । ମୁଁ ଜଣେ ଡ୍ରାଇଭର, କିଏ ବା ପୂଜାରୀ ଓ ମାଳୀ । ତଥାପି, ନେତାଜୀ ଆମ୍ଭମାନଙ୍କର ସୁଖ ଦୁଃଖ ଖବର ବୁଝି ରଖିଥାନ୍ତି । ମଝିରେ ମଝିରେ ମୋତେ ତାଙ୍କ ସହିତ ସାକ୍ଷାତ୍ କରିବାକୁ ପଡ଼େ । ଶରତ ଚନ୍ଦ୍ର ବୋଷ, ଇଲାଦେବୀ, ବିଭାବତୀ ଦେବୀ ମୋତେ ଭଲଭାବେ ଚିହ୍ନି ଥାନ୍ତି । ମୁଁ ବା ଆଉ କି ସାହାଯ୍ୟ କରି ପାରିଥାନ୍ତି । ଘର ଘରେ ଡ୍ରାଇଭର କାମ କରୁଥାଏ । ତଥାପି ସୁବାସ ବାବୁଙ୍କ କଥା ରଖି ତାଙ୍କର ସମର୍ଥିତ ଲୋକଙ୍କୁ ବିଭିନ୍ନ ସ୍ଥାନରେ ଛାଡ଼ି ଦେଇ ଆସୁଥାଏ । ହିଁ ମୋର ମନେ ପଡୁଛି ଏହାର ବହୁଦିନ ପୂର୍ବରୁ ମୁଁ ନେତାଜୀଙ୍କୁ ବେଲୁଡ୍ ମଠର ରାମକୃଷ୍ଣ ମିଶନର ବିଦେଶୀ ସାଧୁମାନଙ୍କ ନିକଟକୁ ବହୁଥର ନେବା ଆଣିବା କରିଛି ।

ଦିନେ ନେତାଜୀଙ୍କ ଘରକୁ ଯାଇଥିଲି । ପୂଜାରୀଠାରୁ ତାଙ୍କର ଅନ୍ତର୍ଦ୍ଧାନ କଥା ଶୁଣିଲି । ସେତେବେଳକୁ କଥାଟା ତାଙ୍କ ଘରେ ଚହଳ ପକାଇ ଦେଲାଣି । ମୁଁ ଫେରି ଆସିଲି ଶେଷଥର ପାଇଁ ମୁଁ ତାଙ୍କୁ ସାକ୍ଷାତ କରି ପାରିଲି ନାହିଁ ।

ଇତି ମଧ୍ୟରେ ଦ୍ୱିତୀୟ ମହାଯୁଦ୍ଧର ଘନଘଟା ପୃଥିବୀକୁ ଗ୍ରାସ କଲା । କଲିକତା ସହରରେ ବିଦେଶୀ ମିଲିଟାରୀମାନେ ଭରପୁର ହୋଇଗଲେଣି । ମୁଁ ମୋ ମାମୁଁ ଜଗନ୍ନାଥ ବେହୁରିଆଙ୍କ ସହ ରେଲବାଇ ଟିକେଟ୍ କଳର ଅଣ୍ଡର ଗ୍ରାଉଣ୍ଡ କାମରାରେ ଥାଏ । ଦିନେ ରାତିରେ ପ୍ରଚଣ୍ଡ ଗର୍ଜନ ଯୋଗୁଁ କୋଠାବାଡ଼ି ଥରି ଉଠିଲା । ମୋର ରହିଥିବା ସ୍ଥାନ ଡ୍ରେଉଲହାଉସୀ ନିକଟରେ ଜାପାନର ବୋମା ପଡ଼ି କୋଠାବାଡ଼ିଗୁଡ଼ିକୁ ଛିନ୍ନଛତ୍ର କରିଦେଲା । ଓଡ଼ିଆ ଶ୍ରମିକମାନେ ପ୍ରାଣ ବିକଳରେ କିଏ କୁଆଡ଼େ ଗଲିଗଲେ । ଅଧିକାଂଶ ମଧ୍ୟ ପ୍ରାଣ ଦେଲେ । ମୁଁ ମୋର ଜିନିଷ ପତ୍ର ଛାଡ଼ି ସେହି ରାତିରେ ମାମୁଁଙ୍କ ସହ ମାଟିଆ ବୁରୁଜକୁ ଦୌଡ଼ିଲି । କଲିକତା ନଗରୀକୁ ସମସ୍ତେ ଭୟ କଲେ ।

ମୋର ନିଜର ବହୁ ପୁରୁଣା ଡ୍ରାଇଭିଂ ଲାଇସେନ୍‌ସ ଥାଏ । ତଥାପି ଦ୍ୱିତୀୟ ମହାଯୁଦ୍ଧରେ ଝାସ ଦେଇ ଦେଶ କାମ କରିବାକୁ ଇଛା ହେଲା ।

କଟକ ଜିଲ୍ଲାର ବ୍ରାହ୍ମଣୀଗାଁର ଶ୍ରୀ ପିତାମ୍ବର ଦାଶଙ୍କ ସହ ମୁଁ American National Red Cross ରେ ଯୋଗ ଦେଲି । ପୁଣି ଏକ ନୂଆ ଉନ୍ମାଦନାର କ୍ଷେତ୍ର ମିଳିଗଲା । ଆମେରିକା ମିଲିଟାରୀ ଯୁଦ୍ଧାହତ ଇଉରୋପ ଲୋକଙ୍କୁ ବୁହାବୋହି କରିବା ମୋର ପ୍ରଧାନ କାମ ଥିଲା ।

ଯେଉଁ ଦିନ ଜାପାନର ହୀରୋସୀମା ଉପରେ ପରମାଣୁ ବୋମା ପଡ଼ିଲା ତାର ଠିକ୍ ଦୁଇଦିନ ପୂର୍ବରୁ ମୁଁ ଗାଡ଼ି ନେଇ କଲିକତାରୁ ନରହାଟି ଯାଇଥାଏ । ଫେରନ୍ତା ଯାତ୍ରାକାଳରେ ମୋର ଗାଡ଼ି ଖରାପ ହୋଇଗଲା । ମୁଁ ମଧ୍ୟ ଜଣେ ଉତ୍ତମ ମଟର ମେକାନିକ୍ । ଏଣ୍ଟୋଲୀ ଚୌରଙ୍ଗୀ ନିକଟରେ ଗାଡ଼ି ବାମ ପାଖରେ ସାଇଡ୍‌କରି ତଳକୁ ଓହ୍ଲାଇ ସଜାଡ଼ିବାରେ ଲାଗିଲି । ହଠାତ୍ ଆଉ ଏକ ଆମେରିକାନ୍ ଡ୍ରାଇଭର ଜ୍ଞାନଶୂନ୍ୟ ଭାବେ ନିଜ ଗାଡ଼ିକୁ

ଦ୍ରୁତ ଗତିରେ ଆଣି ମୋ ଗାଡ଼ି ପଛରେ ଧକା ଦେଲା । ମୋର ଗାଡ଼ିଟି ମୋର ଡ଼ାହାଣ ଗୋଡ଼ ଉପରେ ଚଢିଗଲା । ଗୋଡ଼ ହାଡ଼ ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଗଲା । ମୁଁ ଚେତାଶୂନ୍ୟ ହୋଇ ପଡ଼ିଥାଏ । ଆମରି ଓଡ଼ିଆ ଶ୍ରମିକମାନେ ମୋତେ ବାଟରୁ ଗୋଟେଇ ଶମ୍ଭୁନାଥ ହସ୍ପିଟାଲରେ ପକାଇଲେ । ଆମେରିକାନ୍ ରେଡ୍‌କ୍ରସ୍ ଅଫିସରମାନେ ମୋର ସେବା ନିମନ୍ତେ ବହୁ ଯତ୍ନ କଲେ । ଅପରେସନ୍ ହୋଇ ମୋର ଗୋଡ଼ ଯୋଡ଼ାଗଲା । ତା ପରେ ସେହି ଅଫିସରମାନେ ଚୀନ୍, ଭାରତ, ବର୍ମା ଥେଟର ମଧ୍ୟରେ ମୋତେ ଦ୍ୱିତୀୟ ମହାଯୁଦ୍ଧର ସେବା କାର୍ଯ୍ୟ ପାଇଁ ଏକ ପ୍ରଶଂସାପତ୍ର ଦେଲେ ।

ଦ୍ୱିତୀୟ ମହାଯୁଦ୍ଧ ସରିଲା । ଆମେରିକାନ୍ ନ୍ୟାସନାଲ ରେଡ୍‌କ୍ରସ ସଂସ୍ଥା ସ୍ୱଦେଶକୁ ବାହୁଡ଼ି ଯିବା ପୂର୍ବରୁ ମୋର ଦୁଇ ହାତର କାଖତଳ ପାଇଁ ଦେଇଗଲେ ଦୁଇଗୋଟି ଆଶାବାଡ଼ି । ତା' ପରେ ମୁଁ ମୋର ପତ୍ନୀ ହୀରା ଦେବୀ ଓ ଏକମାତ୍ର ଶିଶୁ ପୁତ୍ରକୁ ସାଙ୍ଗରେ ଧରି ସେଇ ଆଶା ବାଡ଼ି ଆଶ୍ରୟରେ ଓଡ଼ିଶାର ମୋର ସେଇ ଦୂର ମଫସଲ ଗାଁକୁ ଫେରି ଆସିଲି । ଏହା ୧୯୪୬ ମସିହାର ଘଟଣା ।

୧୯୪୭ ଅଗଷ୍ଟ ୧୫ ତାରିଖରେ ଦେଶ ସ୍ୱାଧୀନ ହେଲା । ସେତେବେଳକୁ ମୁଁ ଟିକିଏ ଟିକିଏ ଚାଲିବାକୁ ସକ୍ଷମ ହୋଇଥାଏ । ମାତ୍ର ମୁଁ ମୋର ଦୁର୍ଘଟଣାର ଆଘାତକୁ ଭୁଲିଗଲି । କାରଣ ମୁଁ ଅନୁଭବ କଲି ମୁଁ ଜଣେ ସ୍ୱାଧୀନ ଭାରତୀୟ । ମୋର ଆଖି ଆଗରେ ନାଚି ଉଠିଲା ସେଇ ବୀର ଶହୀଦଙ୍କର ହର୍ଷୋତ୍‌ଫୁଲ୍ଲ ମୁଖ ମଣ୍ଡଳ ।

ଶ୍ରୀଅରବିନ୍ଦ, ମହାତ୍ମା ଗାନ୍ଧୀ, ପଣ୍ଡିତ ମୋତିଲାଲ, ଭଗିନୀ ନିବେଦିତା, ଉତ୍କଳ ଗୌରବ ମଧୁସୂଦନ, ଉତ୍କଳ ମଣି ଗୋପବନ୍ଧୁ, ଶ୍ରୀ ରାସ ବିହାରୀ ବୋଷ, ଶରତ ଚନ୍ଦ୍ର ବୋଷ, ନେତାଜୀ ସୁବାସ ବୋଷ ଏବଂ ଦେଶବନ୍ଧୁ ଚିତ୍ତରଞ୍ଜନ । ମୋରି ଗାଡ଼ିରେ ବସି ସ୍ୱପ୍ନର ସ୍ୱାଧୀନ ଭାରତ କଥା ଚିନ୍ତା କରିଥିଲେ ସେମାନେ ।

ତଥାପି ଆଜି ତୌରାନବେ ବର୍ଷ ବୟସରେ ଦୃଷ୍ଟିଶକ୍ତି ହରାଇ ଲୋଳିତ ଚର୍ମ ହୋଇ ମୁଁ ଚିନ୍ତା କରୁଛି, ମୁଁ କଣ ଜଣେ ସ୍ୱାଧୀନତା ସଂଗ୍ରାମୀ ?

OO

# ଭାରତକୁ ମୁଦ୍ରାପାଣ୍ଠି ଋଣ

ଡ. ବୈଦ୍ୟନାଥ ମିଶ୍ର

> ଭାରତର ଅର୍ଥନୀତିରେ ଏବେ ଯେଉଁ ବିପର୍ଯ୍ୟୟ ହୋଇଛି ସେଥିରେ ମୁଦ୍ରାପାଣ୍ଠି ଋଣ ଅପରିହାର୍ଯ୍ୟ । ବଣ୍ଟାୟ ସଙ୍କଟ ଆମର ସମସ୍ତ କାର୍ଯ୍ୟ ତୁଲାଇ ପାରିବ ନାହିଁ । କିନ୍ତୁ ବିଦେଶରୁ ଋଣ ସଂଗ୍ରହ କରିବା ଅପେକ୍ଷା ଏକ ଆନ୍ତର୍ଜାତିକ ଅନୁଷ୍ଠାନରୁ ଋଣ ସଂଗ୍ରହ କରିବା ଶ୍ରେୟସ୍କର ।

ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଭାରତକୁ ପ୍ରାୟ ୫,୦୦୦ କୋଟି ଟଙ୍କାର ଋଣ ମଞ୍ଜୁର କରିଛି । ଏଥିପାଇଁ ସରକାର ଖୁବ୍ ଖୁସି । ଶ୍ରୀଯୁକ୍ତ ଭେଙ୍କଟରମଣ ଗତ କେତେ ମାସ ଧରି ଏଥିପାଇଁ ଯେଉଁ ଉଦ୍ୟମ କରୁଥିଲେ ତାହା ସଫଳ ହୋଇଛି । ସେଥିପାଇଁ ତାଙ୍କର ଆନନ୍ଦ । କିନ୍ତୁ ବିରୋଧୀ ଦଳମାନଙ୍କ ତରଫରୁ ଏହା ବିରୁଦ୍ଧରେ ପ୍ରବଳ ଆନ୍ଦୋଳନ ସୃଷ୍ଟି ହୋଇଛି । ବିଶେଷକରି ପଶ୍ଚିମ ବଙ୍ଗଳାର ମାର୍କିସ୍ଷ୍ଟ ସରକାର ଏହା ବିରୁଦ୍ଧରେ ଏକ ରକମ ସଂଗ୍ରାମ ଆରମ୍ଭ କରିଛନ୍ତି । ଏହି ସଂଗ୍ରାମର ରାଜନୈତିକ ପୃଷ୍ଠଭୂମିକୁ ଆମେ ଆଲୋଚନା କରିବୁ ନାହିଁ—କେବଳ ଅର୍ଥନୈତିକ ଓ ସାମ୍ବିଧାନିକ ଦିଗ ପ୍ରତି ପାଠକ ମାନଙ୍କର ଦୃଷ୍ଟି ଆକର୍ଷଣ କରିବୁ । ଭାରତର ଅର୍ଥ ଶାସ୍ତ୍ରୀମାନେ ମଧ୍ୟ ଏହି ଋଣ ନେଇ ବ୍ୟସ୍ତ ଓ ବିବ୍ରତ । ତେଣୁ ମୁଦ୍ରାପାଣ୍ଠିର ଋଣ ନେଇ ଯେଉଁ ଅର୍ଥନୈତିକ ଓ ସାମ୍ବିଧାନିକ ସମାଲୋଚନା ହେଉଛି ତାହା ଆମେ ଏଠାରେ ଉଲ୍ଲେଖ କରୁଛୁ ।

ଭାରତ ଏକ ସମାଜବାଦୀ ଅର୍ଥନୈତିକ ବ୍ୟବସ୍ଥା ଗ୍ରହଣ କରିଛି । ସମାଜବାଦୀ ଅର୍ଥନୈତିକ ବ୍ୟବସ୍ଥାର ମୌଳିକ ଲକ୍ଷ୍ୟ ହେଉଛି ଯେ, ସରକାର ଅର୍ଥନୈତିକ ପ୍ରଗତି ଓ ସାମାଜିକ ନ୍ୟାୟ ପାଇଁ ଅର୍ଥନୀତିକୁ ନିୟନ୍ତ୍ରଣ କରିବେ, ବେସରକାରୀ ସଂସ୍ଥା ଉପରେ କର୍ତ୍ତୃତ୍ୱ ଜାରି କରିବେ, ଦରିଦ୍ର ଜନସାଧାରଣଙ୍କର ସାହାଯ୍ୟ ପାଇଁ ସ୍ୱତନ୍ତ୍ର ଅର୍ଥନୈତିକ ବ୍ୟବସ୍ଥା ସୃଷ୍ଟି କରିବେ, ଦରକାର ହେଲେ କେତେକ ମୁଖ୍ୟ ଶିଳ୍ପ ଓ ବ୍ୟବସାୟକୁ ଜାତୀୟକରଣ କରିବେ ଇତ୍ୟାଦି । କିନ୍ତୁ ଆନ୍ତର୍ଜାତିକ ମୁଦ୍ରାପାଣ୍ଠିର ଋଣରେ ଯେଉଁସବୁ ସର୍ତ୍ତାବଳୀ ଅଛି, ତାହାଦ୍ୱାରା ଏହି ସବୁ ମୌଳିକ ଲକ୍ଷ୍ୟ କେତେକ ପରିମାଣରେ ହ୍ରାସ ହେବାର ସମ୍ଭାବନା ଅଛି । ପ୍ରଥମରେ ଏହି ଋଣ ତିନୋଟି କିସ୍ତିରେ ଦିଆଯିବ । ପ୍ରତି କିସ୍ତି ଋଣ ଦେବା ପୂର୍ବରୁ ମୁଦ୍ରାପାଣ୍ଠି ଭାରତର ଅର୍ଥନୈତିକ ନୀତି ତାଙ୍କ ଦୃଷ୍ଟିରୁ ଠିକ୍ ଅଛି କି ନାହିଁ, ତାହା ସମୀକ୍ଷା କରିବେ ଏବଂ ସେମାନେ ଯଦି ସନ୍ତୁଷ୍ଟ ନ ହେବେ, ଋଣ କିସ୍ତି କମାଇ ପାରିବେ । ଏହା ଫଳରେ ଭାରତର ଅର୍ଥନୀତି ଉପରେ ବିଦେଶୀ ହସ୍ତକ୍ଷେପ ସୁଦୃଢ଼ ହେବ । ଭାରତ ସ୍ୱାଧୀନ ଭାବରେ ନିଜର ଅର୍ଥନୈତିକ ବ୍ୟବସ୍ଥା ଗ୍ରହଣ କରି ପାରିବ ନାହିଁ । ଏହା ବ୍ୟତୀତ ଦେଶରେ ମୁକ୍ତ ବାଣିଜ୍ୟକୁ ଅଧିକ ସୁବିଧା ଓ ସୁଯୋଗ ଦେବା, ଆମଦାନୀ କ୍ଷେତ୍ରରେ ଥିବା କଟକଣାକୁ କୋହଳ କରିବା, ବୈଦେଶିକ ବାଣିଜ୍ୟ ନୀତିରେ କେତେକ ପରିବର୍ତ୍ତନ ଆଣିବା, ଖାଦ୍ୟଶସ୍ୟ ଓ ରାସାୟନିକ ସାର ବିକ୍ରୀ ପ୍ରଭୃତିରେ ଯେଉଁ ସବୁ ସବ୍‌ସିଡ୍ ଓ ଆର୍ଥିକ ସାହାଯ୍ୟ ଦିଆଯାଉଛି, ତାକୁ ହ୍ରାସ କରିବା, ରାଷ୍ଟ୍ରାୟତ୍ତ ଶିଳ୍ପ ସଂସ୍ଥାରେ ପ୍ରସ୍ତୁତ ହେଉଥିବା ଜିନିଷର ମୂଲ୍ୟ ବ୍ୟବସାୟିକ ଭିତ୍ତିରେ ସ୍ଥିର କରିବା ଇତ୍ୟାଦି ଯେଉଁ ସର୍ତ୍ତ ସବୁ ଅଛି, ଏଥି ଯୋଗୁଁ ସରକାର ସମାଜବାଦୀ ନୀତି ପରିବର୍ତ୍ତେ ପୁଞ୍ଜିବାଦୀ ଅର୍ଥନୀତି ଗ୍ରହଣ କରିବାକୁ ବାଧ୍ୟ ହେବେ । ତେଣୁ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଋଣ ଭାରତର ଅର୍ଥନୈତିକ କାର୍ଯ୍ୟକ୍ରମରେ ଏକ ବିରାଟ ପରିବର୍ତ୍ତନ ଆଣି ଭାରତର ଘୋଷିତ ନୀତିରେ ବ୍ୟତିକ୍ରମ ସୃଷ୍ଟି କରିବ ।

ଏହି ଆନ୍ତର୍ଜାତିକ ମୁଦ୍ରାପାଣ୍ଠିର ଋଣ ବାବଦରେ ଏତେ ସୁଧ ଦେବାକୁ ପଡ଼ିବ ଯେ ଏହା ଫଳରେ ଭାରତର ଅର୍ଥନୀତି ଦୁର୍ବଳ ହୋଇ ପଡ଼ିବ । ଯେଉଁ ବହିର୍ବାଣିଜ୍ୟର ନିଅଣ୍ଟକୁ ଭରଣା କରିବା ପାଇଁ ଏହି ଋଣ ସଂଗ୍ରହ କରାଯାଉଛି । ସେହି ନିଅଣ୍ଟ ଭରଣା ହୋଇ ପାରିବ ନାହିଁ । ଭାରତ ପୂର୍ବରୁ ଯେଉଁ ଋଣ କରିଛି, ସେଥିପାଇଁ ଏବେ ପ୍ରତ୍ୟେକ ବର୍ଷ ୭୦୦।୮୦୦ କୋଟି ଟଙ୍କା ସୁଧ ଓ ମୂଳ ବାବଦରେ ଦେବାକୁ ପଡୁଛି, ଏବେ ଯେଉଁ ପ୍ରାୟ ୫ ହଜାର କୋଟି ଟଙ୍କା ଋଣ କରାଯାଉଛି ଆସନ୍ତା ସାଢ଼େ ତିନିବର୍ଷ ଭିତରେ ସୁଧ ଯାଇ ନିଟ୍ ଋଣ ଆମକୁ ମିଳିବ ପ୍ରାୟ ୪୩୦୦ କୋଟି ଟଙ୍କା ଅର୍ଥାତ୍ ଆସନ୍ତା ସାଢ଼େ ତିନିବର୍ଷ ଭିତରେ ଯେଉଁ ୫ ହଜାର କୋଟି ଟଙ୍କା ଋଣ ବାବଦରେ ଆମେ

ଉଠାଇବାକୁ ଚେଷ୍ଟା କରୁଛୁ, ଆମେ ସେହି ବାବଦରେ ମୋଟେ ୪୩୦୦ କୋଟି ଟଙ୍କା ପାଉଛୁ—ପ୍ରାୟ ୭୦୦ କୋଟି ଟଙ୍କା ସୁଧ ବାବଦରେ କଟିଯିବ । ଏହି ୫,୦୦୦ କୋଟି ଟଙ୍କାର ମୋଟ ସୁଧ ୧୨ ବର୍ଷ ଭିତରେ ହେବ ପ୍ରାୟ ୩୩୦୦ କୋଟି ଟଙ୍କା । ଅର୍ଥାତ୍ ମୋଟ ଋଣର ଶତକଡ଼ା ୬୬ ଭାଗ ସୁଧ ବାବଦରେ କଟିଯିବ । ୫,୦୦୦ କୋଟି ଟଙ୍କାର ଋଣ ଓ ସୁଧ ମିଶି ପ୍ରାୟ ୮,୩୦୦ କୋଟି ଟଙ୍କା—ଏହାକୁ ୧୨ ବର୍ଷ ଭିତରେ ସୈଠ କରିବାକୁ ପଡ଼ିବ । ଅର୍ଥନୀତି ଉପରେ ଏହାର ଚାପ ଏତେ ଅଧିକ ହେବ ଯେ ଭାରତ ସହଜରେ ମୁଣ୍ଡଟେକି ଠିଆ ହୋଇ ପାରିବ ନାହିଁ । ଏହାଫଳରେ ଭାରତର ସ୍ୱାବଲମ୍ବନଶୀଳତା ବାଧା ପ୍ରାପ୍ତ ହେବ ।

ସବୁଠାରୁ ବଡ଼ ଅଭିଯୋଗ ହେଉଛି ଯେ ଭାରତ ପାର୍ଲାମେଣ୍ଟକୁ ନ ପଚାରି, ପାର୍ଲାମେଣ୍ଟର ପରାମର୍ଶ ନ ନେଇ ଗୁପ୍ତ ଭାବରେ ଏହି ଋଣ ଚୁକ୍ତି କରିଛି । ଭାରତରେ ପାର୍ଲାମେଣ୍ଟ ଜନସାଧାରଣଙ୍କର ପ୍ରତିନିଧି ମୂଳକ ଅନୁଷ୍ଠାନ । ଏହି ଅନୁଷ୍ଠାନକୁ ବେଖାତିରି କରି ଗୁପ୍ତ ଭାବରେ ଋଣ ଚୁକ୍ତି କରିବା ଗଣତନ୍ତ୍ର ପ୍ରତି ଏକ ଅପମାନ । ବ୍ରିଟେନ୍ ଓ ଇଟାଲିରେ ପାର୍ଲାମେଣ୍ଟକୁ ପଚାରି, ପାର୍ଲାମେଣ୍ଟରେ ବିଶେଷ ଭାବରେ ଆଲୋଚନା କରି ଓ ପାର୍ଲାମେଣ୍ଟର ସୁପାରିଶ ନେଇ ଆନ୍ତର୍ଜାତିକ ମୁଦ୍ରାପାଣ୍ଠିରୁ ଋଣ ସଂଗ୍ରହ କରାଯାଇଛି । ଭାରତରେ ଏହାର କାହିଁକି ବ୍ୟତିକ୍ରମ କରାଯାଇଛି, ତାହା କେହି ଜାଣି ପାରୁ ନାହାନ୍ତି ।

ଏହି ସବୁ ଅଭିଯୋଗରେ ଯେ କେତେକ ସତ୍ୟତା ଅଛି, ଏଥିରେ କୌଣସି ସନ୍ଦେହ ନାହିଁ । ତଥାପି ଆମେ କହିବୁ ଯେ, ଭାରତର ଅର୍ଥନୀତିରେ ଏବେ ଯେଉଁ ବିପର୍ଯ୍ୟୟ ହୋଇଛି, ସେଥିରେ ଏହି ଋଣ ଅପରିହାର୍ଯ୍ୟ । ଋଣ କରିବା ପୂର୍ବରୁ ପାର୍ଲାମେଣ୍ଟକୁ ପଚରା ଯାଇ ପାରିଥାନ୍ତା, ପୂର୍ବରୁ ପାର୍ଲାମେଣ୍ଟରେ ଏକଥା ମଧ୍ୟ ଅନେକଥର ଆଲୋଚିତ ହୋଇଛି । କିନ୍ତୁ ପାର୍ଲାମେଣ୍ଟ ଋଣର ସର୍ତ୍ତ ସ୍ଥିର କରି ପାରି ନଥାନ୍ତା । କାରଣ ଋଣର ସର୍ତ୍ତ ସ୍ଥିର କରିବା ପାଇଁ ମୁଦ୍ରାପାଣ୍ଠି ସହିତ ଅନେକଥର ଆଲୋଚନା ହୋଇଛି । ଏହି ଆଲୋଚନା ଫଳରେ ପ୍ରଥମରେ ଯେଉଁ ସବୁ ଟାଣୁଆ ସର୍ତ୍ତ ଥିଲା, ତାହା ପରେ ଅନେକ କୋହଳ ହୋଇଛି । ସନ୍ଧିକରଣର ( Negotiation ) ଅନେକ ସ୍ତର ଅଛି । ପ୍ରତ୍ୟେକ ସ୍ତରରେ ଅନେକ ପ୍ରଶ୍ନ ଉଠିଛି । ଭାରତୀୟ ପ୍ରତିନିଧିମାନେ ଏହି ସବୁ ପ୍ରଶ୍ନକୁ ଖୁବ୍ ଦକ୍ଷତାର ସହିତ ସମାଧାନ କରିଛନ୍ତି । ପାର୍ଲାମେଣ୍ଟ କେବଳ ନୀତି ନିର୍ଦ୍ଧାରଣ କରିପାରିବ, ସନ୍ଧିକରଣରେ ଭାଗ ନେଇ ପାରିବ ନାହିଁ । ପାର୍ଲାମେଣ୍ଟରେ ଯେତେବେଳେ ଏହି ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଋଣ କଥା ଉଠିଛି, ସେତେବେଳେ କୁହାଯାଇଛି ଯେ, ଏହି ଋଣ ଫଳରେ ଭାରତର ସ୍ୱାଧୀନତା ଓ ସାର୍ବଭୌମତାରେ ଯେପରି ଆଞ୍ଚ ନ ଆସେ । ଭାରତ ସରକାର ଏହି ସ୍ୱାଧୀନତା ଓ ସାର୍ବଭୌମତା ରକ୍ଷା କରିବାକୁ ଚେଷ୍ଟା କରିଛନ୍ତି । ପ୍ରତ୍ୟେକ ସନ୍ଧିକରଣ ଗୁପ୍ତ ହେବାର କଥା । ତେଣୁ ଏହି ଋଣ ଯୋଗୁ ପାର୍ଲାମେଣ୍ଟକୁ ଅବମାନନା କରାଯାଇଛି ବୋଲି କହି ହେବ ନାହିଁ ।

ଭାରତ ବିଦେଶରୁ ଋଣ ନ ଆଣିଥିଲେ ଭଲ ହୋଇଥାନ୍ତା । ଦେଶୀୟ ଋଣ ତୁଳନାରେ ବିଦେଶୀ ଋଣ ଯେ ଅନେକ ଖରାପ, ଏଥିରେ କୌଣସି ସନ୍ଦେହ ନାହିଁ । କିନ୍ତୁ କେତେକ କାର୍ଯ୍ୟ ପାଇଁ ବିଦେଶୀ ଋଣ ଅପରିହାର୍ଯ୍ୟ, ଦେଶୀୟ ଋଣ ଏହି କାର୍ଯ୍ୟ ତୁଲାଇ ପାରିବ ନାହିଁ । ଆମର ଏବେ ବଡ଼ ଅସୁବିଧା ହୋଇଛି ଯେ, ଆମେ ଯଥେଷ୍ଟ ବୈଦେଶିକ ପୁଞ୍ଜି ସଂଗ୍ରହ କରି ପାରୁ ନାହୁଁ । ଆମର ଯାହା ବୈଦେଶିକ ପୁଞ୍ଜି ଥିଲା, ତାହା ଆସ୍ତେ ଆସ୍ତେ କମିବାରେ ଲାଗିଛି । ଯେଉଁ ଅନୁସାରେ ଆମର ଆମଦାନୀ ବଢ଼ୁଛି, ସେହି ଅନୁପାତରେ ଆମର ରପ୍ତାନୀ ବଢ଼ୁନାହିଁ । ଖଣିଜ ତୈଳର ଅତ୍ୟଧିକ ଦର ବୃଦ୍ଧି ଯୋଗୁ ସେ ବାବଦ ଦେୟ ଆମର ବଢ଼ି ଚାଲିଛି । ପ୍ରତ୍ୟେକ ବର୍ଷ ଏ ବାବଦରେ ଆମକୁ ବର୍ତ୍ତମାନ ପ୍ରାୟ ୫୦୦ କୋଟି ଟଙ୍କାରୁ ଅଧିକ ବିଦେଶୀ ମୁଦ୍ରା ଦେବାକୁ ପଡୁଛି । ଏହା ଫଳରେ ଆମର ସଞ୍ଚିତ ବିଦେଶୀ ମୁଦ୍ରା ଅନେକ କମି ଯାଇଛି । ୧୯୮୦-୮୧ ରେ ଏହି ସଞ୍ଚିତ ବୈଦେଶିକ ମୁଦ୍ରାପାଣ୍ଠି ୪,୮୦୦ କୋଟି ଟଙ୍କାରୁ ଅଧିକ ଥିଲା । ୧୯୮୧ ଅଗଷ୍ଟ ମାସକୁ ଏହା କମି ୩,୭୬୩ କୋଟି ଟଙ୍କା ହେଲା । ୪ ମାସରେ ପ୍ରାୟ ୧,୧୦୦ କୋଟି ଟଙ୍କା କମିଗଲା । ଯେଉଁ ହାରରେ ବୈଦେଶିକ ମୁଦ୍ରା କମୁଛି, ଆଉ ବର୍ଷେ ଭିତରେ ପ୍ରାୟ ପୁରା ପାଣ୍ଠି ନିଶ୍ଚିହ୍ନ ହୋଇଯିବ । ଏହି ପରିପ୍ରେକ୍ଷୀରେ ବୈଦେଶିକ ଋଣ ସଂଗ୍ରହ କରିବା ନିତାନ୍ତ ଆବଶ୍ୟକ । ତା ନ ହେଲେ ଆମେ ଖଣିଜ ତେଲ ବିଦେଶରୁ ଖରିଦ କରି ପାରିବୁ ନାହିଁ ଏବଂ ଦେଶରେ ଖଣିଜ ତେଲ ଜାତୀୟ ଦ୍ରବ୍ୟର ବିରାଟ ଅଭାବ ସୃଷ୍ଟି ହୋଇ ଅର୍ଥନୈତିକ ସଙ୍କଟ ଦେଖାଦେବ । ଏହା ମଧ୍ୟ ଏଠାରେ ଉଲ୍ଲେଖ ଯୋଗ୍ୟ ଯେ କୌଣସି ଏକ ବିଦେଶରୁ ଋଣ ସଂଗ୍ରହ କରିବା ଅପେକ୍ଷା ଏକ ଆନ୍ତର୍ଜାତିକ ଅନୁଷ୍ଠାନରୁ ଋଣ ସଂଗ୍ରହ କରିବା ଶ୍ରେୟସ୍କର ।

ପରିଶେଷରେ ଏକଥା ମଧ୍ୟ କହିଲେ ଭୁଲ ହେବ ନାହିଁ ଯେ ମୁଦ୍ରାପାଣ୍ଠି ତରଫରୁ ଯେଉଁ ସବୁ ସର୍ତ୍ତ ଆରୋପ କରାଯାଇଛି, ତାହା ଭିତରୁ କେତେକ ଆମ ଅର୍ଥନୀତିକୁ ସୁଧାରିବା ପାଇଁ ଆବଶ୍ୟକ । ମୁଦ୍ରାପାଣ୍ଠିକୁ ଯିବା ପୂର୍ବରୁ ସରକାର ମଧ୍ୟ ଏହି ସବୁ କେତେକ ସର୍ତ୍ତକୁ ନୀତି ହିସାବରେ ଗ୍ରହଣ କରିଛନ୍ତି । ଉଦାହରଣ ସ୍ୱରୂପ ଆନ୍ତର୍ଜାତିକ ମୁଦ୍ରା ପାଣ୍ଠିର ସର୍ତ୍ତ ହେଉଛି ଯେ ସରକାର ମୁଦ୍ରାସ୍ଫୀତିର ହାର କମେଇବେ, ବ୍ୟାଙ୍କମାନଙ୍କରୁ ପ୍ରଦତ୍ତ ହେଉଥିବା ଋଣର ପରିମାଣ ନିର୍ଦ୍ଦିଷ୍ଟ ସୀମା ଭିତରେ ରଖିବେ, ଦେଶରେ ଉତ୍ପାଦନରେ ଉଲ୍ଲେଖ ଯୋଗ୍ୟ ଅଭିବୃଦ୍ଧି କରିବେ, ସରକାରୀ ଖର୍ଚ୍ଚ କମାଇବେ ଇତ୍ୟାଦି । ଏହି ସବୁ ନୀତି ଅର୍ଥ ମନ୍ତ୍ରୀ ଗତଥର ବଜେଟ ଭାଷଣରେ ଉଲ୍ଲେଖ କରିଛନ୍ତି । ତେଣୁ ଏଥିରେ ଆପତ୍ତି କରିବାର କୌଣସି କାରଣ ନାହିଁ । ଏକଥା ସତ୍ୟ ଯେ ଆନ୍ତର୍ଜାତିକ ମୁଦ୍ରା ପାଣ୍ଠିର କେତେକ

ସର୍ତ୍ତ ଆମର ଘୋଷିତ ଅର୍ଥନୀତିର ବିରୋଧୀ—କିନ୍ତୁ ସରକାର ଯଦି ଚତୁରତାର ସହିତ ଅର୍ଥନୀତିକୁ ପରିଚାଳିତ କରିବେ, ଏହି ସବୁ ସର୍ତ୍ତ ଭାରତୀୟ ଅର୍ଥନୀତିର ଆଭିମୁଖ୍ୟକୁ ସହଜରେ ବଦଳେଇ ପାରିବ ନାହିଁ ।

ପ୍ରାସଙ୍ଗିକ ଭାବରେ ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ ବିଦେଶୀ ଋଣଭାର ଋଣର ପ୍ରୟୋଗ ଉପରେ ନିର୍ଭର କରେ । ପୃଥିବୀର ନୋବେଲ ପୁରସ୍କାର ପ୍ରାପ୍ତ ବିଶିଷ୍ଟ ଅର୍ଥଶାସ୍ତ୍ରୀ ସାମୁଏଲସନ କହିଛନ୍ତି ଯେ, ବିଦେଶୀ ଋଣ ପ୍ରଥମାବସ୍ଥାରେ ଦେଶର ଅର୍ଥନୀତିରେ ଚାପ ପକାଏ, ସରକାର ଜନସାଧାରଣଙ୍କର ଖାଉଟି ଦ୍ରବ୍ୟ କମେଇ ରପ୍ତାନୀ ବୃଦ୍ଧି କରି ସୁଧ ଓ ମୂଳ ପରିଶୋଧ କରିବାକୁ ବାଧ୍ୟ ହୁଅନ୍ତି । କିନ୍ତୁ ଏହି ଋଣ ଯଦି ଦେଶର ପୁଞ୍ଜି ଗଠନରେ ସାହାଯ୍ୟ କରି ପାରେ, ତାହାହେଲେ ଏହା ଅର୍ଥନୀତିକୁ ମଜବୁତ୍ କରେ । ଏହା ଫଳରେ ଋଣଭାର କମିଯାଏ । ଋଣ ଯୋଗୁଁ ଯେଉଁ ପୁଞ୍ଜି ଗଠିତ ହୁଏ, ତାହା ଋଣ ପରିଶୋଧ କରିବା ପାଇଁ ଯଥେଷ୍ଟ ସମ୍ବଳ ସୃଷ୍ଟି କରି ଅର୍ଥନୈତିକ ପ୍ରଗତି ପାଇଁ ମଧ୍ୟ ଅଧିକ କିଛି ସମ୍ବଳ ଯୋଗାଇ ପାରେ । ଏହି ପରିପ୍ରେକ୍ଷୀରେ ଆମେ କହିବୁ ଯେ ଆନ୍ତର୍ଜାତିକ ମୁଦ୍ରାପାଣ୍ଠିର ଋଣ ଭାର ସରକାରଙ୍କ ଦକ୍ଷତା, ଚତୁରତା ଓ କୁଶଳତା ଉପରେ ନିର୍ଭର କରେ ।



# ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଚାରଣକବି

# ବୀରକିଶୋର

ଶ୍ରୀ ଦୁର୍ଗା ଚରଣ କୁଅଁର

ଜାତୀୟ କବି ବୀରକିଶୋରଙ୍କର ଅଗ୍ନିବର୍ଷି ଦେଶାତ୍ମବୋଧ ସଙ୍ଗୀତ ଦିନେ ଓଡିଶାର ପୁରପଲ୍ଲୀରେ ନବ ଜାଗରଣ ସୃଷ୍ଟି କରିଥିଲା । ସଂପ୍ରତି ତାଙ୍କ ସଙ୍ଗୀତର ପ୍ରାସଙ୍ଗିକତା ଅନେକ ଉପଲବ୍ଧି କରି ପାରିବେ ନାହିଁ । କିନ୍ତୁ ସେ ସବୁର କାବ୍ୟିକ ଆବେଗ ଓ ଦେଶାତ୍ମବୋଧ ଏବେ ମଧ୍ୟ ପ୍ରାଣକୁ ସ୍ପର୍ଶ କରେ । ନିବନ୍ଧଟି ବୀରକିଶୋରଙ୍କ କାବ୍ୟ ପ୍ରତିଭାର ବହୁ ବିଭାବ ସହିତ ପାଠକମାନଙ୍କୁ ପରିଚିତ କରାଇବ ।

ସମ୍ପାଦକ

ଯୁଗ ଅତୀତ ହୋଇଛି । ଦେଶର ସ୍ୱାଧୀନତା ସଂଗ୍ରାମ ବର୍ତ୍ତମାନ ଇତିହାସର ବିଷୟ । ଯେଉଁ ଅଗଣିତ ନରନାରୀ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ବିଦେଶୀ ସରକାର ବିରୁଦ୍ଧରେ ଲଢି ବହୁ ଦୁଃଖ ନିର୍ଯ୍ୟାତନା ଭୋଗକରି ଦେଶର ସ୍ୱାଧୀନତା ଆଣିଥିଲେ ସେମାନଙ୍କ ଭିତରୁ ଅନେକ ଏବେ ମୃତ, ଅନ୍ୟମାନେ ବିସ୍ମୃତିପ୍ରାୟ । ସେ ଦିନ ସନ୍ଧ୍ୟାରେ କଟକରେ ଏକ ଛୋଟ ବସାଘରର ଅନ୍ଧାରୀ କୋଠରୀରେ ଜାତୀୟ କବି ବୀରକିଶୋରଙ୍କ ସାମନାରେ ବସି ମୋ ମନରେ ଏହିସବୁ ଭାବନା ହିଁ ଆସୁଥାଏ । କବିଙ୍କ ମୃତ୍ୟୁର ପ୍ରାୟ ବର୍ଷେ ଦୁଇବର୍ଷ ପୂର୍ବରୁ ତାଙ୍କ ସହିତ ସାକ୍ଷାତ କରିବାର ସୁଯୋଗ ମୋର ହୋଇଥିଲା । ସେତେବେଳକୁ ତାଙ୍କର ଜରାଜୀର୍ଣ୍ଣ ଅବସ୍ଥା । ରୋଗଗ୍ରସ୍ତ ହୋଇ ଏକ ପ୍ରକାର ଚଳତ୍‌—ଶକ୍ତିହୀନ । ଚେୟାରଟି ଉପରେ ସ୍ଥାଣୁଭଳି ବସି ଥା'ନ୍ତି । କବି ରାଧାମୋହନ ଗଡ଼ନାୟକ ଓ ମୁଁ ତାଙ୍କୁ ସାକ୍ଷାତ କରିବାକୁ ଯାଇ ଯେତେବେଳେ ପହଞ୍ଚିଗଲୁ ତାଙ୍କ ମନରେ କି ଆନନ୍ଦ । ଶ୍ରୀଯୁକ୍ତ ଗଡ଼ନାୟକ ତାଙ୍କର ବହୁ ଦିନର ପରିଚିତ କବିବନ୍ଧୁ । ମୁଁ ତାଙ୍କ ନିକଟରେ ନୂଆ ଓ ଅପରିଚିତ । କିନ୍ତୁ ସେହି କେତେ ଘଣ୍ଟା ଭିତରେ ତାଙ୍କର ସରଳ ସ୍ନେହପୂର୍ଣ୍ଣ ବ୍ୟବହାର ଓ ମହନୀୟ ବ୍ୟକ୍ତିତ୍ୱ ମତେ ବିମୁଗ୍ଧ ଓ ମମତାବଦ୍ଧ କରିଦେଲା ।

ଏଇ ହେଉଛନ୍ତି ଓଡିଶାରେ ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ରଥୀ ଜାତୀୟ କବି ବୀରକିଶୋର ଦାସ ଯାହାଙ୍କର ଅଗ୍ନିବର୍ଷି ଦେଶାତ୍ମବୋଧ ସଙ୍ଗୀତ ଓଡିଶାର ପୁରପଲ୍ଲୀରେ ସ୍ୱାଧୀନତା ସଂଗ୍ରାମର ଅପୂର୍ବ ଜାଗରଣ ସୃଷ୍ଟି କରିଥିଲା । ପ୍ରବଳ ପରାକ୍ରମୀ ବ୍ରିଟିଶ୍ ସରକାର ବିରୁଦ୍ଧରେ ଦେଶର ସ୍ୱାଧୀନତା ସଂଗ୍ରାମ ଅହିଂସା ନୀତିରେ ହିଁ ପରିଚାଳିତ ହେଉଥିଲା । ମହାତ୍ମାଗାନ୍ଧୀ ଥିଲେ ଏହି ଅହିଂସା ସଂଗ୍ରାମର ମନ୍ତ୍ରଦାତା ଓ କର୍ଣ୍ଣଧାର । ସତ୍ୟାଗ୍ରହୀମାନେ ହସି ହସି ବ୍ରିଟିଶ ସରକାରର ଯଷ୍ଠି, ଗୁଳି ଓ ଫାଶୀଖୁଣ୍ଟର ସନ୍ମୁଖୀନ ହେଉଥିଲେ । ଶହ ଶହ ସଂଖ୍ୟାରେ କାରାବରଣ କରୁଥିଲେ । ଦେଶ—ପ୍ରେମ, ନୈତିକ ବଳ ଓ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱ ପ୍ରତି ଅଖଣ୍ଡ ବିଶ୍ୱାସ ହିଁ ଥିଲା ସେମାନଙ୍କର ରକ୍ଷା କବଚ । ସଂଗ୍ରାମ କାଳରେ ଦେଶାତ୍ମବୋଧ ସଙ୍ଗୀତ ସେମାନଙ୍କ ମନୋବଳ ଦୃଢ଼ ରଖିବାରେ ସହାୟକ ହେଉଥିଲା ଓ ଜାତୀୟ ବିପ୍ଳବକୁ ଉତ୍ସାହିତ ଓ ଉଦ୍ଦୀପିତ କରୁଥିଲା । ଏଥିପାଇଁ ସ୍ୱାଧୀନତା ସଂଗ୍ରାମ କାଳରେ ଭାରତର

ବିଭିନ୍ନ ପ୍ରାନ୍ତରେ ବହୁ ଦେଶାତ୍ମବୋଧ ସଙ୍ଗୀତ ରଚିତ ହୋଇଥିବାର ଦୃଷ୍ଟାନ୍ତ ରହିଛି । ଆମ ପଡ଼ୋଶୀ ବଙ୍ଗ ଦେଶରେ ସ୍ୱାଧୀନତା ସଂଗ୍ରାମର ବହୁ ସ୍ମରଣ କବି ସେମାନଙ୍କ ଦେଶାତ୍ମବୋଧ ସଙ୍ଗୀତ ଦ୍ୱାରା ପୁର-ପଲ୍ଲୀରେ ଅଭୂତପୂର୍ବ ଜାତୀୟ ଉନ୍ମାଦନା ସୃଷ୍ଟି କରିଥିଲେ । 'ବନ୍ଦେ ମାତରମ୍', 'ଭାରତ ମାତା କି ଜୟ', 'ଝଣ୍ଡା ଉଞ୍ଚା ରହେ ହମାରା' ପ୍ରଭୃତି ସ୍ଲୋଗାନ ମଧ୍ୟ ସ୍ୱାଧୀନତା ସଂଗ୍ରାମୀଙ୍କ ମନରେ ମନ୍ତ୍ରବତ୍ କାର୍ଯ୍ୟ କରୁଥିଲା ଏବଂ ଏହି ମନ୍ତ୍ର ଉଚ୍ଚାରଣ କରି ସେମାନେ ହସି ହସି କାରାବରଣ କରୁଥିଲେ ଓ ଫାଶୀକାଠରେ ଝୁଲୁଥିଲେ । ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ କାଳରେ ଜାତୀୟ କବି ବୀରକିଶୋର, ଉତ୍କଳର ବାଞ୍ଛାନିଧି ମହାନ୍ତି ପ୍ରଭୃତିଙ୍କ ଦେଶାତ୍ମବୋଧ ସଙ୍ଗୀତ ବହୁ ଜନପ୍ରିୟ ହୋଇଥିଲା ଓ ଦେଶବାସୀଙ୍କ ପ୍ରାଣରେ ଜାତୀୟତାର ଉନ୍ମାଦନା ସୃଷ୍ଟି କରିଥିଲା । ବୀରକିଶୋର ଥିଲେ ଏହି ଜାତୀୟତାବାଦୀ କବିମାନଙ୍କ ମଧ୍ୟରେ ଅଗ୍ରଣୀ ।

କଟକ ଜିଲ୍ଲାର ଜଗତସିଂହପୁର ଅଞ୍ଚଳରେ ଅଳକାନନ୍ଦୀ କୂଳସ୍ଥ ଏକ ଗ୍ରାମରେ ୧୮୯୬ ସାଲରେ ବୀରକିଶୋରଙ୍କର ଜନ୍ମ । ତାଙ୍କର ପୂର୍ବପୁରୁଷ ଯାଜପୁର ଅଞ୍ଚଳରୁ ଉଠିଆସି ଏଠାରେ ବସବାସ କରିଥିବାର ଜଣାଯାଏ । ଓଡ଼ିଶାର ସ୍ୱାଧୀନତା ସଂଗ୍ରାମରେ ଏହି ଜଗତ୍‌ସିଂହପୁର ଅଞ୍ଚଳ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ଭାଗୀରଥୀ ମହାପାତ୍ର, ନୀଳମଣି ପ୍ରଧାନ, ପ୍ରାଣକୃଷ୍ଣ ପଢ଼ିଆରୀ ପ୍ରଭୃତି ଓଡ଼ିଶାର ସ୍ୱାଧୀନତା ସଂଗ୍ରାମର ରଥୀମାନେ ଏହି ଅଞ୍ଚଳର ଲୋକ । ଏହି ଅଞ୍ଚଳର ଅଳକାଶ୍ରମ ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନର ଏକ ପ୍ରାଣକେନ୍ଦ୍ର ଥିଲା ।

ବୀରକିଶୋରଙ୍କର କାବ୍ୟ ପ୍ରତିଭା ଥିଲା ସହଜାତ । ଜାତୀୟତାବୋଧରେ ଉଦ୍‌ବୁଦ୍ଧ ହୋଇ ସେ ସୌଖୀନ କବିତା ନ ଲେଖି ବିପ୍ଳବର କବିତା ହିଁ ଲେଖିଥିଲେ । ଏ ଦିଗରେ ତାଙ୍କର ମନୋଭାବ ସ୍ପଷ୍ଟ ।

"କବି, ବାନ୍ଧେ କବିତା ବନ୍ଦ କର,
କମାଣ ପରାଏ କଲମ ଧର ;
ଥରେ ବଜା ନବ ସମର ଭେରୀ
ତରୁଣ ଯେତେ ସେଇ ସଙ୍କେତେ
ଆସନ୍ତୁ ତୋତେ ହର୍ଷେ ଘେରି ।
ଚୋଟପି ଅଧର ଯାଇଛି ଶୁଖି,
କବିତା ଲେଖିବୁ କାହାକୁ ଦେଖି ?
ସୁନ୍ଦ ବଦନେ ନାହିଁରେ ହସ
ଶରତ ରାସ ଦେଖିବ କିଏ,
ସ୍ପର୍ଶିବ କିଏ ବସନ୍ତ ରାସ ।

ଜୀବନର ପ୍ରାରମ୍ଭରେ ପାରିବାରିକ ଅସୁବିଧା ହେତୁ ବୀରକିଶୋରଙ୍କୁ ସରକାରୀ ଚାକିରୀ କରିବାକୁ



ପଡ଼ିଥିଲା । କିନ୍ତୁ ତାଙ୍କର ବିପ୍ଳବୀ ହୃଦୟ ଏଥିରେ ସନ୍ତୁଷ୍ଟ ହୋଇ ପାରି ନ ଥିଲା । ପଞ୍ଜାବରେ ଜାଲି-ଓ୍ୱାନାବାଗ ହତ୍ୟାକାଣ୍ଡ ଓ ପରେ ପରେ ଅସହଯୋଗ ଆନ୍ଦୋଳନର ଆରମ୍ଭ । ମୋହନ ଦାସ କରମଚାନ୍ଦ ଗାନ୍ଧୀଙ୍କ ନେତୃତ୍ୱରେ ଦେଶରେ ଅଭୂତପୂର୍ବ ଜାତୀୟ ଜାଗରଣର ସୂତ୍ରପାତ ହେଲା । ସରକାରୀ ଚାକିରୀରେ ଥାଇ ମଧ୍ୟ ବୀରକିଶୋର ଛଦ୍ମନାମରେ 'ମୋହନ ବଂଶୀ' ନାମକ ଏକ ଦେଶାତ୍ମବୋଧ କବିତା ପୁସ୍ତକ ରଚନା କରି ପ୍ରକାଶ କଲେ । ତାଙ୍କର ଏହି ପ୍ରଥମ କବିତା ପୁସ୍ତକ ସେ ଉତ୍କଳ ଗୌରବ ମଧୁସୂଦନଙ୍କ ନାମରେ ଉତ୍ସର୍ଗ କରିଥିଲେ । ଓଡ଼ିଆ ଭାଷାରେ ଏହା ଥିଲା ପ୍ରଥମ ରାଜନୈତିକ ସଙ୍ଗୀତ ପୁସ୍ତକ । ଏହି ପୁସ୍ତକର ଅଭାବିତ ଲୋକପ୍ରିୟତା କବିଙ୍କର କାବ୍ୟ ପ୍ରତିଭା ଓ ଦେଶପ୍ରୀତିର ସ୍ୱାକ୍ଷର ବହନ କରେ । ବ୍ରିଟିଶ ସରକାର ବହିଟିକୁ ବେଆଇନ୍ ଘୋଷଣା କଲା ବେଳକୁ ହଜାର ହଜାର ସଂଖ୍ୟାରେ ଏହା ବିକ୍ରୀ ହୋଇ ସାରିଥିଲା । କବିଙ୍କ ନାମ ଆଉ ଅଛପା ରହିଲା ନାହିଁ । ଏହା ପରେ ବୀରକିଶୋର ସରକାରୀ ଚାକିରୀରୁ ଇସ୍ତଫା ଦେଇ ଜାତୀୟ ସଂଗ୍ରାମରେ ପୂର୍ଣ୍ଣ ପ୍ରାଣରେ ଆତ୍ମୋତ୍ସର୍ଗ କଲେ । ସ୍ୱାଧୀନତା ସଂଗ୍ରାମର ଆରମ୍ଭରୁ ସ୍ୱାଧୀନତା ପ୍ରାପ୍ତି ଯାଏ ତାଙ୍କର ବିପ୍ଳବୀ ଲେଖନୀ ବନ୍ଦ ହୋଇ ନ ଥିଲା । ତାଙ୍କ ଲିଖିତ ଉନ୍ମାଦନାଭରା ଜାତୀୟ ସଙ୍ଗୀତ ଗାଇ ଗାଇ ଶତ ଶତ ସ୍ୱାଧୀନତା ସଂଗ୍ରାମୀ ବ୍ରିଟିଶ ସରକାରର ଅକଥନୀୟ ନିର୍ଯ୍ୟାତନା ଭୋଗ କରିଥିଲେ । କାରାଗାର ଭିତରେ ଓ ବାହାରେ ବୀରକିଶୋରଙ୍କ ଦେଶାତ୍ମବୋଧ ସଙ୍ଗୀତ ସତ୍ୟାଗ୍ରହୀମାନଙ୍କ କଣ୍ଠରେ ନିନାଦିତ ହୋଇ ଅପୂର୍ବ ପରିବେଶ ସୃଷ୍ଟି କରିଥିଲା । ଏଥିପାଇଁ ବୀରକିଶୋରଙ୍କୁ କମ୍ ନିର୍ଯ୍ୟାତନା ଭୋଗ କରିବାକୁ ପଡ଼ିନାହିଁ । ବହୁବାର ତାଙ୍କୁ କାରାବରଣ କରିବାକୁ ପଡ଼ିଥିଲା ।

ଜାତୀୟ ଆନ୍ଦୋଳନର ବିଭିନ୍ନ ଅବସ୍ଥା ଓ ପରିବେଶକୁ ନେଇ ବୀରକିଶୋରଙ୍କ ଜାତୀୟ ସଙ୍ଗୀତଗୁଡ଼ିକ ରଚିତ ଯାହାର ପ୍ରାସଙ୍ଗିକତା ହୁଏତ ଆଜି ଅନେକ ଉପଲବ୍ଧି କରି ପାରିବେ ନାହିଁ, କିନ୍ତୁ ସେ ସବୁର କାବ୍ୟିକ ଆବେଗ ଓ ଦେଶାତ୍ମବୋଧ ଏବେ ବି ପ୍ରାଣକୁ ସ୍ପର୍ଶ କରେ । ଅସହଯୋଗ ଆନ୍ଦୋଳନ କାଳରେ ଦେଶର ଯୁବଶକ୍ତି ଛାତ୍ରମାନଙ୍କୁ ସ୍କୁଲ କଲେଜ ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଝାସ ଦେବା ପାଇଁ ଆହ୍ୱାନ ଦିଆ ଯାଇଥିଲା । ଏହି ଉପଲକ୍ଷରେ ବୀରବାବୁ ଯେଉଁ ଗୀତ ରଚନା କରିଥିଲେ ତାହା ଆଜି ମଧ୍ୟ ଯୁବପ୍ରାଣକୁ ଉଦ୍‌ବୁଦ୍ଧ କରିବ ।

"ରଣ ସମୟରେ ବହି ଘୋଷିବାକୁ
ମୋତେ ଆଉ ତୁମେ କହନା,
ଛାତିର ରକତ ତାତିଉଠେ ମୋର
ବାଜିବାରୁ ଯୁଦ୍ଧ ବାଜଣା ।
ଘନ ଘନ ବାଜିଉଠେ ରଣ ଭେରୀ
ମଦମର ଆଜି ଆମର ବଇରୀ

ମୋ ଦେଶ ଦେବତା  ଛାତି ରକ୍ତ ଲାଗି
  ଲହ ଲହ ତା'ର ରସନା ।

କି ବହି ଘୋଷିବି ପଢ଼ିବି କି ପାଠ
  କି ଅଙ୍କ କଷିବି ହୋଇ ଗବ କାଠ ।

ଯୁବକ ହୋଇ କି ବକ ହୋଇବି ମୁଁ
  ବିବେକକୁ କରି ବଞ୍ଚନା ?

୧୯୩୦ ସାଲରେ ମହାତ୍ମାଗାନ୍ଧୀ ଲବଣ ସତ୍ୟାଗ୍ରହ ଆରମ୍ଭ କଲେ । ତାଙ୍କର ପ୍ରସିଦ୍ଧ ଦାଣ୍ଡୀ-ଯାତ୍ରା ଭାରତ ସ୍ୱାଧୀନତା ସଂଗ୍ରାମର ଏକ ଯୁଗାନ୍ତକାରୀ ଅଧ୍ୟାୟ । ଓଡ଼ିଶାରେ ମଧ୍ୟ ଆଇନ୍ ଅମାନ୍ୟ ଆନ୍ଦୋଳନ ଓ ଲବଣ ସତ୍ୟାଗ୍ରହ ଆରମ୍ଭ ହୋଇଗଲା । ବାଲେଶ୍ୱରର ଇଞ୍ଚୁଡି ଓ କଟକ ଜିଲ୍ଲାର କୁଜଙ୍ଗ ଥିଲା ଓଡ଼ିଶାରେ ଲବଣ ସତ୍ୟାଗ୍ରହର ମୁଖ୍ୟ ରଣକ୍ଷେତ୍ର । ଏହି ଉପଲକ୍ଷରେ ରଚିତ ବୀରକିଶୋରଙ୍କ "ଆସରେ ଆଜି ଆସ । ଆଜି ଆସ । ଦରିଆ ଦଖଲ କରି ଯିବ କିଏ ଆସ" ଗୀତ ଗାଇ ଗାଇ ଶହ ଶହ ନରନାରୀ ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ ଓ ବ୍ରିଟିଶ୍ ପୁଲିସର ଅକଥନୀୟ ଅତ୍ୟାଚାର ସହ୍ୟ କରିଥିଲେ ।

ବିଲାତି ଜିନିଷ ବର୍ଜନ କରି ଦେଶକୁ ସ୍ୱାବଲମ୍ବୀ କରିବା ଥିଲା ମହାତ୍ମାଗାନ୍ଧୀଙ୍କର ଅନ୍ୟତମ ରଣ କୌଶଳ । ଏଥିପାଇଁ ସେ ଘରେ ଘରେ ଅରଟ ଚଳାଇବାର ନିର୍ଦ୍ଦେଶ ଦେଇଥିଲେ । ଖଦଡ଼ ପୋଷାକ ସ୍ୱାଧୀନତା ସଂଗ୍ରାମୀମାନଙ୍କ ପାଇଁ ଜାତୀୟ ପୋଷାକରେ ପରିଣତ ହୋଇଥିଲା । ଦେଶପ୍ରେମୀମାନେ ବିଲାତି ଲୁଗାକୁ ନିଆଁରେ ପୋଡି ଖଦୀ ପିନ୍ଧିବାକୁ ପସନ୍ଦ କରୁଥିଲେ । ବୀରବାବୁଙ୍କର ଦେଶାତ୍ମବୋଧ ସଂଗୀତ ଏ ଦିଗରେ ସେମାନଙ୍କୁ ଉତ୍ସାହିତ କରୁଥିଲା । ଶହ ଶହ ଦେଶପ୍ରେମୀ ଯୁବକଙ୍କ କଣ୍ଠରେ ପ୍ରତିଧ୍ୱନିତ ହେଉଥିଲା—

"ଦିନରାତି ମୋର ସେହି ଚିନ୍ତା,
  ବନ୍ଧୁ ସେହି ଚିନ୍ତା ......

ଏ ସରକାର ଶବ ଦାହ ହେବ କେବେ
  ଦେଖିବି ମୁଁ ତାର ଶେଷ ଚିତା,
  ବନ୍ଧୁ ସେହି ଚିନ୍ତା ।

× × × ×

ମାରିବ ସେ କେତେ ମାରୁ ବଳେ
ବାହାରିବୁ ଆମେ ଦଳେ ଦଳେ

ଜୀବନକୁ ଆମେ ପାଣି ଛଡ଼ାଇଛୁ
  ନ ଛାଡିବୁ କେବେ ଆମ ପନ୍ଥା ,
  ବନ୍ଧୁ ସେହି ଚିନ୍ତା ।

କଚେରୀ କରିବୁ ଛତା ତଳେ
ସଭା ବସାଇବୁ ଗଛ ମୂଳେ,

ସତ୍ୟାଗ୍ରହ ନୀତି ଦାଣ୍ଡେ ପ୍ରଚାରିବୁ
  ଭାଙ୍ଗିବୁ ବେପାରୀ ଲୁହା ଯନ୍ତା,
  ବନ୍ଧୁ ସେହି ଚିନ୍ତା ।

ଅସହଯୋଗ ଆନ୍ଦୋଳନ କାଳରେ ଛୋଟ ଛୋଟ ପିଲମାନେ ବି ସତ୍ୟାଗ୍ରହୀ ତାଲିକାଭୁକ୍ତ ହେଉଥିଲେ । ଏମାନଙ୍କୁ 'ବାନରସେନା' କୁହା ଯାଉଥିଲା । ଅଫିମ, ଗଞ୍ଜେଇ ଓ ମଦଦୋକାନ ଆଗରେ ପିକେଟିଂ କରିବାରେ ମୁଖ୍ୟ ଭାଗ ସେମାନେ ନେଉଥିଲେ । ଭୟଭୀତ କରି ସେମାନଙ୍କୁ ଏଥିରୁ ନିବର୍ତ୍ତାଇବାପାଇଁ ବ୍ରିଟିଶ ସରକାର ନିର୍ମମ ବେତମାଡ଼ର ବ୍ୟବସ୍ଥା କରିଥିଲେ । ଏମାନଙ୍କ ଗାଇବା ପାଇଁ ମଧ୍ୟ ବୀରକିଶୋର ଗୀତ ରଚନା କରିଦେଇଥିଲେ । ଦୃଢ଼ ମନବଳ ହେତୁ ବେତ ପ୍ରହାର ବେଳେ ନ କାନ୍ଦି ସେମାନେ ଉଚ୍ଚସ୍ୱରରେ ସେ ଗୀତସବୁ ଗାଉଥିଲେ । ସେ ଗୀତର ଗୋଟିଏ ଦୃଷ୍ଟାନ୍ତ ଏଠାରେ ଦିଆଗଲା—

"ଭାଇ ହେ, ମାର କେତେ ବେତ ମାରିବ
ଦେଶଲାଗି ଆମେ ଜୀବନ ଦେଇଛୁ
  ତୁମେ କି ଆମକୁ ପାରିବ ?

ତୁମେ ଶୁଣିଥିବ କର୍ଣ୍ଣେ କୋରାନ୍,
ଅବା ବେଦ ବାଇବେଲ ପୁରାଣ
ମଦରେ ମୁକତି ଲେଖାଅଛି କାହିଁ
  ବୁଝାଇ ଆମକୁ କହିବ ?

ଆମେ ଡ଼ରୁନାହିଁ କେବେ ମରଣେ
ମନ ରଖିଅଛୁ ବିଭୁ ଚରଣେ,
ତୁମ ଆମ କଥା ତାଙ୍କ ମିଶଲରେ
  ଦିନେ ତ ବିଗ୍ଭରହୋଇବ" ।

ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମକୁ ଜାତୀୟ କବି ବୀରକିଶୋରଙ୍କ ଶ୍ରେଷ୍ଠ ଅବଦାନ ଥିଲା ଏହିସବୁ ଦେଶାତ୍ମ-ବୋଧକ ସଂଗୀତାବଳି । ତାଙ୍କର ପ୍ରାଣସ୍ପର୍ଶୀ ଉନ୍ମାଦନାଭରା ଜାତୀୟ ସଂଗୀତ ସଂଗ୍ରାମର ପ୍ରତି କ୍ଷେତ୍ରରେ, ପ୍ରତି-ସ୍ତରରେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ପ୍ରୋତ୍ସାହିତ କରୁଥିଲା ଓ ଓଡ଼ିଶାର ପ୍ରତି ପ୍ରାନ୍ତରେ ବିପ୍ଳବ ବହ୍ନିକୁ ପ୍ରଜ୍ୱଳିତ କରିବାରେ ସହାୟକ ହୋଇଥିଲା । ଇଂରେଜ ସରକାର ଭାରତରେ ହିନ୍ଦୁ, ମୁସଲମାନ, ଶିଖ ପ୍ରଭୃତି ସାଂପ୍ରଦାୟିକ ଭେଦଭାବ ସୃଷ୍ଟି କରି ଓ ସମାଜରେ ଦରିଦ୍ରମାନଙ୍କର ଦୁର୍ଗତିର ସୁଯୋଗନେଇ ତାଙ୍କର ସାମ୍ରାଜ୍ୟକୁ ଚିରସ୍ଥାୟୀ କରିବାର ମସୁଧା କରିଥିଲେ । ଏସବୁ ସମସ୍ୟାପ୍ରତି ମଧ୍ୟ ବୀରକିଶୋର ସଜାଗ ଥିଲେ । ସବର୍ଣ୍ଣମାନେ ତାଙ୍କୁ ଅଛୁଆଁ କରି ରଖିଥିବାରୁ ହରିଜନମାନେ ଜଗନ୍ନାଥଙ୍କୁ 'କଇଫିୟତ' ମାଗିଥିବା ଗୀତଟି ଏଡ଼େ ହୃଦୟସ୍ପର୍ଶୀ ହୋଇଛି ଯେ ଏଠାରେ ତାର ଉଦ୍ଧୃତି ଦେବାର ଲୋଭ ସମ୍ବରଣ କରି ହେଉନାହିଁ—

"ଚାଲ ଦିନେ ଭାଇ ବିଚାରି ଉଚ୍ଚାରି
  ସଫା, ପଚାରି ତାହାକୁ ଆସିବା....

ଜଗନ୍ନାଥ ନାମ ମହକେ ଜଗତେ
ଜଗତର ନାଥ ବୋଲନ୍ତି ସମସ୍ତେ
ଆମ ଘର କି ଏ ଜଗତୁ ବାହାର
  ଆମେ, ଅନାଥ କାହିଁକି ରହିବା ?

× × × ×

ଆମକୁ ଛୁଇଁଲେ ହୁଅନ୍ତି ସେ ଛୁଆଁ
କାସନ୍ଦ ଆମକୁ ଜାଗା ପାଣି ନିଆଁ
ନିଜେ ପରାଧୀନ ରହନ୍ତି ଆମକୁ
କଷି, ଦୋହରି ଫାଶରେ ବାନ୍ଧିବା ।

× × × ×

କହୁଛନ୍ତି ଯେବେ ଗାନ୍ଧି ତାଙ୍କ ଲୋକ
ଆସିଛି ଟାଳିବା ସାରା ପୃଥ୍ୱୀ ଦୁଃଖ
କଥା ଯେବେ ସତ, ନେଇ ଗାନ୍ଧୀ ମତ
ସ୍ୱଇ, ମୁକତି ମଣ୍ଡପେ ବସିବା" ।

ଏ ପ୍ରକାର ଶତ ଶତ ଗୀତ ବୀରକିଶୋର ରଚନା କରିଥିଲେ । ସେସବୁ 'ମୋହନବଂଶୀ', 'ରଣଭେରୀ', 'ଅରି ଫେରିନାହିଁ ଯୁଦ୍ଧ ସରିନାହିଁ', 'ବିଦ୍ରୋହୀ ବୀଣା', 'ରଣ ଦୁନ୍ଦୁଭି' ପ୍ରଭୃତି ପୁସ୍ତକରେ ପ୍ରକାଶିତ ହୋଇଛି । ୧୯୪୨ ସାଲ 'ଭାରତ ଛାଡ଼' ଆନ୍ଦୋଳନ କାଳରେ ମଧ୍ୟ କବିଙ୍କର ଲେଖନୀ ନୀରବ ହୋଇ ନ ଥିଲା । ଦେଶ ସ୍ୱାଧୀନ ହେବାପରେ ବୀରକିଶୋର ଶିଶୁସାହିତ୍ୟ ରଚନା ପ୍ରତି ମନ ବଳାଇଥିଲେ ଓ ଏ ଦିଗରେ ମଧ୍ୟ ସେ ଯଶସ୍ୱୀ ହୋଇଅଛନ୍ତି ।

କଟକ ଲୋକାଲ ବୋର୍ଡର ଚେୟାରମେନ ଥାଇ ବୀରକିଶୋର ଅନେକ ଜନହିତକର କାର୍ଯ୍ୟ କରିଥିଲେ । କିଛିଦିନ ପାଇଁ ସେ ଓଡ଼ିଶା ବିଧାନ ସଭାର ସଦସ୍ୟ ଥିଲେ ଓ ତାଙ୍କୁ ସମ୍ମାନ ଦେଖାଇବା ପାଇଁ କଟକର ଏକ ସରକାରୀ କଲେଜକୁ ତାଙ୍କ ନାମରେ ନାମିତ କରାଯାଇଛି । କିନ୍ତୁ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଶ୍ରେଷ୍ଠ ଚାରଣ କବି ଭାବରେହିଁ ଓଡ଼ିଶାବାସୀ ତାଙ୍କୁ ଚିରଦିନ ମନେ ରଖିବେ ।

---

ଷ୍ଟେଟ ଏଡ଼ିଟର, ଗେଜେଟିୟରସ୍, ଓଡ଼ିଶା
ଭୁବନେଶ୍ୱର



# ୧୯୮୨ ମସିହାରେ ପୃଥିବୀ କଣ ଧ୍ୱଂସ ପାଇବ ?

ଏହା ଜ୍ୟୋତିଷ ଗଣନା ନୁହେଁ କିମ୍ବା ଭବିଷ୍ୟତ ବାଣୀ ନୁହେଁ । ବର୍ତ୍ତମାନର ବାସ୍ତବ ଓ ବୈଜ୍ଞାନିକ ଚିନ୍ତାଧାରା ଉପରେ ଆଧାରିତ ଏକ ନିର୍ମମ ପ୍ରଶ୍ନ । ବିଜ୍ଞାନ, ପ୍ରଜ୍ଞାନର ଦ୍ୱନ୍ଦ୍ୱ ନୁହେଁ, ସମନ୍ୱୟ ହିଁ ଏହାର ଲକ୍ଷ୍ୟ ।

ଅଧ୍ୟାପକ
ଡ଼କ୍ଟର ଗୋକୁଳାନନ୍ଦ ମହାପାତ୍ର ।

ଇଂଲଣ୍ଡର ଦୁଇଜଣ ଜ୍ୟୋତିଃପଦାର୍ଥ ବିଦ୍ୟାବିତ୍ ଡ଼କ୍ଟର ଜନ୍ ଗ୍ରିବିନ୍ ଓ ଡ଼କ୍ଟର ଷ୍ଟିଫେନ ପ୍ଲେଜିମାନ ଏହି କିଛିଦିନ ତଳେ ଖଣ୍ଡିଏ ବହି ଲେଖି ଭବିଷ୍ୟତ ବାଣୀ କରିଛନ୍ତି ଯେ ୧୯୮୨ ମସିହାରେ ବୃହସ୍ପତି ପ୍ରଭାବ ଯୋଗୁ ଆମ ପୃଥିବୀ ଧ୍ୱଂସ ପାଇଯିବ । ସେମାନଙ୍କ ଲିଖିତ ସେହି ବହିଟିର ନାମ ହେଲା 'ବୃହସ୍ପତି ପ୍ରଭାବ' ( Jupiter Effect ) । ସେମାନେ କହନ୍ତି ଏହି ବୃହସ୍ପତି ପ୍ରଭାବ ଯୋଗୁ ପୃଥିବୀରେ ଲକ୍ଷ ଲକ୍ଷ ଲୋକଙ୍କ ପ୍ରାଣହାନୀ ଘଟିବ ଓ କୋଟି କୋଟି ଟଙ୍କାର ଧନ ସମ୍ପତ୍ତି, ଘରଦ୍ୱାର, ସହର ବଜାର ଧ୍ୱଂସ ପାଇଯିବ ।

ବୃହସ୍ପତି ପ୍ରଭାବ କ'ଣ ? ବୈଜ୍ଞାନିକମାନେ ଗଣନା କରି ଦେଖିଛନ୍ତି ଯେ, ୧୯୮୨ ମସିହାରେ ଆମ ସୌର ଜଗତର ନଅଗୋଟି ଗ୍ରହଯାକ ସୂର୍ଯ୍ୟଙ୍କର ଗୋଟିଏ ପାର୍ଶ୍ୱରେ ରହିଯାଉଥିବାରୁ ସୌରଜଗତର ଭାରସାମ୍ୟ ରହିପାରିବନାହିଁ । ସବୁ ଗ୍ରହଙ୍କର ମିଳିତ ଆକର୍ଷଣ ଗୋଟିଏ ପାର୍ଶ୍ୱରୁ ହେବା ଫଳରେ ସୌର ପୃଷ୍ଠରେ ଦେଖାଯିବ ନାନା ପ୍ରକାର ବିତ୍‌ପାତ, ଯାର ପ୍ରଭାବ ପୃଥିବୀ ଉପରେ ପଡ଼ି ପୃଥିବୀ ଧ୍ୱଂସ କରିଦେବ । ସୂର୍ଯ୍ୟ ଉପରେ ପଡୁଥିବା ଏହି ପ୍ରଭାବକୁ ବୃହସ୍ପତି ପ୍ରଭାବ କୁହାଯାଏ ।

ସାଧାରଣ ଦିନରେ ସୂର୍ଯ୍ୟ ଚାରିପାଖରେ ନଅଗୋଟି ଗ୍ରହ ସଦା ସର୍ବଦା ଖେଳାଇହୋଇ ରହିଥାଆନ୍ତି । ତେଣୁ କିଛି ଅସୁବିଧା ହୁଏ ନାହିଁ । ୧୯୮୨ ମସିହାରେ ସବୁ ଗ୍ରହଯାକ ସୂର୍ଯ୍ୟଙ୍କର ଗୋଟିଏ ପାର୍ଶ୍ୱରେ ରହି-ଯାଉଥିବାରୁ ଏହା ସମସ୍ତଙ୍କର ଚିନ୍ତାର ବିଷୟ ହୋଇଛି । ଏହି ବୃହସ୍ପତି ପ୍ରଭାବ ଫଳରେ ପୃଥିବୀର ଆବର୍ତ୍ତନ ବେଗ କମିଯାଇ ପାରେ, ଭୂମିପାତ, ଭୂମିକମ୍ପ ଆଦି ଭୀଷଣ ଆକାର ଧାରଣ କରି ଦେଖା ଦେଇପାରେ । ସେମାନଙ୍କ ଗଣନା ଅନୁସାରେ ପୃଥିବୀର ଲସ ଏଞ୍ଜେଲେସ୍ ସମେତ ବହୁ ବଡ଼ ବଡ଼ ସହର ପୃଥିବୀ ପୃଷ୍ଠରୁ ନିଶ୍ଚିହ୍ନ ହୋଇଯିବ । ଏହି ବହିଟିକୁ ପଢ଼ି କାଲି-ଫର୍ଣ୍ଣିଆ ରାଜ୍ୟର ଅଧିବାସୀମାନେ ବଡ଼ ଆତଙ୍କର ସହିତ ଦିନ କାଟୁଛନ୍ତି । ୧୯୮୨ ମସିହା ଯେତିକି ପାଖେଇ ପାଖେଇ ଆସୁଛି, ସେମାନଙ୍କର ଆତଙ୍କ ସେତେ ବଢ଼ି ବଢ଼ି ଚାଲିଛି ।

ଗ୍ରିବିନ୍ ଓ ପ୍ଲେଜିମାନଙ୍କ ଏହି ମତକୁ ବିରୋଧ କରୁଛନ୍ତି ଆମେରିକାର ଅନ୍ୟାନ୍ୟ ଜ୍ୟୋତିର୍ବିଦ୍‌ମାନେ । ସେମାନେ କହନ୍ତି, ଏହିଭଳି ଅବସ୍ଥା ପ୍ରତି ୧୭୯ ବର୍ଷରେ ଥରେ ଲେଖାଏଁ ସୌରଜଗତରେ ଦେଖାଦିଏ । ସେ ସବୁ ପରିସ୍ଥିତିରେ ପୃଥିବୀ ଧ୍ୱଂସ ପାଇନି ତେଣୁ ଏଥର ଧ୍ୱଂସ ପାଇବନି ।

ବୃହସ୍ପତି ପ୍ରଭାବ ଯୋଗୁ ପୃଥିବୀ ଧ୍ୱଂସ ପାଉ ବା ନ ପାଉ, ବର୍ତ୍ତମାନ ସାରା ପୃଥିବୀରେ ବୃହତ୍ ଶକ୍ତି ମାନଙ୍କର ଯେଉଁ ସାମରିକ ପ୍ରସ୍ତୁତି ଚାଲିଛି ତାହାହିଁ ପୃଥିବୀର ଧ୍ୱଂସର କାରଣ ହେବ । ଏହା ନିଶ୍ଚିତ ଭାବରେ କୁହାଯାଇପାରେ ।

ଆମେ ସମସ୍ତେ ଜାଣିଛୁ, ଆମ ସୌର ଜଗତର ନବଗ୍ରହ ବ୍ୟତୀତ ମଙ୍ଗଳ ଓ ବୃହସ୍ପତି କକ୍ଷ ମଧ୍ୟରେ ଏକ ଗ୍ରହାଣୁମଣ୍ଡଳ ଅଛି । ଏହି ଗ୍ରହାଣୁ ମଣ୍ଡଳରେ ୧,୫୦୦ ସରିକି ଛୋଟ ଛୋଟ ଗ୍ରହାଣୁ ସୂର୍ଯ୍ୟଙ୍କୁ ପରିକ୍ରମା କରୁଛନ୍ତି । ସିରସ୍, ଇକରସ୍, ଭେଷ୍ଟା ଆଦି ସେଇସବୁ ଗ୍ରହାଣୁ ଭିତରୁ ଗୋଟିଏ ଗୋଟିଏ । ଆମ ସୌର ଜଗତକୁ ଏହି ଗ୍ରହାଣୁମାନେ କେଉଁଠୁ ଆସିଲେ ସେ ସମ୍ପର୍କରେ ଏକ ତଥ୍ୟ ଏବେ ବେଶ୍ ଲୋକପ୍ରିୟ ହୋଇଛି । ସେହି ତଥ୍ୟ ଅନୁସାରେ ବର୍ତ୍ତମାନ ଯେଉଁ କକ୍ଷରେ ଏହି ଗ୍ରହାଣୁମାନେ ଘୂରି ବୁଲୁଛନ୍ତି, ସେଠି ବହୁବର୍ଷ ତଳେ ଗୋଟିଏ ବିରାଟ ଗ୍ରହଥିଲା । କୌଣସି କାରଣ ବଶତଃ ସେହି ଗ୍ରହଟି ଭାଙ୍ଗି ଚୁରମାର ହୋଇଯାଇ ଗ୍ରହାଣୁଖଣ୍ଡରେ ପରିଣତ ହୋଇଗଲେ । ବର୍ତ୍ତମାନ ପ୍ରଶ୍ନ ହେଲା ଅନ୍ୟ ନଅଗୋଟି ଗ୍ରହ ନ ଭାଙ୍ଗି ଘୂରି ବୁଲୁଥିଲା ବେଳେ ଏହି ଗ୍ରହଟି ଭାଙ୍ଗି ଚୁରମାର ହୋଇଗଲା କାହିଁକି ? ଦଳେ ବୈଜ୍ଞାନିକ କହୁଛନ୍ତି, ସେହି ଯେଉଁ ଗ୍ରହଟି ଥିଲା ତାହା ଠିକ୍ ପୃଥିବୀ ଭଳି । ପୃଥିବୀ ଭଳି ପୃଥିବୀର ବହୁ ଆଗରୁ ସେଠାରେ ଏକ ସୁସଭ୍ୟ ମଣିଷ ସମାଜ ଗଢ଼ି ଉଠିଥିଲା । ସେମାନେ ବିଜ୍ଞାନରେ ଖୁବ୍ ଉନ୍ନତ ଥିଲେ । ବହୁ ଧ୍ୱଂସ କାମୀ ମାରଣାସ୍ତ୍ର ସେମାନେ ବିଜ୍ଞାନ ବଳରେ ଉଦ୍‌ଭାବନ କରିଥିଲେ । ସେମାନଙ୍କ ଭିତରେ ଅବସ୍ଥା ଚକ୍ରରେ ମାନ-ମନାନ୍ତର ଯୋଗୁ ଯୁଦ୍ଧ ଆରମ୍ଭ ହେଲା ଓ ଏହି ଯୁଦ୍ଧ କ୍ରମେ ବଢ଼ି ବଢ଼ି ସାରା ଉପଗ୍ରହକୁ ବ୍ୟାପିଗଲା । ଏହି ଯୁଦ୍ଧରେ ପରମାଣୁ ମାରଣାସ୍ତ୍ର ଭଳି ଅତି ବିପଦ୍‌ଜନକ ଭୟାନକ ମାରଣାସ୍ତ୍ର-ମାନ ବ୍ୟାପକ ଭାବରେ ବ୍ୟବହୃତ ହେବାରୁ ଗ୍ରହର

ସର୍ବ୍ୟ ଜନସମାଜ ଧ୍ୱଂସ ପାଇଗଲେ ଓ ସେଥିସହିତ ଗ୍ରହଟି ଭାଙ୍ଗି ଖଣ୍ଡ ବିଖଣ୍ଡିତ ହୋଇ ଗ୍ରହାଣୁ ଖଣ୍ଡରେ ପରିଣତ ହୋଇଗଲା । ସେହି ଗ୍ରହର ଅବସ୍ଥା ଲକ୍ଷ ଲକ୍ଷ ବର୍ଷତଳେ ଯାହା ଥିଲା, ବର୍ତ୍ତମାନ ପୃଥିବୀର ଅବସ୍ଥା ଠିକ୍ ସେଇଆ ହେବାକୁ ଯାଉଛି । ରୁଷ, ଆମେରିକା ଆଦି ବୃହତ୍ ଶକ୍ତିମାନେ ପରସ୍ପରର ମୁକାବିଲା ପାଇଁ ସାମରିକ ଶକ୍ତି ବଢ଼ାଇବାରେ ଲାଗିଛନ୍ତି । ପରମାଣୁ ମାରଣାସ୍ତ୍ର ବ୍ୟବହାର କରିବାର ଧମକ ମଧ୍ୟ ଦେଲେଣି ଏହି ଧମକ ଯେ ଅତି ଅବିବେକି ଧମକ , ସେମାନେ ଭୁଲି ଯାଉଛନ୍ତି । ପରମାଣୁ ଯୁଦ୍ଧ ଯଦି ଆରମ୍ଭ ହୁଏ, କେହି ଜିଣିବା ହାରିବା ପ୍ରଶ୍ନ ଉଠିବ ନାହିଁ । ସାରା ପୃଥିବୀ ଧ୍ୱଂସ ପାଇଯାଇ ଗ୍ରହାଣୁଖଣ୍ଡ ଭଳି ମହାକାଶରେ ଘୁରି ବୁଲିବ ପୃଥିବୀ ସଭ୍ୟତାର କରୁଣ କାହାଣୀ ବହନ କରି ।

ପୃଥିବୀର ଦୁଇଟି ବୃହତ୍ ରାଷ୍ଟ୍ର ଆମେରିକା ଓ ରୁଷିଆ ବର୍ତ୍ତମାନ ପରମାଣୁ ମାରଣାସ୍ତ୍ରରେ ଏମିତି ସଜ୍ଜିତ ହୋଇ ରହିଛନ୍ତି ଯେ ଯଦି ତୃତୀୟ ମହାସମର ଆରମ୍ଭ ହୁଏ, ତେବେ ତାହା ଶେଷ ହେବାକୁ ଅଧ-ଘଣ୍ଟାଏ ବି ସମୟ ଲାଗିବ ନାହିଁ । ପ୍ରଥମ ମହାସମର ଲାଗିଥିଲା ଚାରିବର୍ଷ, ଦ୍ୱିତୀୟ ମହାସମର ଛ' ବର୍ଷ, କିନ୍ତୁ ତୃତୀୟ ମହାସମର ଲାଗିବ ମୋଟେ ଅଧଘଣ୍ଟାଏ । ଆମେରିକା, ରୁଷିଆ ଓ ତା'ର ବନ୍ଧୁ ରାଷ୍ଟ୍ରମାନଙ୍କୁ ଆକ୍ରମଣ କରିବ ତ ରୁଷିଆ ଆମେରିକା ତା' ବନ୍ଧୁରାଷ୍ଟ୍ରମାନଙ୍କୁ ଆକ୍ରମଣ କରିବ । ଏହି ଦୁଇଟି ବୃହତ୍ ଶକ୍ତିର ପରମାଣୁ ମାରଣାସ୍ତ୍ର ସଜ୍ଜିତ ହୋଇ ରହିଛି । କ୍ଷେପଣାସ୍ତ୍ରମାନେ ସଦାସର୍ବଦା ପ୍ରସ୍ତୁତ ହୋଇ ରହିଛନ୍ତି ଏହି ମାରଣାସ୍ତ୍ର ନେଇ । ଯୁଦ୍ଧ ଆରମ୍ଭ ହେଲେ ତତ୍କ୍ଷଣାତ୍ କ୍ଷେପଣାସ୍ତ୍ରଗୁଡିକ ସାରା ପୃଥିବୀରେ ବାଣ ଫୁଟିଲା ଭଳି ଖେଳି ହୋଇଯିବ । ପୃଥିବୀର ସବୁ ଛୋଟ ବଡ଼ ସହର ପରମାଣୁ ବୋମା, ଉଦ୍‌ଜାନବୋମା, ମହାପରମାଣୁବୋମା ଦ୍ୱାରା ଆଘାତ ପାଇ ନିମିଷେକ ମଧ୍ୟରେ ଧ୍ୱଂସ ପାଇଯିବେ ।

ବର୍ତ୍ତମାନ ଯାହା ଅନୁମାନ କରାଯାଉଛି, ଆମେରିକା ପାଖରେ ଶତାଧିକ ଶହେ ମେଗାଟନ ବୋମା ଅଛି । ରୁଷିଆ ପାଖରେ ମଧ୍ୟ ସେହି ସଂଖ୍ୟକ ଶହେ ମେଗାଟନ ବୋମା ଅଛି । ଆମେରିକା ଓ ରୁଷିଆ ପ୍ରତ୍ୟେକଙ୍କ ପାଖରେ ଅନ୍ୟୂନ ପାଞ୍ଚ ହଜାର ଉଦ୍‌ଜାନ ବୋମା ଓ ଦୁଇ ହଜାର ପରମାଣୁ ବୋମା ରହିଛି । ଆମେ ବର୍ତ୍ତମାନ ଦେଖିବା ଏତିକି ବୋମା ପୃଥିବୀକୁ ଧ୍ୱଂସ କରିବାକୁ ଯଥେଷ୍ଟ କି ନୁହେଁ ।

ଗୋଟିଏ ଶହେ ମେଗାଟନ ବୋମା ଧ୍ୱଂସକାରୀ ଶକ୍ତି ୫,୦୦୦ ପରମାଣୁ ବୋମାର ଧ୍ୱଂସକାରୀ ଶକ୍ତି ସହିତ ସମାନ । ନିଉୟର୍କ, ଲଣ୍ଡନ, ମସ୍କୋ ଆଦି ଗୋଟିଏ ଗୋଟିଏ ନଗରୀକୁ ପୃଥିବୀରୁ ନିଶ୍ଚିହ୍ନ କରିବାକୁ ଯଥେଷ୍ଟ । ହିରୋସୀମା ନେଗାସାକୀ ଉପରେ ଯେଉଁ ପରମାଣୁ ବୋମା ପଡିଥିଲା ତାହା ହେଲା ୨୦ କିଲୋଟନ ବୋମା । ସେହି ବୋମା ପଡିବା ଫଳରେ ହିରୋ-ସିମାର ୭୫,୦୦୦ ଘର ଭିତରୁ ୫୫,୦୦୦ ଘର ପୁରାପୁରି ଧ୍ୱଂସ ପାଇ ଯାଇଥିଲା । ହିରୋସିମାର ସାଢ଼େ ତିନି ଲକ୍ଷ ଲୋକଙ୍କ ଭିତରୁ ଦୁଇ ଲକ୍ଷ ଲୋକ ମରି ନିପାତ ହୋଇ ଯାଇଥିଲେ । ନେଗାସାକିର ଏକ ବର୍ଗମାଇଲ ପରିମିତ ସ୍ଥାନ ନିଶ୍ଚିହ୍ନ ହୋଇ ଯାଇଥିଲା । ବର୍ତ୍ତମାନ ଯଦି ଶହେ ମେଗାଟନ ବୋମା କୌଣସି ଦେଶ ଉପରେ ପଡ଼େ, ତେବେ ୫,୦୦୦ ବର୍ଗମାଇଲ ପରିମିତ ସ୍ଥାନ ନିଶ୍ଚିହ୍ନ ହୋଇଯିବ । ୫,୦୦୦ × ୨ ଲକ୍ଷ =୧୦,୦୦୦ ଲକ୍ଷ ଲୋକ ମରିଯିବେ ଓ ୫,୦୦୦ × ୫୫,୦୦୦=୨୭,୫୦,୦୦,୦୦୦ ଘରଦ୍ୱାର ଧ୍ୱଂସ ପାଇଯିବ ! ପୃଥିବୀର ଲୋକ ସଂଖ୍ୟା ଯଦି ୪୦୦ କୋଟି ପାଖାପାଖି ଧରାଯାଏ ଓ ପରିବାର ସଂଖ୍ୟା ୭୫ କୋଟି ବୋଲି ଧରାଯାଏ ତେବେ ସାରା ପୃଥିବୀର ସବୁ ଘର ଓ ଲୋକ ସଂଖ୍ୟାକୁ ଧ୍ୱଂସ କରିବା ପାଇଁ ମାତ୍ର ତିନୋଟି ଶହେ ମେଗାଟନ ବୋମା ଯଥେଷ୍ଟ । ପୃଥିବୀର ଲୋକମାନେ ଖେଳାଇ ହୋଇ ରହିଥିବାରୁ ତିନୋଟି ଶହେ ମେଗାଟନ ବୋମା ସ୍ଥାନରେ ଦୁଇଶହ ଶହେ ମେଗାଟନ ବୋମା କ'ଣ ପୃଥିବୀର ସାରା ଲୋକମାନଙ୍କୁ ଧ୍ୱଂସକରି ପୃଥିବୀକୁ ଭାଙ୍ଗି ଚୁରମାର କରି ଦେବାକୁ ଯଥେଷ୍ଟ ହେବ ତ ? ସାରା ପୃଥିବୀରେ ବର୍ତ୍ତମାନ ଦୁଇଟି ବୃହତ୍ ଶକ୍ତି ହାତରେ ଅନ୍ୟୂନ ଦୁଇଶହ ଶହେ ମେଗାଟନ ବୋମା ୧୦,୦୦୦ ସରିକି ୨୦ ମେଗାଟନଠାରୁ ୬୦ ମେଗାଟନ ପର୍ଯ୍ୟନ୍ତ ଉଦ୍‌ଜାନ ବୋମା ଓ ୨୦,୦୦୦ ଏକ ମେଗାଟନଠାରୁ ଦି ମେଗାଟନ ପର୍ଯ୍ୟନ୍ତ ପରମାଣୁ ବୋମା ରହିଛି । ପୃଥିବୀର ଲୋକ ସଂଖ୍ୟା ଯେତେ ଖେଳାଇ ହୋଇ ରହିଲେ ମଧ୍ୟ ଉପରୋକ୍ତ ମାରଣାସ୍ତ୍ରର ଏକ ଚତୁର୍ଥାଂଶ ଯଦି ବ୍ୟବହୃତ ହୁଏ, ତେବେ ପୃଥିବୀର ସବୁ ଜନସମାଜ ଧ୍ୱଂସ ହେବା ସଙ୍ଗେ ସଙ୍ଗେ ପୃଥିବୀ ଖଣ୍ଡ ବିଖଣ୍ଡ ହୋଇ ଆଉ ଏକ ଗ୍ରହାଣୁ ମଣ୍ଡଳରେ ପରିଣତ ହେବ ।

ପୃଥିବୀର ଶ୍ରେଷ୍ଠ ବୈଜ୍ଞାନିକ ଆଲବାର୍ଟ ଆଇନଷ୍ଟାଇନ୍ ବଞ୍ଚିଥିଲା ବେଳେ ତାଙ୍କ ମରିବାର ଠିକ୍ କିଛି ଦିନ ପୂର୍ବରୁ ଦଳେ ସାମ୍ବାଦିକ ତାଙ୍କୁ ଥରେ ଘେରିଯାଇ ପଚାରିଲେ, "ଆପଣ ତ ପ୍ରଥମ ମହାସମରର ଭୟାଭୟତା ଦେଖିଛନ୍ତି, ଦ୍ୱିତୀୟ ମହାସମରର ମାରାତ୍ମକତା ତ ଆପଣଙ୍କୁ ଜଣା, କହନ୍ତୁ ଏହି ପୃଥିବୀରେ ଯଦି ତୃତୀୟ ମହାସମର ହୁଏ, ତେବେ ଏହାର ଭୀଷଣତା କେମିତି ହେବ ? ଆଇନଷ୍ଟାଇନ ସାମ୍ବାଦିକମାନଙ୍କ ପ୍ରଶ୍ନରେ ହସିଲେ, କହିଲେ, ଦେଖନ୍ତୁ ତୃତୀୟ ମହାସମର କେମିତି ଭୟାଭୟ ହେବ କହି ପାରିବିନି । ତେବେ ଚତୁର୍ଥ ମହାସମର ଯଦି ହୁଏ, ତେବେ ତାହାର ଭୟାଭୟତା କେମିତି ହେବ କହି ଦେଇ ପାରିବି । ସାମ୍ବାଦିକମାନେ ଆଶ୍ଚର୍ଯ୍ୟ ହେଲେ । ଉତ୍ସୁକ ହୋଇ ପଚାରିଲେ ତେବେ କହନ୍ତୁ । ଆଇନଷ୍ଟାଇନ କହିଲେ,

"ଦେଖନ୍ତୁ, ଚତୁର୍ଥ ମହାସମରରେ ଯେଉଁ ଯୁଦ୍ଧ ହେବ, ତାହା ଖାଲି ଠେଙ୍ଗାବାଡ଼ିରେ ହେବ । ଅତିବେଶୀ ହେଲେ ପଥର ଫୋପଡ଼ାଫୋପଡ଼ିରେ ଏହି ଯୁଦ୍ଧ ଶେଷ ହେବ । ସାମ୍ବାଦିକମାନେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ଏହା କେମିତି ହେବ, ସେତେବେଳକୁ ପୃଥିବୀତ ଆହୁରି ଉନ୍ନତ ହୋଇ ଯାଇଥିବ ; ପରମାଣୁ ବୋମା, ଉଦ୍‌ଜାନ ବୋମା ଠାରୁ ଆହୁରି କେତେ ଉନ୍ନତ ଓ ଶକ୍ତିଶାଳୀ ବୋମା ସେତେବେଳକୁ ବାହାରି ସାରିଥିବ । ଯୁଦ୍ଧ କରିବା ପାଇଁ ନୂଆ ନୂଆ ସାଜ ସରଞ୍ଜାମ ଉଦ୍‌ଭାବିତ ହୋଇଥିବ, ସେ ସବୁକୁ ଯୁଦ୍ଧରେ ବ୍ୟବହାର ନକରି ଠେଙ୍ଗାବାଡ଼ିରେ କାହିଁକି ଯୁଦ୍ଧ ହେବ ? ଆଇନଷ୍ଟାନ୍ ସେମାନଙ୍କ ପ୍ରଶ୍ନରେ ପୁଣି ହସିଲେ, କହିଲେ "ଆପଣ ବୁଝି ପାରୁନାହାନ୍ତି । ତୃତୀୟ ମହାସମର ହେବ ମାନବ ଇତିହାସରେ ସବୁଠାରୁ ଭୟାଭୟ ଯୁଦ୍ଧ । ସେଥିରେ ପରମାଣୁ ବୋମା, ଉଦ୍‌ଜାନ ବୋମା ଆଦି ବ୍ୟବହୃତ ହୋଇ ସାରା ସଭ୍ୟଜଗତ ନିଶ୍ଚିହ୍ନ ହୋଇଯିବ । ଆମେରିକା, ଇଂଲଣ୍ଡ, ରୁଷିଆ, ଇଉରୋପ ଆଦି ସଭ୍ୟ ଦେଶର ଜଣେ ବି ଲୋକ ବଞ୍ଚି ରହିବେ ନାହିଁ । ପୃଥିବୀରେ ଯେଉଁ ଆଉ କେତେକ ଲୋକ ବଞ୍ଚି ରହିଥିବେ, ସେମାନେ ହେଉଛନ୍ତି ଆଫ୍ରିକା ଘନ ଜଙ୍ଗଲରେ ଥିବା ଥୋଡ଼େ ଆଦିମ ଅଧିବାସୀ, ନଚେତ୍ ଦକ୍ଷିଣ ଆମେରିକାର ଘନ ଜଙ୍ଗଲରେ ବାସ କରୁଥିବା ସଭ୍ୟତାର ଆଲୋକ ମୋଟେ ଦେଖି ନଥିବା କେତୋଟି ଆଦିମ ଅଧିବାସୀ । ସେମାନେ ସେହି ଘନ ଜଙ୍ଗଲରୁ ବାହାରି ଏହି ଜନ ମାନବ ଶୂନ୍ୟ ପୃଥିବୀରେ ବିଚରଣ କରିବେ । ସେମାନେ ତ ମୂଳରୁ ଅସଭ୍ୟ, ସେମାନେ ଯେତେବେଳେ ସେମାନଙ୍କ ଭିତରେ ଯୁଦ୍ଧ କରିବେ ଠେଙ୍ଗାବାଡ଼ି, ପଥରଖଣ୍ଡ ସାହାଯ୍ୟରେ ଯୁଦ୍ଧ କରିବେ ନାହିଁତ ଆଉ କେଉଁଥିରେ ଯୁଦ୍ଧ କରିବେ ?

ବାସ୍ତବିକ ଆଇନଷ୍ଟାଇନ୍ ଯାହା କହିଥିଲେ, ତାହା ଅକ୍ଷରେ ଅକ୍ଷରେ ସତ । ଆଇନ ଷ୍ଟାଇନ୍ ଜୀବିତ ଥିବାବେଳେ ଶହେ ମେଗାଟନ ବୋମା ବାହାରି ନଥିଲା । ବାହାରି ଥିଲେ ହୁଏତ ସେ ଚତୁର୍ଥ ମହାସମରର ରୂପରେଖ ଆହୁରି ବିଚିତ୍ର କରି ପ୍ରକାଶ କରିଥାନ୍ତେ । ଆଇନଷ୍ଟାଇନଙ୍କ ସେହି ଉକ୍ତିରୁ ପୃଥିବୀର ଜନ ସାଧାରଣ ବହୁ କଥା ଶିକ୍ଷା କରିବା ଉଚିତ୍ । ଯୁଦ୍ଧର ରୂପରେଖ ଦିନକୁ ଦିନ ଯେଉଁ ଭୟାଭୟ ହେଉଛି, ଲୋକେ ଯୁଦ୍ଧକୁ ପୂରାପୂରି ପାଶୋରି ଦେବା ଉଚିତ । ଅତୀତ ଯୁଗରେ ଯୁଦ୍ଧ ଥିଲା ବଳବୀର୍ଯ୍ୟ ଐଶ୍ୱର୍ଯ୍ୟର ପ୍ରତୀକ । ଧନୁ, ଶର, ଖଣ୍ଡା, ତରୱାଲରେ ଲୋକେ ଯୁଦ୍ଧ କରି ନିଜର ବଳବୀର୍ଯ୍ୟ ଦେଖାଉଥିଲେ । ଯେଉଁମାନେ ଯୁଦ୍ଧ କରୁଥିଲେ ସେହିମାନେ ଖଣ୍ଡିଆ ଖାବରା ହେଉଥିଲେ ବା ମରୁଥିଲେ । କିନ୍ତୁ ଆଜିକାଲି ଯେଉଁ ଯୁଦ୍ଧ ହେଉଛି ସେଥିରେ ଯୁଦ୍ଧ କରୁଥିବା ଲୋକଙ୍କ ସହିତ ନିରୀହ ଦେଶବାସୀ ମଧ୍ୟ ମୃତ୍ୟୁ ବରଣ କରୁଛନ୍ତି । ବର୍ତ୍ତମାନ ଯୁଦ୍ଧର ଅବସ୍ଥା ଏଇଆ । ଭବିଷ୍ୟତରେ ଏହା ଆହୁରି ଭୟାନକ ହେବ । ଭବିଷ୍ୟତ ଯୁଦ୍ଧ ଫଳରେ ପୃଥିବୀ ଧ୍ୱଂସ ପାଇବ, ବିଜେତା କି ପରାଜିତ କେହି ରହିବେ ନାହିଁ । ତେବେ ସେ ଯୁଦ୍ଧରେ ଲାଭ କଅଣ ? ଅତୀତ ଯୁଗରେ ଯୁଦ୍ଧ ପାଇଁ ଯେଉଁ ଆଚରଣ ଥିଲା ତାହା ବଦଳି ଗଲାଣି । ରାମାୟଣ, ମହାଭାରତ ଯୁଗରେ ଯେଉଁ ଯୁଦ୍ଧ ହେଉଥିଲା ସେଥିରେ ପ୍ରତିଦ୍ୱନ୍ଦୀ ଯଦି ନିରସ୍ତ୍ର ଥାଏ, ତେବେ ଅସ୍ତ୍ରରେ ସଜ୍ଜିତ ଅପରପକ୍ଷ ଯୁଦ୍ଧ କରୁନଥିଲା । ନିରସ୍ତ୍ର ସହିତ ଯୁଦ୍ଧ କରିବା ପାଇଁ ଅସ୍ତ୍ରରେ ବଳିୟାନ ଯୋଦ୍ଧା ନିଜ ସମ୍ମାନର ବାହାରେ ବୋଲି ଭାବୁଥିଲା । କିନ୍ତୁ ସେ ଯୁଗ ଚାଲି-ଯାଇଛି । ନିରସ୍ତ୍ର ସହିତ ଯୁଦ୍ଧ ନ କରିବା ମନୋବୃତ୍ତି ବି ବଦଳି ଯାଇଛି । ଯୁଦ୍ଧରେ ଆଜିକାଲି କିଛି ନୀତି ନିୟମ ନାହିଁ । ଯିଏ ଯାହାକୁ ଯେମିତି ଧ୍ୱଂସ କରି ପାରିବ, ସେହି ହେଉଛି ଆଜିକାଲିର ଯୁଦ୍ଧ ନୀତି ।

ତେଣୁ ଏହି ସବୁ ଦୃଷ୍ଟିରୁ ଯୁଦ୍ଧ ପ୍ରତି ଆମମାନଙ୍କର ଘୃଣା ଜାତ ହେବା ଉଚିତ । ଯୁଦ୍ଧ ଯେମିତି ଭବିଷ୍ୟତରେ ନହେବ, ସେଥିପାଇଁ ପୃଥିବୀର ଜନ ସମାଜ ଏକତାବଦ୍ଧ ହୋଇ ଯୁଦ୍ଧ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଉଚିତ । ପୃଥିବୀର ପ୍ରତ୍ୟେକ ନାଗରିକ ବଞ୍ଚି ରହିବାକୁ ଯଦି ଚାହୁଁଛନ୍ତି, ତେବେ ସେମାନେ ସେମାନଙ୍କ ଦେଶ ଶାସକମାନଙ୍କୁ ବାଧ୍ୟ କରିବା ଉଚିତ ସାମରିକ ପ୍ରସ୍ତୁତି ବନ୍ଦ କରିବା ପାଇଁ । ତା ନକରି ଓଲଟି ଯଦି ସେମାନେ ସେମାନଙ୍କ ଯୁଦ୍ଧଖୋର ନେତାମାନଙ୍କୁ ଉତ୍ସାହିତ କରନ୍ତି, ବର୍ତ୍ତମାନ କେତେକ କ୍ଷେତ୍ରରେ ଯାହା ହେଉଛି ତେବେ ପୃଥିବୀର ଶେଷ ସମୟ ପାଖେଇ ଆସିଲା ବୋଲି ଧରି ନେବାକୁ ପଡ଼ିବ ।

ଯୁଦ୍ଧ ବିଗ୍ରହ ଏକ ନିଶ୍ଚିତ ମସ୍ତିଷ୍କର ଏକ ଦୟନୀୟ ନିଦର୍ଶନ । ପରମାଣୁ ଯୁଦ୍ଧର ବିଭୀଷିକା ଜାଣୁ ଜାଣୁ କେହି ଯଦି ପରମାଣୁ ଯୁଦ୍ଧର ହୁଙ୍କାର ଦିଏ, ତେବେ ତାକୁ ନିଶ୍ଚିତ ମସ୍ତିଷ୍କର ବାଗ୍ମନତା ଛଡ଼ା ଆଉ କ'ଣ କୁହାଯାଇ ପାରେ ? ପୃଥିବୀର ସବୁଠାରୁ ଛୋଟ ଦୁଇଟି ପରମାଣୁ ବୋମା ଜାପାନର ହିରୋସିମା ନେଗାସାକି, ଉପରେ ପଡ଼ିବା ଫଳରେ ଯେଉଁ ଜଘନ୍ୟ ମୃତ୍ୟୁର ତାଣ୍ଡବଲୀଳା ସୃଷ୍ଟି ହୋଇଥିଲା, ତା'ର କରୁଣ ଶବ୍ଦ ଏବେ ବି ବହୁ ଲୋକଙ୍କ କାନରୁ ଅପସରିତ ହୋଇନଥିବ । ଲକ୍ଷ ଲକ୍ଷ ଆବାଳ ବୃଦ୍ଧ ବନିତା ଯେଉଁଳି ନିର୍ମମ ଭାବରେ ମରୁଛନ୍ତି ବୋଲି ଜାଣିବା ପୂର୍ବରୁ ମୃତ୍ୟୁବରଣ କଲେ, ସେଭଳି ଉଦାହରଣ ପୃଥିବୀର ଇତିହାସରେ କେଉଁଠାରେ ଥିଲା ଭଳି ମନେହୁଏ ନାହିଁ । ଯୁଦ୍ଧର ପରବର୍ତ୍ତୀ ପ୍ରଭାବ ହେତୁ ହିରୋସିମା ନେଗାସାକି ଯୁଦ୍ଧରୁ ବର୍ତ୍ତିଯାଇଥିବା ବହୁ ନାଗରିକ ଏବେ ବି ମୃତ୍ୟୁ ମୁଖରେ ପଡୁଛନ୍ତି । ଯୁଦ୍ଧର ପରବର୍ତ୍ତୀ ପ୍ରଭାବ ହେତୁ ମରୁଥିବା ନାଗରିକଙ୍କ ସଂଖ୍ୟା ଲକ୍ଷ ଲକ୍ଷରୁ କମ୍ ନୁହେଁ ।

ଇଏସିନା ହେଲା ପରମାଣୁ ବୋମାର ରୋମ-ହର୍ଷଣକାରୀତା । ଆଜିକାଲି ଯେଉଁ ନିଉଟ୍ରନ ବୋମାର ନାଁ ଶୁଣା ଯାଉଛି ତାର ତାଣ୍ଡବଲୀଳା ଆହୁରି ହେବ ଅମାନୁଷିକ । କୋରିଆ ଯୁଦ୍ଧରେ ସାଧାରଣ ବୋମା ତୁଳନାରେ ନପାମ ବୋମାର ଯେଉଁ ଭୟାଭୟତା ପ୍ରୟୋଗ କରାଯାଇଥିଲା ଆଜିକୁ ଦଇ ତିନି ଦଶନ୍ଧି ତଳେ, ନପାମ ବୋମାର ଅମାନୁଷିକ

ଯେମ ହର୍ଷଣକାରୀତା ଶୁଣି ଲୋକମାନେ ଅଣୁ ସନ୍ତରଣ ନକରି ରହି ପାରୁନଥିଲେ ଓ ଏପରି ଜଘନ୍ୟ ବୋମା ପୃଥିବୀରୁ ଦୂର ହେବା ଉଚିତ ବୋଲି ପୃଥିବୀର ନାଗରିକ ସମସ୍ୱରରେ ସ୍ୱର ଉତ୍ତୋଳନ କରିଥିଲେ ତାହାଠାରୁ ଆହୁରି ଅମାନୁଷିକ ହେଉଛି ଏହି ନିଉଟ୍ରନ ବୋମା ବିଚିତ୍ର ଏ ବୋମା, ଏହା ଯେଉଁ ସହର ଉପରେ ନିକ୍ଷିପ୍ତ ହେବ, ସେହି ସହରରେ ଲୋକେ ଖାଲି ମରି ଶୋଇଯିବେସିନା, ସହରର ଘର, ଦ୍ୱାର, ରାସ୍ତାଘାଟ କିଛି ନଷ୍ଟ ହେବେନି । ସହରର ଧନସଂପତ୍ତି କିଛି ନଷ୍ଟ ହେବନି । ଯୁଦ୍ଧ ପରେ ଯେଉଁମାନେ ଜିଣିବେ, ସେମାନେ ବିଜିତ ରାଜ୍ୟର ଧନ ସଂପତ୍ତି ସବୁ ସଂଗ୍ରହ କରିନେବେ । ସେଥିପାଇଁ ପରା ଏହାର ଅନ୍ୟନାମ ହୋଇଛି 'ପୁଞ୍ଜିପତି ବୋମା' । ଏ ବୋମା ମାଡ଼ରେ ମଣିଷ ଜୀବନ ନଷ୍ଟ ହେବ ସିନା, କିନ୍ତୁ ପୁଞ୍ଜିପତିମାନଙ୍କ ଜୀବନ ଧନରତ୍ନ ମୋଟେ ନଷ୍ଟ ହେବନି । ସାଧାରଣ ବୋମା ତୁଳନାରେ ନପାମ ବୋମା ଯାହା, ପରମାଣୁ ବୋମା ତୁଳନାରେ ନିଉଟ୍ରନ ବୋମା ପ୍ରାୟ ସେଇଆ । ଏଥିରୁ ନିର୍ଗତ ନିଉଟ୍ରନ ରଶ୍ମି ଏହି ମୃତ୍ୟୁର କାରଣ ବୋଲି ଏହାର ନାମ ଦିଆଯାଇଛି ନିଉଟ୍ରନ ବୋମା । ଏହି ବୋମାର ଉତ୍ପାଦନ ପାଇଁ ପୃଥିବୀର କେତେକ ଦେଶ ଯେଉଁ ରଣ ହୁଙ୍କାର ଦେଉଛନ୍ତି, ସେଥିରୁ ମନେହୁଏ ପୃଥିବୀର ଧ୍ୱଂସ ଆଉ ବେଶୀ ଦିନ ଡେରି ନାହିଁ । ଏହି ବିଭିନ୍ନ ପ୍ରକାର ପରମାଣୁ ମାରଣାସ୍ତ୍ର ଯୁଦ୍ଧରେ ପୃଥିବୀର ସର୍ବସାଧାରଣ ଯଦି ସ୍ୱର ଉତ୍ତୋଳନ ନକରନ୍ତି, ତେବେ ପୃଥିବୀକୁ ରକ୍ଷା କରିବା ସମ୍ଭବପର ନୁହେଁ । ପୃଥିବୀର କେତୋଟି ରାଷ୍ଟ୍ର ହାତରେ ଯେଉଁ ଅତି ମାରାତ୍ମକ ପରମାଣୁ ଅସ୍ତ୍ରମାନ ରହିଛି, ସେଥିପ୍ରତି ପୃଥିବୀର ଜନସାଧାରଣ ସଚେତନ ନହେଲେ ବର୍ତ୍ତମାନର ରଣ ହୁଙ୍କାର ଯେ ଆମ ସମସ୍ତଙ୍କୁ ଶେଷ କରି ଦେବ ଏଥିରେ ସନ୍ଦେହ ନାହିଁ । ଏହା ବର୍ତ୍ତମାନ ସ୍ପଷ୍ଟ ଜଣା ପଡ଼ିଗଲାଣି ପୃଥିବୀର ଧ୍ୱଂସ ହେବ ନି କୌଣସି ମହାକାଶତିକ ଶକ୍ତି ଦ୍ୱାରା ବି ବୃହସ୍ପତି ପ୍ରଭାବ ଦ୍ୱାରା ପୃଥିବୀ ଯଦି ଧ୍ୱଂସ ପାଏ, ତେବେ ତାହାର କାରଣ ହେବା ଆମେ । ଆମେ ହିଁ ଦିନେ ଆମର ଧ୍ୱଂସ ସାଧନ କରିବୁଁ । ପୃଥିବୀର ଜନସାଧାରଣ ପୃଥିବୀର କେତେଜଣ ଯୁଦ୍ଧଖୋର ନେତାଙ୍କ ଅବିବେକି ପଣିଆ କେବେ ଉପଲବ୍ଧି କରିବେ, ତାହାହିଁ ଦେଖିବା ବାକି ରହିଲା । ପୃଥିବୀର ଜନସାଧାରଣ ଯଦି ଏହି ରଣହୁଙ୍କାର ବିରୁଦ୍ଧରେ ସ୍ୱର ଉତ୍ତୋଳନ ନକରନ୍ତି, ତେବେ ପୃଥିବୀର ଧ୍ୱଂସ ପାଖେଇ ଆସିଲା ବୋଲି ଧରି ନେବା ଛଡ଼ା ଅନ୍ୟ ଗତି ନାହିଁ ।



## ହୀରାକୁଦ ଓ୍ୱାର୍କସପ୍ ପୁଣି ସକ୍ରିୟ ହେଲା

ବହୁ ବର୍ଷ ଧରି ପଡ଼ି ରହିଥିବା ହୀରାକୁଦ୍ ସରକାରୀ ଓ୍ୱାର୍କସପ ପୁଣି ସକ୍ରିୟ ହୋଇ ଉଠିଛି । ଏହି ସଂସ୍ଥାର ସୁପରିଟେଣ୍ଡିଂ ଇଞ୍ଜିନିୟର ନୂତନ ନିର୍ମାଣ ଯୋଜନା କାର୍ଯ୍ୟକାରୀ କରୁଛନ୍ତି । ୨୦୦ କାରିଗର ଏହି ଅନୁଷ୍ଠାନରେ କାର୍ଯ୍ୟ କରୁଛନ୍ତି । ଏମାନେ ପ୍ରାୟ ୧୨ବର୍ଷ ପର୍ଯ୍ୟନ୍ତ କାମ ନ କରି ବସି ରହିଥିଲେ ।

ଏହି କାରଖାନାରୁ ନାନା ପ୍ରକାର ପ୍ରଜେକ୍ଟସ୍‌ରେ ବ୍ୟବହୃତ ସରଞ୍ଜାମ ନିର୍ମିତ ହେଉଛି । ମଧ୍ୟମ ଜଳସେଚନ ଯୋଜନାର ହେଡ୍ ରେଗୁଲେଟର ଗେଟ୍, ସ୍ଲୁ ହୋଏଷ୍ଟ ଏବଂ ଲିଫ୍‌ଟଗେଟ୍ ଏଥି ମଧ୍ୟରୁ ପ୍ରଧାନ । ୨୦ଫୁଟ ଓଜନର ସିପ୍ ଫୁଟ ରୋଲର ନିର୍ମାଣ ମଧ୍ୟ ଆରମ୍ଭ ହୋଇଛି । ଏହି ପ୍ରକାର ଯନ୍ତ୍ର ସାଧାରଣତଃ ମାଟି ବନ୍ଧ ଯୋଜନାରେ ବ୍ୟବହୃତ ହୋଇଥାଏ । ବନ୍ଧରେ ମାଟି ପଡ଼ିବାପରେ ରୋଲର ସାହାଯ୍ୟରେ ଏହାକୁ ଚିପି ମାଟିକୁ ଶକ୍ତ କରାଯାଏ । ଏହାଦ୍ୱାରା ମାଟି ଭିତରୁ ଦେଇ ପାଣି ପ୍ରବାହିତ ହେବାର ସମ୍ଭାବନାକୁ ସଂପୂର୍ଣ୍ଣ ରୂପେ ବନ୍ଦ କରାଯାଏ । ଏହି ରୋଲର ସମସ୍ତ ମଧ୍ୟମ ଓ ବୃହତ୍ ଜଳସେଚନ ଯୋଜନାରେ ଲାଗିଥିବାରୁ ଏହାର ଚାହିଦା ବେଶୀ ।

# ଓଡ଼ିଶାରେ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ

ଶ୍ରୀ ରାମଚନ୍ଦ୍ର ମିଶ୍ର

> ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରିବାରେ ଓଡ଼ିଶା ବଳକା ରାଜ୍ୟ ନୁହେଁ । ଆମର ରାଜନୀତିଜ୍ଞ, ଯୋଜନା ବିଶାରଦ, ଶିଳ୍ପ ବିଶେଷଜ୍ଞ ଓ ରାଜ୍ୟ ବିଦ୍ୟୁତ୍ ବୋର୍ଡର ସଦସ୍ୟମାନେ ସାମୂହିକ ଉଦ୍ୟମ ଦ୍ୱାରା ଆଗାମୀ ଦଶନ୍ଧିରେ ବିଦ୍ୟୁତ ଉତ୍ପାଦନ କ୍ଷେତ୍ରରେ ଓଡ଼ିଶାକୁ ବଳକା ରାଜ୍ୟରେ ପରିଣତ କରି ପାରିବେ ।

ଦେଶର ଉନ୍ନୟନ ନିମନ୍ତେ ଯେତେ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ନିଆଯାଏ, ସବୁଥିରେ ବିଦ୍ୟୁତ୍ ଶକ୍ତିର ଆବଶ୍ୟକତା ରହିଛି । ବିଦ୍ୟୁତ୍ ଶକ୍ତିର ନିଅଣ୍ଟିଆ ଅବସ୍ଥା ଉନ୍ନୟନ ପରିକଳ୍ପନାର ସମସ୍ତ ଆବଶ୍ୟକୀୟ ଅଗ୍ରଗତିରେ ପ୍ରତିବନ୍ଧକ ହୋଇଥାଏ । ଜୀବନଧାରଣର ମାନ ଓ ଗୁଣାତ୍ମକ ଅଭିବୃଦ୍ଧିରେ ବୈଦ୍ୟୁତିକ ଶକ୍ତିର ପ୍ରଭାବ ଯଥେଷ୍ଟ ଏବଂ କହିବାକୁ ଗଲେ, ପ୍ରାଚୁର୍ଯ୍ୟର ଗୁରିକାଠି ବିଦ୍ୟୁତ୍ ଶକ୍ତିଠାରେ ରହିଛି । ତେଣୁ ବିଦ୍ୟୁତ୍‌ଶକ୍ତିର ଉତ୍ପାଦନ ନିମନ୍ତେ ଯୋଜନା ଦୂରଦର୍ଶୀ ଓ ବହୁ ବର୍ଷ ବ୍ୟାପୀ ହେବା ଉଚିତ ଏବଂ ଏହି ଲକ୍ଷ୍ୟ ହାସଲ କରିବା ନିମନ୍ତେ ଲୋକ ଶକ୍ତି, ଆର୍ଥିକ ସମ୍ବଳ ଓ ପଦାର୍ଥ ସୁଲଭତାକୁ ଦୃଷ୍ଟିରେ ରଖି ତାର ସଂପୂର୍ଣ୍ଣ ସଦୁପଯୋଗ କରିବା ନିମନ୍ତେ ନିଶ୍ଚିତ ପଦକ୍ଷେପ ନେବାକୁ ହେବ । ଅବଶ୍ୟ ତାର ଅର୍ଥ ନୁହେଁ ଯେ ଆଜିର ସମସ୍ୟାକୁ ଆମେ ଏଡ଼ାଇ ଦେଇ କେବଳ କଳ୍ପନାବିଳାସୀ ହୋଇଯିବା ଏବଂ ସୁଦୂର ଭବିଷ୍ୟତ ବର୍ତ୍ତମାନର ସ୍ଥାନ ଗ୍ରହଣ କରିବ ।

ଏ ବର୍ଷ ଓଡ଼ିଶାରେ ବିଦ୍ୟୁତ୍ ଉତ୍ପାଦନରେ ସଂକଟ ଦେଖା ଦେଇଛି । ଗତ ନଭେମ୍ବର ମାସର ମଧ୍ୟଭାଗରୁ ସବୁ ବୃହତ୍ ଶିଳ୍ପକୁ ବିଦ୍ୟୁତ୍ ଶକ୍ତି ଯୋଗାଇବାରେ ନିୟନ୍ତ୍ରଣକାରୀ କରାଯାଇଛି । ପ୍ରତିଦିନ ଓଡ଼ିଶାର ସମସ୍ତ ଅଞ୍ଚଳରେ ପ୍ରତ୍ୟେକର ଦୁଇଘଣ୍ଟା ନିମନ୍ତେ ବିଦ୍ୟୁତ୍ ଯୋଗାଣ ବନ୍ଦ କରାଯାଇଛି । ସବୁ କ୍ଷୁଦ୍ର ଓ ମଧ୍ୟମ ଶିଳ୍ପକୁ ଦୈନିକ ମାତ୍ର ୬ରୁ ୮ ଘଣ୍ଟା ପର୍ଯ୍ୟନ୍ତ ବିଦ୍ୟୁତ୍ ଶକ୍ତି ଯୋଗାଇ ଦିଆଯାଉଅଛି ।

ତାଳଚେର ଥର୍ମାଲ





ହୀରାକୁଦ ବନ୍ଧ

ଏ ବର୍ଷ ବର୍ଷାର ଅତ୍ୟନ୍ତ ଅଭାବ ଓ ମରୁଡ଼ି ପରିସ୍ଥିତି ଯୋଗୁଁ ହୀରାକୁଦ ଓ ବାଲିମେଳା ଯୋଜନାର ଜଳାଶୟ ଗୁଡ଼ିକରେ ପର୍ଯ୍ୟାପ୍ତ ପରିମାଣରେ ପାଣି ରହିନ ନାହିଁ । ତେଣୁ ଓଡ଼ିଶାର ଜଳ ବିଦ୍ୟୁତ୍ ଯୋଜନାଗୁଡ଼ିକ ଯଥେଷ୍ଟ ବିଦ୍ୟୁତ୍ ଉତ୍ପାଦନରେ ଅସମର୍ଥ ହୋଇଛନ୍ତି । ତା ଛଡ଼ା ବାଲିମେଳା ଜଳବିଦ୍ୟୁତ୍ ଯୋଜନାରୁ ବିଦ୍ୟୁତ୍ ଶକ୍ତି ଉତ୍ପାଦନ ଆରମ୍ଭ ହେବାପରେ ପ୍ରାୟ ଆଠ ବର୍ଷ ଭିତରେ ଓଡ଼ିଶାର ଅନ୍ୟ କୌଣସି ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ର କାର୍ଯ୍ୟ କରିନାହିଁ ।

ଏବେ ଓଡ଼ିଶାରେ ଚାରିଗୋଟି ବିଦ୍ୟୁତ୍ କେନ୍ଦ୍ର ଅଛି । ସେଗୁଡ଼ିକ ହେଲା (୧) ହିରାକୁଦ-ଚିପଲିମା, (୨) ବାଲିମେଳା (୩) ମାଛକୁଣ୍ଡ ଓ (୪) ତାଳଚେର ତାପଜ । ଏ ଭିତରୁ ପ୍ରଥମ ତିନିଗୋଟି ଜଳରୁ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରୁଥିବାରୁ ଜଳ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ର ବୋଲି କୁହାଯାଉଅଛି ।

ହୀରାକୁଦ-ଚିପଲିମାଠାରେ ଚାରିଗୋଟି ୩୭.୫ ମେଗାଓ୍ୱାଟ୍ ଶକ୍ତି ବିଶିଷ୍ଟ ଓ ପାଞ୍ଚଗୋଟି ୨୪ ମେଗାଓ୍ୱାଟ୍ ଶକ୍ତି ବିଶିଷ୍ଟ ବିଦ୍ୟୁତ୍ ଉତ୍ପାଦନ ବା ଜେନେରେଟର ଯନ୍ତ୍ର ରହିଅଛି । ତେଣୁ ଏହି କେନ୍ଦ୍ରରେ ମୋଟ ଜେନେରେଟର ଶକ୍ତି ୨୭୦ ମେଗାଓ୍ୱାଟ । କିନ୍ତୁ ଏହି କେନ୍ଦ୍ରରୁ ଏକ ସମୟରେ ସର୍ବାଧିକ ୨୧୦ ମେଗାଓ୍ୱାଟ ବିଦ୍ୟୁତ୍ ଉତ୍ପାଦନ ହୋଇ ପାରିବା ଭଳି ନିର୍ମାଣ କରାଯାଇଅଛି । ଗୋଟିଏ ବର୍ଷରେ ଏହି କେନ୍ଦ୍ରରୁ ୧୦୫ କୋଟି ୟୁନିଟ୍ ଉତ୍ପାଦନ ହେଲପରି ଜଳ ଏହି ଜଳାଶୟରେ ରହିବ ବୋଲି ଅଟକଳ କରାଯାଇଅଛି ।

ବାଲିମେଳାଠାରେ ଛଅଗୋଟି ୬୦ ମେଗାଓ୍ୱାଟ୍ ଶକ୍ତି ବିଶିଷ୍ଟ ଜେନେରେଟର ରହିଛି । ତେଣୁ ଏହି କେନ୍ଦ୍ରରେ ମୋଟ ଜେନେରେଟର ଶକ୍ତି ୩୬୦ ମେଗାଓ୍ୱାଟ୍ । କିନ୍ତୁ ଏହି କେନ୍ଦ୍ରରୁ ଏକ ସମୟରେ ସର୍ବାଧିକ ୨୪୦ ମେଗାଓ୍ୱାଟ ବିଦ୍ୟୁତ୍ ଉତ୍ପାଦନ ହୋଇ ପାରିବ ଏବଂ ଗୋଟିଏ ବର୍ଷରେ ଏହି କେନ୍ଦ୍ରରୁ ୧୧୭.୬ କୋଟି ୟୁନିଟ୍ ଉତ୍ପାଦନ ହେଲପରି ଜଳ ଏହି ଜଳାଶୟରେ ରହିବ ବୋଲି ଅଟକଳ କରାଯାଇଅଛି ।

ମାଛକୁଣ୍ଡ ଯୋଜନାରେ ଉଭୟ ଓଡ଼ିଶା ଓ ଆନ୍ଧ୍ରର ଭାଗ ରହିଛି । ସେଥିରୁ ଓଡ଼ିଶାର ଭାଗ ହେଲା ୫୦

ମେଗାଓ୍ୱାଟ୍ ଏବଂ ଏଥିରୁ ଓଡ଼ିଶାକୁ ପ୍ରତିବର୍ଷ ୩୫ କୋଟି ୟୁନିଟ୍ ମିଳିବା ନିମନ୍ତେ ଚୁକ୍ତି ହୋଇଛି ।

ତାଳଚେର ତାପଜ କେନ୍ଦ୍ରରେ ଚାରିଗୋଟି ୬୨·୫ ମେଗାଓ୍ୱାଟ୍ ଶକ୍ତି ବିଶିଷ୍ଟ ଜେନେରେଟର ରହିଛି । ତେଣୁ ଏହି କେନ୍ଦ୍ରର ମୋଟ ଜେନେରେଟର ଶକ୍ତି ୨୫୦ ମେଗାଓ୍ୱାଟ । କିନ୍ତୁ ଏହି କେନ୍ଦ୍ରରୁ ଏକ ସମୟରେ ସର୍ବାଧିକ ୧୫୩ ମେଗାଓ୍ୱାଟ୍ ବିଦ୍ୟୁତ୍ ଉତ୍ପାଦନ ହୋଇ-ପାରିବ ଏବଂ ଗୋଟିଏ ବର୍ଷରେ ଏହି କେନ୍ଦ୍ରରୁ ମୋଟ ୧୦୦·୫ କୋଟି ୟୁନିଟ୍ ବିଦ୍ୟୁତ୍ ଶକ୍ତି ଉତ୍ପାଦନ ହୋଇ-ପାରିବ ବୋଲି ହିସାବ କରାଯାଇଅଛି ।

ତେଣୁ ଓଡ଼ିଶାର ଚାରିଗୋଟି ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରର ମୋଟ ଜେନେରେଟର ଶକ୍ତି ୯୧୪ ମେଗାଓ୍ୱାଟ ହେଲେ ମଧ୍ୟ, ଏଥିରୁ ଗୋଟିଏ ବର୍ଷ ସର୍ବାଧିକ ୩୪୩·୬ କୋଟି ୟୁନିଟ୍ ବିଦ୍ୟୁତ୍ ଉତ୍ପାଦନ ହେବ ବୋଲି ହିସାବ କରାଯାଇଅଛି ।

୧୯୭୬-୭୭ ବର୍ଷ ସର୍ବାଧିକ ୪୪୨·୭ ମେଗାଓ୍ୱାଟ୍ ଶକ୍ତି ୨୯-୩-୭୭ ତାରିଖର ରାତି ଦଶଟା ବେଳେ ଉତ୍ପାଦନ କରାଯାଇଥିଲା ଓ ସେହି ବର୍ଷ ମୋଟରେ ୩୦୩ କୋଟି ୟୁନିଟ୍ ବିଦ୍ୟୁତ୍ ଶକ୍ତି ଏହି ଚାରିଗୋଟି କେନ୍ଦ୍ରରୁ ଉତ୍ପାଦନ ହୋଇଥିଲା । ଏହି ୩୦୩ କୋଟି ୟୁନିଟ୍‌ରୁ ୨୫୮·୪ କୋଟି ୟୁନିଟ୍ ବିଦ୍ୟୁତ୍ ଶକ୍ତି ବିକ୍ରୟ ହୋଇଥିଲା ।

୧୯୭୭-୭୮ ବର୍ଷ ସର୍ବାଧିକ ୬୧୭ ମେଗାଓ୍ୱାଟ୍ ଶକ୍ତି ୨୪-୯-୭୭ ତାରିଖ ରାତି ଆଠଟା ବେଳେ ଉତ୍ପାଦନ କରାଯାଇଥିଲା ଓ ସେହି ବର୍ଷ ଏହି ଚାରିଗୋଟି କେନ୍ଦ୍ରରୁ ମୋଟରେ ୩୧୫·୫ କୋଟି ୟୁନିଟ୍ ବିଦ୍ୟୁତ୍ ଶକ୍ତି ଉତ୍ପାଦନ ହୋଇଥିଲା । ଏହି ବିଦ୍ୟୁତ୍ ଶକ୍ତିରୁ ୨୭୧·୯ କୋଟି ୟୁନିଟ୍ ବିଦ୍ୟୁତ୍ ଶକ୍ତି ବ୍ୟବହୃତ ହୋଇଥିଲା ।

୧୯୭୮-୭୯ ବର୍ଷ ସର୍ବାଧିକ ୬୫୦ ମେଗାଓ୍ୱାଟ୍ ଶକ୍ତି ୪-୯-୭୮ ତାରିଖ ରାତି ଆଠଟା ବେଳେ ଉତ୍ପାଦନ କରାଯାଇଥିଲା ଓ ସେହି ବର୍ଷ ଏହି ଚାରିଗୋଟି କେନ୍ଦ୍ରରୁ ମୋଟରେ ୩୩୮·୪ କୋଟି ୟୁନିଟ୍ ଉତ୍ପାଦନ କରା-ଯାଇଥିଲା । ଏହି ବିଦ୍ୟୁତ୍ ଶକ୍ତିରୁ ୨୭୫·୭ କୋଟି ୟୁନିଟ୍ ବିକ୍ରୟ ଯୋଗ୍ୟ ବ୍ୟବହାର କରାଯାଇଥିଲା ।

୧୯୭୯-୮୦ ବର୍ଷ ଏହି ଚାରିଗୋଟି କେନ୍ଦ୍ରରୁ ୨୮୭·୮ କୋଟି ୟୁନିଟ୍ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରାଯାଇ, ୨୪୩·୮

ରେଙ୍ଗାଲୀ ବନ୍ଧ



କୋଟି ୟୁନିଟ୍ ବିକ୍ରୟ ଯୋଗ୍ୟ ବ୍ୟବହାର କରାଯାଇଥିଲା ।

ଉପରେ ଦିଆଯାଇଥିବା ତଥ୍ୟରୁ ଜଣା ପଡୁଛି ଯେ ସର୍ବାଧିକ ଉତ୍ପାଦନ କ୍ଷମତା ୩୪୩.୬ କୋଟି ୟୁନିଟ୍ ଥିବା ସ୍ଥଳେ ୧୯୭୬-୭୭ରେ ୩୦୩ କୋଟି ୟୁନିଟ୍, ୧୯୭୭-୭୮ରେ ୩୧୫.୫ କୋଟି ୟୁନିଟ୍ ଓ ୧୯୭୮-୭୯ରେ ୩୩୮.୪ କୋଟି ୟୁନିଟ୍ ଉତ୍ପାଦନ କରାଯାଇଥିଲା ।

ବିଦ୍ୟୁତ୍ ଶକ୍ତିର ଆବଶ୍ୟକତା କ୍ରମେ ବୃଦ୍ଧି ପାଉଥିବା କଥା ମଧ୍ୟ ଉପରେ ଦିଆଯାଇଥିବା ତଥ୍ୟରୁ ଜଣାପଡ଼ିବ । କେନ୍ଦ୍ରୀୟ ବିଦ୍ୟୁତ୍ ସଂସ୍ଥା ଦ୍ୱାରା ଅନୁସନ୍ଧାନ ଓ ପର୍ଯ୍ୟବେକ୍ଷଣ କରି ହିସାବ କରାଯାଇଛି ଯେ ଓଡ଼ିଶାର ବିଦ୍ୟୁତ୍ ଶକ୍ତିର ଆବଶ୍ୟକତା ୧୯୮୩-୮୪ ବେଳକୁ ୬୧୨.୬ କୋଟି ୟୁନିଟ୍ ଏବଂ ୧୯୮୮-୮୯ ବେଳକୁ ୧୦୬୦ କୋଟି ୟୁନିଟ୍ ହୋଇ ଯାଇଥିବ । ଅବଶ୍ୟ ଏହି ଅନୁସନ୍ଧାନ ବେଳେ ଓଡ଼ିଶାରେ ଆଲୁମିନିୟମ ପ୍ରକଳ୍ପ ବା ପାରାଦୀପଠାରେ ଦ୍ୱିତୀୟ ଇସ୍ପାତ କାରଖାନା ବସିବା ନିଶ୍ଚିତ ନଥିଲା । ଏବେ ଶିଳ୍ପାୟନ ନିମନ୍ତେ ସରକାରଙ୍କ ତରଫରୁ ଏକ ହଜାର କୋଟି ଟଙ୍କା ବିନିଯୋଗ କରିବା ନିମନ୍ତେ ହୋଇଥିବା ଯୋଜନା ମଧ୍ୟ ସେତେବେଳେ କରାଯାଇ ନଥିଲା । ତେଣୁ ନିର୍ବିବାଦ ସହ ଗ୍ରହଣ କରି ହେବ ଯେ ୧୯୮୩-୮୪ ବେଳକୁ ଓଡ଼ିଶାର ବିଦ୍ୟୁତ୍ ଶକ୍ତିର ଆବଶ୍ୟକତା ଅନ୍ତତଃ ୭୦୦ କୋଟି ୟୁନିଟ୍ ଏବଂ ୧୯୮୮-୮୯ ବେଳକୁ ଅନ୍ତତଃ ୧୫୦୦ କୋଟି ୟୁନିଟ୍‌କୁ ବୃଦ୍ଧି ପାଇଥିବ ।

୧୯୭୬-୭୭ରୁ ୧୯୭୯-୮୦ ପର୍ଯ୍ୟନ୍ତ ବିଦ୍ୟୁତ୍ ସଂପର୍କୀୟ ଯେଉଁ ତଥ୍ୟ ଆଗରୁ ଦିଆଗଲା ସେଥିରୁ ଜଣା ପଡୁଛି ଯେ ସାଧାରଣତଃ ୩୦୦ କୋଟି ୟୁନିଟ୍ ବିକ୍ରୟ ଯୋଗ୍ୟ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରିବା ନିମନ୍ତେ ଉତ୍ପାଦନ କେନ୍ଦ୍ରର ମୋଟ ଜେନେରେଟର କ୍ଷମତା ପ୍ରାୟ ୯୧୪ ମେଗାୱାଟ୍ ହେବା ଆବଶ୍ୟକ, ତେଣୁ ୧୫୦୦ କୋଟି ୟୁନିଟ୍ ବିକ୍ରୟ ଯୋଗ୍ୟ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରିବା ନିମନ୍ତେ ପ୍ରାୟ ୪୫୦୦ ମେଗାୱାଟ୍‌ର ମୋଟ ଜେନେରେଟର କ୍ଷମତା ଥିବା ଉତ୍ପାଦନ କେନ୍ଦ୍ର ଓଡ଼ିଶାରେ ୧୯୮୯-୯୦ ବେଳକୁ ଦରକାର ପଡ଼ିବ ।

ଏବେ ଓଡ଼ିଶାରେ ତାଳଚେର ଦ୍ୱିତୀୟ ପର୍ଯ୍ୟାୟ ଯୋଜନାରେ ଦୁଇ ଗୋଟି ୧୧୦ ମେଗାୱାଟ୍ ଉତ୍ପାଦନ କ୍ଷମ ଜେନେରେଟର ନିର୍ମାଣ କାର୍ଯ୍ୟ ପ୍ରାୟ ଶେଷ ହୋଇ ଆସିଲାଣି ଓ ୧୯୮୨ ବର୍ଷ ଏହା ଉତ୍ପାଦନ ଆରମ୍ଭ କରିବ । ଏଥିରୁ ବର୍ଷକୁ ୮୮.୬ କୋଟି ୟୁନିଟ୍ ବିଦ୍ୟୁତ୍ ଶକ୍ତି ମିଳିବ ।

ରେଙ୍ଗାଲି ଜଳ ବିଦ୍ୟୁତ୍ ଯୋଜନାରେ ଦୁଇ ଗୋଟି ୫୦ ମେଗାୱାଟ୍ କ୍ଷମ ଜେନେରେଟର ନିର୍ମାଣ କାର୍ଯ୍ୟ ଚାଲିଛି । ଏହିକାର୍ଯ୍ୟ ୧୯୮୩-୮୪ ସୁଦ୍ଧା ଶେଷ ହୋଇ ଉତ୍ପାଦନ ଆରମ୍ଭ କରିବା ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

ଏଥିରୁ ବର୍ଷକୁ ୫୨.୩ କୋଟି ୟୁନିଟ୍ ବିଦ୍ୟୁତ୍ ଶକ୍ତି ମିଳିବ ।

ଉପର କୋଲାବ ଜଳ ବିଦ୍ୟୁତ୍ ଯୋଜନାରେ ତିନିଗୋଟି ୮୦ ମେଗାୱାଟ୍ ଉତ୍ପାଦନକ୍ଷମ ଜେନେରେଟର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଛି । ଏଥିରୁ ୮୨.୮ କୋଟି ୟୁନିଟ୍ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ ହେବ ବୋଲି ଅଟକଳ କରାଯାଇଅଛି । ଏହି ଯୋଜନା ଶେଷ ହେବା ବେଳକୁ ୧୯୮୪-୮୫ ହୋଇଯିବ ବୋଲି ଆଶା କରାଯାଉଅଛି ।

ହୀରାକୁଦ-ଚିପିଲିମାଠାରେ ଆଉ ଗୋଟିଏ ୩୭ ମେଗାୱାଟ୍ ଓ ବାଲିମେଳାଠାରେ ଆଉ ଦୁଇଗୋଟି ୬୦ ମେଗାୱାଟ୍ ଜେନେରେଟର ନିମନ୍ତେ ଯୋଜନା ପ୍ରସ୍ତୁତ ହୋଇଛି ।

ଉପର ଇନ୍ଦ୍ରାବତୀ ଯୋଜନାରେ ତିନିଗୋଟି ୨୦୦ ମେଗାୱାଟ୍ କ୍ଷମତା ବିଶିଷ୍ଟ ଜେନେରେଟର ବସାଇବା ନିମନ୍ତେ ଯୋଜନା କରାଯାଇଅଛି । ଏଥିରୁ ବର୍ଷକୁ ପ୍ରାୟ ୨୦୬.୫ କୋଟି ୟୁନିଟ୍ ବିଦ୍ୟୁତ୍ ଶକ୍ତି ଉତ୍ପାଦନ ହେବ ।

ତାଳଚେରଠାରେ ପୃଥିବୀର ଅନ୍ୟତମ ପ୍ରାଚୁର୍ଯ୍ୟଭରା ବିସ୍ତୀର୍ଣ୍ଣ କୋଇଲା ଖଣି ରହିଛି । ଏଠାରେ କେନ୍ଦ୍ର ସରକାରଙ୍କ ତରଫରୁ ଜାତୀୟ ତାପଜ ଶକ୍ତି କର୍ପୋରେସନ୍ ଦ୍ୱାରା ଗୋଟିଏ ୨୦୦୦ ମେଗାୱାଟ୍ ବିଶିଷ୍ଟ ଅତ୍ୟୁଚ୍ଚ ତାପଜ କେନ୍ଦ୍ର ସ୍ଥାପନ କରାଯିବା ନିମନ୍ତେ ସ୍ଥିର କରାଯାଇଅଛି । ତା ଛଡ଼ା ନାଲ୍‌କୋ ତରଫରୁ ଫ୍ରାନ୍ସ୍ ସହାୟତାରେ ଏଠାରେ ୬୦୦ ମେଗାୱାଟ୍ ଜେନେରେଟର କ୍ଷମତା ଥିବା ଓ ୪୦୦ ମେଗାୱାଟ୍ ଉତ୍ପାଦନକ୍ଷମ ଗୋଟିଏ ତାପଜ କେନ୍ଦ୍ର ନିର୍ମାଣ କରାଯିବ । ଇମ୍ଫା ତରଫରୁ ଏଠାରେ ୧୧୦ ମେଗାୱାଟ୍ ଜେନେରେଟର କ୍ଷମତା ଥିବା ଗୋଟିଏ ବିଦ୍ୟୁତ୍ କେନ୍ଦ୍ର ନିର୍ମାଣ ନିମନ୍ତେ ପ୍ରସ୍ତାବ ଓଡ଼ିଶା ସରକାର ଗ୍ରହଣ କରିଛନ୍ତି । ଏହି ତାପଜ କେନ୍ଦ୍ର ଗୁଡ଼ିକ ୧୯୮୫-୮୬ରୁ ୧୯୯୦-୯୧ ଭିତରେ କ୍ରମଶଃ ଉତ୍ପାଦନକ୍ଷମ ହେବ ବୋଲି ଆଶା କରାଯାଏ ।

ତେଣୁ ଓଡ଼ିଶାରେ ଓଡ଼ିଶା ସରକାର ଏବଂ ବିଦ୍ୟୁତ୍ ବୋର୍ଡଙ୍କର ୧୧୬୦ ମେଗାୱାଟ୍, ଭାରତ ସରକାର ସରକାରଙ୍କ ୨୬୦୦ ମେଗାୱାଟ ଓ ବ୍ୟକ୍ତିଗତ ଉଦ୍ୟମରେ ୧୧୦ ମେଗାୱାଟ କ୍ଷମତା ସଂପନ୍ନ ବୈଦ୍ୟୁତିକ ଉତ୍ପାଦନ କେନ୍ଦ୍ର ୧୯୯୦-୯୧ ସୁଦ୍ଧା ନିର୍ମାଣ ହୋଇ ଯାଇଥିବ ବୋଲି ଆଶା କରାଯାଉଛି । କିନ୍ତୁ ତଥାପି ଆଉରି ପ୍ରାୟ ୬୦୦ ମେଗାୱାଟ୍ ବିଦ୍ୟୁତ୍ ଶକ୍ତି ଉତ୍ପାଦନକାରୀ କେନ୍ଦ୍ର ପ୍ରସ୍ତୁତ ନ ହେଲେ ୧୯୯୦-୯୧ ବେଳକୁ ବିଦ୍ୟୁତ୍ ଶକ୍ତିର ଅଭାବ ଲାଗି ରହିଥିବ ବୋଲି ଆଶଙ୍କା ତଥ୍ୟ ଭିତ୍ତିକ ହୋଇଥିବାରୁ ଗ୍ରହଣୀୟ ।

ବିଦ୍ୟୁତ୍ କେନ୍ଦ୍ର ନିର୍ମାଣ ନିମନ୍ତେ ସାଧାରଣତଃ ଦେଖାଯାଉଅଛି ଯେ ତାପଜ କେନ୍ଦ୍ରର ନିର୍ମାଣ ନିମନ୍ତେ ୬-୭ ବର୍ଷ ଓ ଜଳବିଦ୍ୟୁତ୍ କେନ୍ଦ୍ର ନିର୍ମାଣ ନିମନ୍ତେ ୮-୯ ବର୍ଷ ସମୟ ଅନୁସନ୍ଧାନ ଓ ସର୍ଭେକାର୍ଯ୍ୟ ଠାରୁ ଆରମ୍ଭକରି ଉତ୍ପାଦନ ଆରମ୍ଭ ହେବା ପର୍ଯ୍ୟନ୍ତ ଲାଗୁଛି । ବିଦ୍ୟୁତ୍ ଉତ୍ପାଦନ ନିମନ୍ତେ ସିମେଣ୍ଟ, ଲୁହା ଓ ଯନ୍ତ୍ରପାତି ମିଳିବାରେ ବହୁତ ବିଳମ୍ବ ଏବଂ ବୈଦ୍ୟୁତିକ ଯନ୍ତ୍ର ଗୁଡ଼ିକ ଠିକ୍ ଭାବରେ ପ୍ରଥମ ଥରପାଇଁ ଉତ୍ପାଦନ କରାଇବାରେ ଅସୁବିଧା ରହୁଥିବାରୁ ବେଶୀ ବିଳମ୍ବ ହେଉଛି । ତେଣୁ ସେହି ପରିସ୍ଥିତିକୁ ଦୃଷ୍ଟିରେ ରଖି, ଆଜିଠାରୁ ଆଉ ୭୦୦ ମେଗାୱାଟ୍ ଉତ୍ପାଦନ କରିବା ନିମନ୍ତେ ଯୋଜନା ଓ ପ୍ରକଳ୍ପର ଅନୁସନ୍ଧାନ ଓ ଅଟକଳ ପ୍ରସ୍ତୁତ କରି ରଖିବା ଉଚିତ ହେବ ବୋଲି ମନେ ହୁଏ ।

ନିର୍ମାଣ କାର୍ଯ୍ୟର ମନ୍ଥରତା ଏବଂ ଆବଶ୍ୟକୀୟ ସାମଗ୍ରୀର କ୍ରମାନ୍ୱୟରେ ଓ ସଠିକ୍ ପରିମାଣରେ ଯୋଗାଣ ଇତ୍ୟାଦି ବିଭିନ୍ନ କାର୍ଯ୍ୟର ସମୀକ୍ଷା କରିବା ଏବେ ଅତ୍ୟନ୍ତ ଆବଶ୍ୟକ ହୋଇ ଉଠିଲାଣି । ତେଣୁ କେବଳ ବୈଦ୍ୟୁତିକ ପ୍ରକଳ୍ପ ନିମନ୍ତେ ଗୋଟିଏ ସମୀକ୍ଷକ ସଂସ୍ଥା ବା ମନିଟରିଂ ଅର୍ଗାନାଇଜେଶନ ଫର ଇଲେକଟ୍ରିକାଲ ପ୍ରୋଜେକ୍ଟସ୍ ଭଳି ଏକ ସ୍ୱତନ୍ତ୍ର ସଂସ୍ଥା ଗଠିତ ହେବା ଆବଶ୍ୟକତା ଉପଲବ୍ଧି କରାଗଲାଣି । ବିଭିନ୍ନ ପ୍ରତିବନ୍ଧକ ଏବଂ ବାଧା ବିଘ୍ନକୁ ଚିହ୍ନୋଟ କରି, ଠିକ୍ ସମୟରେ ତାର ପ୍ରତିକାର କରିବା ବା ପ୍ରତିଷେଧକ ବ୍ୟବସ୍ଥା ନେବାକୁ ଏହି ସଂସ୍ଥା ନିର୍ମାଣ ସହିତ ସଂପୃକ୍ତ ନ ହୋଇ ସ୍ୱତନ୍ତ୍ର ଭାବରେ ଗଢି ଉଠିଲେ ନିର୍ମାଣରେ ଥିବା ଦୋଷ ତ୍ରୁଟି ଗୁଡ଼ିକ ଠିକ୍ ଭାବରେ ଦର୍ଶାଇବାକୁ ସମର୍ଥ ହେବ । ଏହିପରି ସଂସ୍ଥା କେନ୍ଦ୍ରରେ ଓ ଅନ୍ୟାନ୍ୟ ରାଜ୍ୟମାନଙ୍କରେ ସୃଷ୍ଟି ହୋଇଛି । ଦେଖାଯାଉଛି ଯେ ଓଡ଼ିଶାରେ ଏପରି ସଂସ୍ଥା ଆଗରୁ ସୃଷ୍ଟି ହୋଇଥିଲେ ତାଳଚେର ଯୋଜନାର ଦ୍ୱିତୀୟ ପର୍ଯ୍ୟାୟ ଓ ରେଙ୍ଗାଲୀ ଯୋଜନାରେ ହୋଇଥିବା ବିଳମ୍ବକୁ ଏଡ଼ାଇ ଦିଆଯାଇ ପାରିଥାନ୍ତା ।

ତାପଜ ବିଦ୍ୟୁତ୍ କେନ୍ଦ୍ର ଗୁଡ଼ିକରେ ଉତ୍ପାଦନ ଆହୁରି ବୃଦ୍ଧି କରିବା ନିମନ୍ତେ ଏବେ ସାରା ଭାରତରେ ଚହଳ ପଡ଼ିଛି । ଓଡ଼ିଶା ରାଜ୍ୟର ପରିସ୍ଥିତି ନେଇ ଏ ସଂପର୍କରେ କିଛି ଆଲୋଚନା ଆବଶ୍ୟକ ।

ଓଡ଼ିଶାର ତାଳଚେର ତାପଜ ବିଦ୍ୟୁତ୍‌କେନ୍ଦ୍ରର ଜେନେରେଟର କ୍ଷମତା ୨୫୦ ମେଗାୱାଟ୍ । ପୁରା ଭାବରେ ବର୍ଷ ତମାମ କାର୍ଯ୍ୟ କଲେ ଏହି କେନ୍ଦ୍ରରୁ ବର୍ଷକୁ ୨୧୬ କୋଟି ୟୁନିଟ୍ ବିଦ୍ୟୁତ୍ ଉତ୍ପାଦନ ହୋଇପାରନ୍ତା । କିନ୍ତୁ ୧୯୭୬-୭୭ରେ ଏହି କେନ୍ଦ୍ରରୁ ୯୬.୧ କୋଟି ୟୁନିଟ୍ ବିଦ୍ୟୁତ୍ ଉତ୍ପାଦନ ହୋଇଥିଲା । ୧୯୭୭-୭୮ରେ ଏହି କେନ୍ଦ୍ରରୁ ୬୬.୯ କୋଟି ୟୁନିଟ୍ ବିଦ୍ୟୁତ୍ ଉତ୍ପାଦନ ହୋଇଥିଲା । ୧୯୭୮-୭୯ରେ ଏହି କେନ୍ଦ୍ରରୁ ୭୨.୬ କୋଟି ୟୁନିଟ୍ ବିଦ୍ୟୁତ୍ ଉତ୍ପାଦନ ହୋଇଥିଲା । ତେଣୁ ୧୯୭୬-୭୭ରେ ଏହି କେନ୍ଦ୍ରର ଦକ୍ଷତା ଶତକଡ଼ା ୪୪.୫ ଭାଗ ଥିଲା, ୧୯୭୭-୭୮ରେ ଦକ୍ଷତା ୩୦.୯୭ ଭାଗ ଓ ୧୯୭୮-୭୯ରେ ଦକ୍ଷତା ୩୩.୬ ଭାଗ ଥିଲା । ଏହି ଦକ୍ଷତାକୁ ବୃଦ୍ଧିକରି ପ୍ରାୟ ଶତକଡ଼ା ୫୫ ଭାଗରେ ନ ପହଞ୍ଚିବା ପର୍ଯ୍ୟନ୍ତ ତାପଜ ବିଦ୍ୟୁତ୍ କେନ୍ଦ୍ରରୁ ଉତ୍ପାଦିତ ବିଦ୍ୟୁତ୍ ଶକ୍ତିର ଦର ଅର୍ଥନୀତି ଦୃଷ୍ଟିରୁ ଲାଭଜନକ ନୁହେଁ । ତେଣୁ ତାଳଚେର ତାପଜ କେନ୍ଦ୍ରର ଦକ୍ଷତା ବୃଦ୍ଧି କରିବାକୁ ରାଜ୍ୟ ବିଦ୍ୟୁତ୍ ବୋର୍ଡ ଅବିରାମ ଚେଷ୍ଟା କରିବାକୁ ପଡ଼ିବ ଓ ଦକ୍ଷତାର ଦୈନିକ ସମୀକ୍ଷା କରିବା ନିମନ୍ତେ ବ୍ୟବସ୍ଥା ରହିବା କଥା । ତାପଜ ବିଦ୍ୟୁତ୍ କେନ୍ଦ୍ରରେ ବିଦେଶରେ କିଲୋୱାଟ୍ ପିଛା ବର୍ଷକୁ ୬୦୦୦ ୟୁନିଟ୍ ବିଦ୍ୟୁତ୍ ଉତ୍ପାଦନ ହେବା ଏକ ସର୍ବନିମ୍ନ ମାନ ହେଲେ ମଧ୍ୟ କୋଇଲାର ଗୁଣାତ୍ମକ ମାନ, ଯନ୍ତ୍ରପାତିର ସାମୟିକ ଅଭାବ ପ୍ରଭୃତି କାରଣ ଯୋଗୁଁ ତାଳଚେର କେନ୍ଦ୍ରରେ କିଲୋୱାଟ୍ ପିଛା ହାରାହାରି ପ୍ରାୟ ତିନିହଜାର ୟୁନିଟ୍ ବିଦ୍ୟୁତ୍ ଉତ୍ପାଦନ ହେଉଛି ।

ତେଣୁ ବିଦ୍ୟୁତ୍ ଉତ୍ପାଦନର ପରିମାଣ ବୃଦ୍ଧି କରିପାରିଲେ ହିଁ ଓଡ଼ିଶାରେ ଯେଉଁ ଶିଳ୍ପ ବିପ୍ଳବ ଓ କୃଷି ବିପ୍ଳବ ନିମନ୍ତେ ଆହ୍ୱାନ ଦିଆଯାଇଅଛି, ତାହା ସାର୍ଥକ ହେବ । ସେହି ଦୃଷ୍ଟିରୁ ଚିନ୍ତାଧାରା ସୃଷ୍ଟି ହେବା ଆବଶ୍ୟକ ।

ଏ ସଂପର୍କରେ ଜାତୀୟ ଓ ଆଞ୍ଚଳିକ ସଂଯୋଗ ବା ଗ୍ରୀଡ୍ ନିମନ୍ତେ ଯଥେଷ୍ଟ ଆବଶ୍ୟକତା ରହିଛି । ରାଜ୍ୟ-ରାଜ୍ୟ ଭିତରେ ବୁଝାମଣା କରିପାରିଲେ ଗୋଟିଏ ରାଜ୍ୟର ସାମୟିକ ନିଅଣ୍ଟିଆ ପରିସ୍ଥିତିକୁ ପଡ଼ୋଶୀ ରାଜ୍ୟରୁ ବିଦ୍ୟୁତ୍‌ଶକ୍ତି ଆଣି କିଛି ଅଂଶ ଲାଘବ କରିଦିଆଯାଉଅଛି । ଏବେ ଓଡ଼ିଶାର ନିଅଣ୍ଟିଆ ଅବସ୍ଥା ସମୟରେ ଆନ୍ଧ୍ର ରାଜ୍ୟ ବିଦ୍ୟୁତ୍ ବୋର୍ଡରୁ ଓଡ଼ିଶା ବିଦ୍ୟୁତ୍ ଶକ୍ତି ଆଣୁଛି । ତେଣୁ ଜାତୀୟ ଓ ଆଞ୍ଚଳିକ ସଂଯୋଗ ନିର୍ମାଣ ପ୍ରତି ଗୁରୁତ୍ୱ ଦେବା ଅବକାଶ ରହିଛି । ଏହି ସଂଯୋଗ ନିମନ୍ତେ ୨୨୦ କେ. ଭି. ଓ ୪୦୦ କେ. ଭି. ଶକ୍ତି ସଂପନ୍ନ ସଂଯୋଗ ଲାଇନ୍‌ର ଆବଶ୍ୟକତା ରହିଛି । ଏ ଦିଗରେ ଓଡ଼ିଶାରେ କାର୍ଯ୍ୟ ଆରମ୍ଭ ହୋଇଛି । ଇନ୍ଦ୍ରାବତୀ ଓ କୋଲାବର ବିଦ୍ୟୁତ୍ ଶକ୍ତିକୁ ପଶ୍ଚିମବଙ୍ଗକୁ ସରବରାହ କରିବା ନିମନ୍ତେ ୪୦୦ କେ. ଭି. ଟ୍ରାନ୍ସମିସନ ଲାଇନ୍ ନିର୍ମାଣ କରିବା ନିମନ୍ତେ ସମସ୍ତ ଆନୁସଙ୍ଗିକ କାର୍ଯ୍ୟ ପ୍ରାୟ ଶେଷ ହୋଇ ଆସିଲାଣି । ସେହିପରି ଓଡ଼ିଶା ଓ ବିହାର ରାଜ୍ୟ ଭିତରେ ୨୨୦ କେ. ଭି. ଲାଇନ୍ ସଂଯୋଗ ନିମନ୍ତେ ରହିଛି ।

ଏହାଛଡ଼ା ଅନେକ ସ୍ଥାନରେ କେନାଲ ଓ କ୍ଷୁଦ୍ର ନଦୀରେ ରହିଥିବା କ୍ଷୁଦ୍ର ପ୍ରପାତ ଗୁଡ଼ିକ ବ୍ୟବହାର କରି "ଅତି କ୍ଷୁଦ୍ର ଜଳବିଦ୍ୟୁତ୍ ଯୋଜନା" ବା ମାଇକ୍ରୋ ହାଇଡ୍ରୋ ପ୍ରୋଜେକ୍ଟମାନ ତିଆରି କରିବା ସମ୍ଭାବନାକୁ ପରୀକ୍ଷା କରି ଦେଖାଯାଉଅଛି । ଓଡ଼ିଶାରେ ଏପରି

ଜଳ ବିଦ୍ୟୁତ୍ ଯୋଜନା ସଫଳ କରିବାକୁ ହେଲେ ଜଳ-ସେଚନ ବିଦ୍ୟୁତ୍ ଉତ୍ପାଦନ କାର୍ଯ୍ୟାଳୟ ଭିତରେ ଘନିଷ୍ଠ ସହଯୋଗ ଆବଶ୍ୟକ ।

ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରିବାରେ ଓଡ଼ିଶା ଏକ ଦରିଦ୍ର ରାଜ୍ୟ ବୋଲି ବହୁ ଦିନରୁ ରହି ଆସିଥିବା ଭ୍ରମ ଧାରଣା ଓଡ଼ିଶାର ଯଥେଷ୍ଟ କ୍ଷତି କରି ସାରିଲଣି । ତେଣୁ ଏହି ଧାରଣାରୁ ମୁକ୍ତ ହୋଇ ଓଡ଼ିଶାର ବିଦ୍ୟୁତ୍-ଶକ୍ତି ଉତ୍ପାଦନର ବୃଦ୍ଧି କରିବା ନିମନ୍ତେ ଏବେ ରାଜନୀତିଜ୍ଞ, ଯୋଜନା ବିଶାରଦ, ଶିଳ୍ପ ବିଶେଷଜ୍ଞ ଓ ରାଜ୍ୟ ବିଦ୍ୟୁତ୍ ବୋର୍ଡ଼ଙ୍କର ସାମୂହିକ ଉଦ୍ୟମ ଅତ୍ୟାବଶ୍ୟକ ହେଲଣି । ୧୯୮୦-୯୦ ଦଶନ୍ଧି ଓଡ଼ିଶାର ବିଦ୍ୟୁତ୍ ଉତ୍ପାଦନ କ୍ଷେତ୍ରରେ ଏକ ଅବିସ୍ମରଣୀୟ ଦଶନ୍ଧି ହୋଇ ରହିବ ବୋଲି ଆଶା ନିରର୍ଥକ ନ ହେଉ ।

—

ସୁପରିଣ୍ଟେଣ୍ଡିଂ ଇଞ୍ଜିନିୟର

## ଅନୁନ୍ନତ ଶ୍ରେଣୀ ଲୋକଙ୍କ ଶିକ୍ଷାର ପ୍ରସାର ପାଇଁ ପ୍ରତି ପଞ୍ଚାୟତରେ ଆବାସିକ ସ୍କୁଲ୍ ଖୋଲାଯିବ

ଅନୁନ୍ନତ ଶ୍ରେଣୀ ଲୋକମାନଙ୍କର ଶିକ୍ଷାର ପ୍ରସାର ପାଇଁ ଆସନ୍ତା ବର୍ଷଠାରୁ ପ୍ରତ୍ୟେକ ପଞ୍ଚାୟତରେ ଗୋଟିଏ ଲେଖାଏଁ ଆବାସିକ ସ୍କୁଲ ଖୋଲାଯିବ ବୋଲି ହରିଜନ ଓ ଆଦିବାସୀ କଲ୍ୟାଣ ମନ୍ତ୍ରୀ ଶ୍ରୀ ରାମଚନ୍ଦ୍ର ଉଲକା ପ୍ରକାଶ କରିଛନ୍ତି

ଶ୍ରୀ ଉଲକା କୋରାପୁଟ ଜିଲ୍ଲା ଅନ୍ତର୍ଗତ ମାଳବେଲ ଗାଁଠାରେ ଏକ ସଭାରେ ଏ କଥା ପ୍ରକାଶ କରିବା ସଙ୍ଗେ ସଙ୍ଗେ ଆଦିମ ଲୋକଙ୍କ ଉନ୍ନତି କଳ୍ପେ ଆସନ୍ତା ବର୍ଷଠାରୁ ଆଉ ୯ଟି ମାଇକ୍ରୋ ଯୋଜନା କାର୍ଯ୍ୟକାରୀ କରାଯିବ ବୋଲି ସୂଚନା ଦେଇଥିଲେ । ଏହି ସଭାରେ ଶ୍ରୀ ଉଲାକା ୧୮ ଜଣଙ୍କୁ ବାର୍ଦ୍ଧକ୍ୟ ଭତ୍ତା ଓ ୩୦ଟି ପରିବାରଙ୍କୁ ଦରିଦ୍ରତମ ପରିବାରଙ୍କ ଅର୍ଥନୈତିକ ଥଇଥାନ କାର୍ଯ୍ୟକ୍ରମ ଅନୁଯାୟୀ ଆର୍ଥିକ ସାହାଯ୍ୟ ବଣ୍ଟନ କରିଥିଲେ ।

ଏହି ଗସ୍ତ କାଳରେ ଶ୍ରୀ ଉଲାକା ସୁନାବେଡା ମିଗ କାରଖାନା କର୍ତ୍ତୃପକ୍ଷଙ୍କ ସହିତ ସ୍ଥାନୀୟ ଲୋକଙ୍କ ନିଯୁକ୍ତି ତଥା ଶ୍ରମିକ ସମସ୍ୟା ସମ୍ପର୍କରେ ଆଲୋଚନା କରିଥିଲେ । ସୁନାବେଡାଠାରେ ଅନୁଷ୍ଠିତ ହେବାକୁ ଯାଉଥିବା ଲେଖକ ସମ୍ମିଳନୀ ପାଇଁ ବିଭିନ୍ନ ବ୍ୟବସ୍ଥା ସମ୍ପର୍କରେ ମଧ୍ୟ ସେ ବୁଝିଥିଲେ । ଦାମନଯୋଡ଼ିଠାରେ ଶ୍ରୀ ଉଲାକା ସେଠାର ବାସଚ୍ୟୁତ ପରିବାରଙ୍କୁ ଯେପରି ସୁବିଧାରେ କ୍ଷତିପୂରଣ ମିଳିପାରିବ, ସେ ବିଷୟରେ ସ୍ଥାନୀୟ କର୍ତ୍ତୃପକ୍ଷଙ୍କୁ ନିର୍ଦ୍ଦେଶ ଦେଇଥିଲେ ।

ବିଧାନ ସଭା ସଦସ୍ୟ ଶ୍ରୀ ନୃସିଂହାନନ୍ଦ ବ୍ରହ୍ମା ଓ ସଦସ୍ୟା ଶ୍ରୀମତୀ ଚନ୍ଦ୍ରମା ସାନ୍ତା ମନ୍ତ୍ରୀଙ୍କ ସହିତ ଗସ୍ତ କରିଥିଲେ ।

# କୀର୍ତ୍ତିଶାଳିନୀ ନାରୀ

ଡା: ନବୀନ କୁମାର ସାହୁ

> ଧର୍ମ ଓ ସଂସ୍କୃତିର ଅଭିବୃଦ୍ଧି ନିମନ୍ତେ ଅତୀତରେ ବହୁ ମହିୟସୀ ମହିଳା ନାନାବିଧ ସୁକୀର୍ତ୍ତି କରିଯାଇଛନ୍ତି । ଆଗାମୀ ବଂଶଧରଙ୍କୁ ସେହି ସୁକୀର୍ତ୍ତିରାଶି ସ୍ମରଣ କରାଇ ଦେବା ଏହି ନିବନ୍ଧର ଉଦ୍ଦେଶ୍ୟ ।

ଅତୀତରେ ଓଡ଼ିଶାର ବହୁ ମହିୟସୀ ମହିଳା ଧର୍ମ ଓ ସଂସ୍କୃତିର ଅଭିବୃଦ୍ଧି ନିମନ୍ତେ ନାନାବିଧ ସୁକୃତି କରିଯାଇଅଛନ୍ତି । ସେଗୁଡ଼ିକର ବିବରଣ ପ୍ରାଚୀନ ସାହିତ୍ୟ, ଅଭିଲେଖ ଓ ଲୋକକଥାରୁ ମିଳି ପାରୁଛି । ଏଠାରେ ସାହିତ୍ୟ ଓ ଲୋକ କଥାକୁ ଛାଡ଼ି କେବଳ ଶିଳା-ଲେଖ ଓ ତାମ୍ରଲେଖରେ ଯେଉଁ ନାରୀମାନଙ୍କର କୀର୍ତ୍ତି କଳାପ ବର୍ଣ୍ଣିତ ହୋଇଛି ସେମାନଙ୍କ ପ୍ରସଙ୍ଗ ଅବତାରଣା କରାଯାଉଅଛି । ଏହି ଆଲୋଚନା ଖାରବେଳଙ୍କ କାଳରୁ (ଖ୍ରୀ : ପୂ : ପ୍ରଥମ ଶତକ) ତ୍ରୟୋଦଶ ଶତାବ୍ଦୀ ପର୍ଯ୍ୟନ୍ତ ସମୟ ମଧ୍ୟରେ ସୀମିତ ।

ବଜିର ଘର ରାଣୀ—ହାତୀଗୁମ୍ଫା ଅଭିଲେଖରେ ଖାରବେଳ ନିଜର ଦୁଇଜଣ ରାଣୀ ଥିବା ଉଲ୍ଲେଖ କରି ଅଛନ୍ତି ଏବଂ ସେ ଦୁହିଁଙ୍କୁ ବଜିର ଘର ରାଣୀ ଓ ସିଂହ ପଥ ରାଣୀ ନାମରେ ଅଭିହିତ କରିଛନ୍ତି । ତାହା ରାଣୀ ଦୁହିଁଙ୍କର ସାଂକେତିକ ନାମ । 'ବଜିର ଘର' କୁ 'ହୀରକ ମହଲ' ବୋଲି ଅର୍ଥ କରାଯାଇ ପାରେ ।

ଉଦୟଗିରିର ମଞ୍ଚପୁରୀ ଗୁମ୍ଫାର ଉପର ମହଲରେ ବଜିର ଘର ରାଣୀଙ୍କର ଅଭିଲେଖ ମିଳେ । ତହିଁରେ ସେ ନିଜକୁ ଚକ୍ରବର୍ତ୍ତୀ ଖାରବେଳଙ୍କର ଅଗ୍ର ମହିଷୀ ରୂପେ ଉଲ୍ଲେଖ କରି ଅଛନ୍ତି । ସେ ଥିଲେ ରାଜା ହସ୍ତିସିଂହଙ୍କ କନ୍ୟା ଏବଂ ରାଜ ଲଲାର୍କଙ୍କର ନାତୁଣୀ । ଅଭିଲେଖରୁ ଜଣାଯାଏ ଯେ ଜୈନଧର୍ମ ପ୍ରତି ତାଙ୍କର ଗଭୀର ଆସକ୍ତି ଥିଲା । ମଞ୍ଚପୁରୀ ଗୁମ୍ଫାର ଉପର ମହଲରେ ଥିବା ପ୍ରକୋଷ୍ଠମାନ ସେ କଳିଙ୍ଗର ଶ୍ରମଣମାନଙ୍କର ବର୍ଷାବାସ ନିମନ୍ତେ ନିଜ ବ୍ୟୟରେ ଖନନ କରାଇଥିଲେ । ବଜିର ଘର ରାଣୀଙ୍କ ନିର୍ମିତ ପ୍ରକୋଷ୍ଠଗୁଡ଼ିକର ବାରଣ୍ଡା-ଛାତ ବର୍ତ୍ତମାନ ଭାଙ୍ଗି ପଡ଼ିଛି । ମାତ୍ର କାଳ ବକ୍ଷରେ ତାଙ୍କର କୀର୍ତ୍ତି ଅମର ହୋଇ ରହିଛି ।

ସିଂହପଥ ରାଣୀ—ଖାରବେଳଙ୍କ ଦ୍ୱିତୀୟା ମହିଷୀ ସିଂହପଥ ରାଣୀଙ୍କର ଧର୍ମ ଓ ସଂସ୍କୃତି ସଂପର୍କରେ ଉଦାର ମନୋଭାବ ଥିବା ହାତୀଗୁମ୍ଫା ଅଭିଲେଖରୁ ସ୍ପଷ୍ଟ ଜଣାଯାଏ । ଯେଉଁ ରହସ୍ୟମୟ ପରିସ୍ଥିତିରେ ଖାରବେଳ ସେହି ରାଣୀଙ୍କୁ ବିହାର କରିଥିଲେ ତାହାର ବିବରଣ ରାଣୀଗୁମ୍ଫାର ଉପର ମହଲରେ ଅଙ୍କିତ ହୋଇଅଛି । ତାଙ୍କର ଉଦାର ନୀତି ଦ୍ୱାରା ପ୍ରଭାବିତ ହୋଇ ଖାରବେଳ ନିଜେ ଜୈନ ହେଲେ ହେଁ ଅନ୍ୟ ସମସ୍ତ ଧର୍ମ ସଂପ୍ରଦାୟ ପ୍ରତି ସମଭାବ ପୋଷଣ କରିଥିଲେ । ରାଣୀଙ୍କ ସଦିଚ୍ଛା ପ୍ରତି ସମ୍ମାନ ପ୍ରଦର୍ଶନ କରି ଖାରବେଳ କୁମାରୀ ପର୍ବତ (ଉଦୟଗିରି) ନିକଟରେ ଜୈନ ଯତି, ବ୍ରାହ୍ମଣ୍ୟ ତପସ୍ୱୀ ଏବଂ ବୌଦ୍ଧ ସଂଘାୟନ ଆଦିଙ୍କ ଆଶ୍ରୟ ଓ ବିଶ୍ରାମ ନିମନ୍ତେ ବିଶାଳ ହର୍ମ୍ୟ ନିର୍ମାଣ କରିଥିଲେ । ସିଂହପଥ ରାଣୀ କଳିଙ୍ଗର ଉଦାର ଧର୍ମନୀତିର ପ୍ରତୀକ ।

ବରୀୟା ଓ ଶିଣା—ଉଦୟଗିରିର ଜମ୍ବୁକ ଗୁମ୍ଫା ଏବଂ ସର୍ପ ଗୁମ୍ଫା ଯଥାକ୍ରମେ ବରାୟା ଓ ଶିଣା ନାମ୍ନୀ ଦୁଇଜଣ ମହିଳାଙ୍କର କୀର୍ତ୍ତି । ବରାୟା ହେଉଛନ୍ତି ଖାରବେଳଙ୍କର ପ୍ରଧାନମନ୍ତ୍ରୀ (ମହାମଦ) ନାକୀୟଙ୍କର ସ୍ତ୍ରୀ ଏବଂ ଶିଣା କର୍ମସଚିବଙ୍କର ପତ୍ନୀ । ସେ ଦୁହେଁ ନିଜ ନିଜ ସ୍ୱାମୀଙ୍କ ସହିତ ମିଳିତ ଭାବରେ ଉପରୋକ୍ତ ଗୁମ୍ଫା ଦ୍ୱୟ ଜୈନ ଶ୍ରମଣଙ୍କ ନିମନ୍ତେ ଖନନ କରାଇଥିବା ଅଭିଲେଖରୁ ମିଳେ ।

କଲ୍ୟାଣୀ ଦେବୀ—ଶୈଳୋଦ୍ଭବ ରାଜା ଦ୍ୱିତୀୟ ଧର୍ମରାଜ (ଖ୍ରୀ : ୬୯୫—୭୨୫) ଙ୍କର ରାଣୀ ହେଉଛନ୍ତି କଲ୍ୟାଣୀ ଦେବୀ । ଜୈନ ଧର୍ମ ପ୍ରତି ତାଙ୍କର ବିଶେଷ ନିଷ୍ଠା ଓ ଅନୁରାଗ ଥିଲା । ତାଙ୍କର ସ୍ୱାମୀ ବୈଦିକ ବ୍ରାହ୍ମଣ୍ୟ ଧର୍ମର ପୃଷ୍ଠପୋଷକତା କରୁଥିବା ବେଳେ ସେ ଜୈନ ଧର୍ମର ଅଭିବୃଦ୍ଧି ନିମନ୍ତେ ବହୁ ପ୍ରଯତ୍ନ

କରୁଥିଲେ । ସେହି ଉଦ୍ଦେଶ୍ୟରେ ସେ ଜୈନ ସିଦ୍ଧ ନାସିଚନ୍ଦ୍ରଙ୍କର ପ୍ରଖ୍ୟାତ ଶିଷ୍ୟ ଏକଶାଟଧାରୀ ପ୍ରଭୁଦ୍ଧ ଚନ୍ଦ୍ରଙ୍କୁ ବହୁ ପରିମାଣରେ ଭୂମି ଦାନକରି ଧର୍ମ ଓ ସାଂସ୍କୃତିକ ବିକାଶ ନିମନ୍ତେ ଉତ୍ସାହିତ କରିଥିଲେ । ଖ୍ରୀଷ୍ଟୀୟ ଅଷ୍ଟମ ଶତକରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଜୈନ ଧର୍ମର ଯେଉଁ ଅଭ୍ୟୁଦୟ ଘଟିଥିଲା ତାହା ମୂଳରେ କଲ୍ୟାଣ ଦେବୀଙ୍କର ଆନ୍ତୋଳନ ଓ ପ୍ରେରଣା ବିଶେଷ କାର୍ଯ୍ୟ କରିଥିଲା ।

ବସ୍ତା ଦେବୀ—ଯାଜପୁରଠାରେ ଏକ ପ୍ରାଚୀନ ଚାମୁଣ୍ଡା ବିଗ୍ରହର ପୀଠ ଦେଶରେ ରାଣୀ ବସ୍ତା ଦେବୀଙ୍କର ଅଭିଲେଖ ମିଳେ । ସେ ହେଉଛନ୍ତି ଭୌମବଂଶର ପ୍ରଥମ ନରପତି କ୍ଷେମଙ୍କର ଦେବଙ୍କ ରାଣୀ । ସେ ଉପରୋକ୍ତ ଚାମୁଣ୍ଡା ବିଗ୍ରହ ସ୍ୱନିର୍ମିତ ମନ୍ଦିରରେ ପ୍ରତିଷ୍ଠା କରାଇଥିଲେ । ମନ୍ଦିରଟି ବର୍ତ୍ତମାନ ନିଶ୍ଚିହ୍ନ ହୋଇଛି, ମାତ୍ର ବସ୍ତାଦେବୀଙ୍କର କୀର୍ତ୍ତି ବିଗ୍ରହ ଗାତ୍ରରେ ଲିପିବଦ୍ଧ ହୋଇ ରହିଅଛି ।

ମାଧବଦେବୀ—ଭୌମ ରାଜା ପ୍ରଥମ ଶୁଭାକର ଦେବ (ଖ୍ରୀ : ୭୮୦—୮୦୦) ଙ୍କ ରାଣୀ ହେଉଛନ୍ତି ମାଧବଦେବୀ । ସ୍ୱାମୀ ଜଣେ ପରମ ବୌଦ୍ଧ ହେଲେ ହେଁ ସେ ନିଜେ ଥିଲେ ଶିବଙ୍କର ପରମ ଭକ୍ତ । ଯାଜପୁର ଠାରେ ସେ ମାଧବେଶ୍ୱର ଶିବ ମନ୍ଦିର ନିର୍ମାଣ କରି ତାହା ନିକଟରେ ଏକ ପୁଷ୍କରିଣୀ ଖନନ କରାଇଥିଲେ ଏବଂ ପୁଷ୍କରିଣୀ କୂଳରେ ଦୈନିକ ହାଟ ବସାଇ ଥିଲେ । ତାଙ୍କ ନିର୍ମିତ ମାଧବେଶ୍ୱର ଶିବ ମନ୍ଦିର ହଂସେଶ୍ୱର ମନ୍ଦିର ନାମରେ ପରିଚିତ ଏବଂ ବର୍ତ୍ତମାନ ତାହା ଜୀର୍ଣ୍ଣ ଅବସ୍ଥାରେ ପଡ଼ି ରହିଛି । ମନ୍ଦିର ଗାତ୍ରରେ ଉତ୍କୀର୍ଣ୍ଣ ଅଭିଲେଖ ଏବେ ସୁଦ୍ଧା ମାଧବଦେବୀଙ୍କର କୀର୍ତ୍ତି ଉଜ୍ଜୀବିତ କରି ରଖିଅଛି ।

ମୋହିନୀ ଦେବୀ—ଭୁବନେଶ୍ୱରକୁ ଏକ ଶାକ୍ତ କ୍ଷେତ୍ରରେ ପରିଣତ କରିବା ପାଇଁ ସାହସିକ ପଦକ୍ଷେପ ନେଇଥିଲେ ମୋହିନୀ ଦେବୀ । ସେ ଥିଲେ ଭୌମ ରାଜା ଦ୍ୱିତୀୟ ଶିବକର ଦେବ (ଖ୍ରୀ : ୮୦୦—୮୨୦)ଙ୍କର ରାଣୀ । ଓଡ଼ିଶାରେ ତାନ୍ତ୍ରିକ ବୌଦ୍ଧ ଧର୍ମର ଅଭିବୃଦ୍ଧି କାଳରେ ସେ ତାନ୍ତ୍ରିକ ଶୈବ ଧର୍ମର ମୂଳ ଭିତ୍ତି ଦୃଢ଼ କରି ସାଂସ୍କୃତିକ କ୍ଷେତ୍ରରେ ଏକ ନୂତନ ଅବଦାନ ଦେଇ ଯାଇଅଛନ୍ତି । ବିନ୍ଦୁସାଗରର ଦକ୍ଷିଣ ତୀରରେ ଥିବା ଶାକ୍ତ ମନ୍ଦିର ତାଙ୍କ ଦ୍ୱାରା ନିର୍ମିତ ଏବଂ ତାଙ୍କ ନାମରେ ନାମିତ । ମୋହିନୀ ମନ୍ଦିର ଏବଂ ତାହାର ଅବ୍ୟବହିତ ପରେ ନିର୍ମିତ ବୈତାଳ ଦେଉଳ ଓଡ଼ିଶାରେ ଶାକ୍ତବାଦର ମୁଖ୍ୟ ପୀଠ ରୂପେ ପ୍ରଖ୍ୟାତ ଏବଂ ତାହା ରାଣୀ ମୋହିନୀଙ୍କର ଶାକ୍ତ ଧର୍ମ ପୃଷ୍ଠପୋଷକତାର ସ୍ୱାକ୍ଷର ବହିଛନ୍ତି ।



ତ୍ରିଭୁବନ ମହାଦେବୀ—ଭୌମରାଜା ପ୍ରଥମ ଶାନ୍ତିକର ଦେବ (ଖ୍ରୀ : ୮୨୦—୮୩୫) ଙ୍କ ରାଣୀ ଗୋସ୍ୱାମିନୀ ଦେବୀ ଶେଷ ଜୀବନରେ ଭୌମ ସିଂହାସନ ଆରୋହଣ କରି ତ୍ରିଭୁବନ ମହାଦେବୀ ନାମରେ ପ୍ରଖ୍ୟାତା ହୋଇଥିଲେ । ସେଥିଲେ ନଗୋଦ୍ଭବ ବଂଶୀୟା-ସମ୍ଭବତଃ ଶୈଳୋଦ୍ଭବ ବଂଶର କନ୍ୟା । ତାଙ୍କ ସ୍ୱାମୀଙ୍କ ମୃତ୍ୟୁପରେ ସ୍ୱାମୀଙ୍କ ଅଗ୍ରଜ ଦ୍ୱିତୀୟ ଶିବକର ଦେବ (ଓ ମୋହିନୀ ଦେବୀଙ୍କ)ଙ୍କ ପୁତ୍ର ଦ୍ୱିତୀୟ ଶୁଭାକର ଏବଂ ନିଜ ପୁତ୍ର ତୃତୀୟ ଶୁଭାକରଙ୍କ ମଧ୍ୟରେ ଭୌମ ସିଂହାସନ ପ୍ରାପ୍ତି ପାଇଁ ଘୋର ବିବାଦ ସୃଷ୍ଟି ହୋଇଥିଲା । ଦ୍ୱିତୀୟ ଶୁଭାକର ଜୟଯୁକ୍ତ ହୋଇ ୮୩୬ ଖ୍ରୀ : ବେଳକୁ ସିଂହାସନ ଅଧିକାର କରିଥିଲେ । ମାତ୍ର ଗୃହ ବିବାଦର ଅବସାନ ହେଲାନାହିଁ ଏବଂ ୮୩୮ ଖ୍ରୀ : ରେ ଦ୍ୱିତୀୟ ଶୁଭାକର ମୃତ୍ୟୁ ମୁଖରେ ପଡ଼ିଲେ । ତାହାପରେ ତୃତୀୟ ଶୁଭାକର ଦେବ ଭୌମ ସିଂହାସନ ଲାଭ କରି ମାତ୍ର ଛଅ ବର୍ଷ ଶାସନ କଲାପରେ ଅପୁତ୍ରିକ ହୋଇ ମୃତ୍ୟୁ ବରଣ କଲେ । ବହୁକାଳ ଧରି ଚାଲିଥିବା ଗୃହ ବିବାଦ ଫଳରେ ସମଗ୍ର ଭୌମ ରାଜ୍ୟରେ ଭୀଷଣ ଅରାଜକତା ସୃଷ୍ଟି ହୋଇଥିଲା । ସେହି ଘଡ଼ିସନ୍ଧି ବେଳେ ବିଧବା ରାଜମାତା ସିଂହାସନ ଆରୋହଣ କରି ନିଜକୁ ତ୍ରିଭୁବନ ମହାଦେବୀ ନାମରେ ଘୋଷଣା କରିଥିଲେ । ଅଳ୍ପକାଳ ଶାସନ ମଧ୍ୟରେ (ଖ୍ରୀ : ୮୪୫—୮୫୦) ସେ ରାଜ୍ୟରେ ସୁଖ, ଶାନ୍ତି ଓ ସମୃଦ୍ଧି ଫେରାଇ ଆଣି ବିଶେଷ ଖ୍ୟାତି ଅର୍ଜନ କରିଥିଲେ । ପରବର୍ତ୍ତୀ କାଳରେ ଭୌମ ଶାସନ ପତ୍ର ରଚୟିତା କବି ଓ ପଣ୍ଡିତମାନେ ତାଙ୍କୁ ଜଣେ ଆଦର୍ଶ ନାରୀ ଓ ଆଦର୍ଶ ଶାସକ ରୂପେ ବର୍ଣ୍ଣନା କରି ପୃଥ୍ୱୀଭାର ବହନ କରିଥିବା ଶେଷ-ନାଗଙ୍କ ସହିତ ତୁଳନା କରିଅଛନ୍ତି । ତ୍ରିଭୁବନ ମହାଦେବୀ ଏକାମ୍ରଠାରେ ତ୍ରିଭୁବନେଶ୍ୱର ମନ୍ଦିର ନିର୍ମାଣ କରିଥିବା ମନେହୁଏ । ଏକାମ୍ର ପୁରାଣରେ ସେହି ମନ୍ଦିର କର୍ଣ୍ଣସୁବର୍ଣ୍ଣର ରାଜା ଶଶାଙ୍କଙ୍କ ଦ୍ୱାରା ନିର୍ମିତ ହୋଇଥିବା ଯେଉଁ ବର୍ଣ୍ଣନା ଅଛି ତାହା ପରବର୍ତ୍ତୀ କାଳରେ ପ୍ରକ୍ଷିପ୍ତ କରାହୋଇଥିବା ସ୍ପଷ୍ଟ ସୂଚନା ମିଳେ । ତ୍ରିଭୁବନ ମହାଦେବୀ ଥିଲେ ହରି ଓ ହରଙ୍କ ଉପାସିକା ଏବଂ ତ୍ରିଭୁବନେଶ୍ୱରଙ୍କ ପୂଜାରେ ହରିହରଙ୍କ ଧାର୍ମିକ ସମୀକରଣ ରୂପାନ୍ତର କରିଥିଲା । ଆଧୁନିକ ଭୁବନେଶ୍ୱର ତ୍ରିଭୁବନେଶ୍ୱରଙ୍କ ନାମରେ ନାମିତ ।

ହୀରା ମହାଦେବୀ—ଗୋସ୍ୱାମିନୀ ତ୍ରିଭୁବନ ମହାଦେବୀ ନିଜ ନାତି ଦ୍ୱିତୀୟ ଶାନ୍ତିକର ଦେବଙ୍କୁ ପ୍ରାୟ ୮୫୦ ଖ୍ରୀ : ରେ ରାଜ୍ୟଭାର ଅର୍ପଣ କରି ସ୍ୱଇଚ୍ଛାରେ ରାଜନୀତି କ୍ଷେତ୍ରରୁ ଅପସରି ଯାଇଥିଲେ । ଦ୍ୱିତୀୟ ଶାନ୍ତିକର ଦେବୀଙ୍କ ରାଣୀ ହେଉଛନ୍ତି ହୀରା ମହାଦେବୀ । ସେ ସ୍ୱାମୀଙ୍କ ମୃତ୍ୟୁପରେ ଅଳ୍ପକାଳ ନିମନ୍ତେ ଭୌମ

ସିଂହାସନ ଆରୋହଣ କରିଥିଲେ । ଭାର୍ଗବୀ କୂଳସ୍ଥ ହୀରାପୁର ଗ୍ରାମ ତାଙ୍କ ନାମରେ ନାମିତ । ସମ୍ଭବତଃ ସେହି ଗ୍ରାମର ଚଉଷଠି ଯୋଗିନୀ ମନ୍ଦିର ହେଉଛି ତାଙ୍କର ଅକ୍ଷୟ କୀର୍ତ୍ତି ।

**ଗୌରୀ ମହାଦେବୀ**—ଭୌମବଂଶୀ ରାଜା ପଞ୍ଚମ ଶୁଭାକର ଦେବଙ୍କର ପ୍ରଥମା ମହିଷୀ ହେଉଛନ୍ତି ଗୌରୀ ମହାଦେବୀ । ଭୁବନେଶ୍ୱରରେ ଥିବା ବିଖ୍ୟାତ ଗୌରୀ ମନ୍ଦିର ତାଙ୍କ ଦ୍ୱାରା ନିର୍ମିତ ହୋଇଥିବା କୁହାଯାଏ । ଗୌରୀ ମହାଦେବୀ ସ୍ୱାମୀଙ୍କ ମୃତ୍ୟୁପରେ କିଛିକାଳ ଭୌମ ରାଜ୍ୟ ଶାସନ କରିଥିଲେ । ତାହାପରେ ତାଙ୍କର ଦୁହିତା ଦଣ୍ଡୀମହାଦେବୀ ପ୍ରାୟ ଦଶବର୍ଷ ଭୌମ ସିଂହାସନରେ ଅଧିରୂଢ଼ା ହୋଇଥିଲେ । ଦଣ୍ଡୀ ମହାଦେବୀଙ୍କ ଅକାଳ ବିୟୋଗ ପରେ ପଞ୍ଚମ ଶୁଭାକରଙ୍କ ଦ୍ୱିତୀୟା ରାଣୀ ବକୁଳ ମହାଦେବୀ ଦୀର୍ଘକାଳ ଶାସନ କାର୍ଯ୍ୟ ପରିଚାଳନା କରିଥିଲେ । ତାଙ୍କ ପରେ ଭୌମ ରାଜ୍ୟର ଶାସନ ଦାୟିତ୍ୱ ଗ୍ରହଣ କରିଥିଲେ ଧର୍ମା ମହାଦେବୀ । ସେ ହେଉଛନ୍ତି ପଞ୍ଚମ ଶୁଭାକର ଦେବଙ୍କ ବଡ଼ଭାଇ ତୃତୀୟ ଶାନ୍ତିକର ଦେବଙ୍କ ବିଧବା ରାଣୀ । ପ୍ରାୟ ୯୭୫ ଖ୍ରୀ : ରେ ତାଙ୍କର ଦେହାନ୍ତ ହେବା ପରେ ଭୌମ ଶାସିତ ରାଜ୍ୟ ସୋମବଂଶୀଙ୍କ ପ୍ରବର୍ଦ୍ଧମାନ ରାଜ୍ୟର ଅଙ୍ଗୀଭୂତ ହୋଇଥିଲା । ଦଣ୍ଡୀ ମହାଦେବୀ ଓ ଧର୍ମା ମହାଦେବୀ ନିର୍ମାଣ କରିଥିବା ଦଣ୍ଡୀଶ୍ୱର ମନ୍ଦିର ଓ ଧର୍ମେଶ୍ୱର ମନ୍ଦିର କାଳ ବକ୍ଷରେ ଲୀନ ହୋଇ-ଯାଇଅଛି ।

**କୋଳାବତୀ ଦେବୀ**—ସୋମବଂଶୀ ରାଜା ଦ୍ୱିତୀୟ ଯଯାତି ମହାଶିବଗୁପ୍ତଙ୍କର ରାଣୀ ହେଉଛନ୍ତି କୋଳାବତୀ-ଦେବୀ । ସେ ସୂର୍ଯ୍ୟବଂଶର କନ୍ୟାଥିଲେ, ମାତ୍ର ତାଙ୍କ ପିତାଙ୍କ ପରିଚୟ ଏ ପର୍ଯ୍ୟନ୍ତ ମିଳିପାରିନାହିଁ । ଭୁବନେଶ୍ୱର (ଏକାମ୍ର)ଠାରେ ବ୍ରହ୍ମେଶ୍ୱର ଶିବଙ୍କ ଉନ୍ନତ କଳାଯୁକ୍ତ ମନ୍ଦିର କୋଳାବତୀଦେବୀଙ୍କ ଦ୍ୱାରା ନିର୍ମିତ । ମନ୍ଦିର ନିର୍ମାଣକାଳରେ କୋଳାବତୀଙ୍କ ସୁପୁତ୍ର ଉଦ୍ୟୋତ କେଶରୀ ମହାଭବଗୁପ୍ତଙ୍କ ରାଜତ୍ୱର ଅଷ୍ଟାଦଶ ବର୍ଷ ଚାଲୁଥିଲା । ସେହି ବର୍ଷ (ପ୍ରାୟ ୧୦୬୦ଖ୍ରୀ:) ଖଣ୍ଡଗିରିଠାରେ ନବମୁନୀଗୁମ୍ଫା ଖନନ କରାଇଥିଲେ ଜୈନଆଚାର୍ଯ୍ୟ କୁଳଚନ୍ଦ୍ରଙ୍କର ଶିଷ୍ୟ ଆଚାର୍ଯ୍ୟ ଶୁଭଚନ୍ଦ୍ର । କୋଳାବତୀଦେବୀ ବ୍ରହ୍ମେଶ୍ୱର ମନ୍ଦିର ଗାତ୍ରରେ ଯେଉଁ ଅଭିଲେଖ ଦେଇ ଯାଇଥିଲେ ତାହା ଏବେ ଆଉ ମିଳିପାରୁ-ନାହିଁ । ସୌଭାଗ୍ୟବଶତଃ ତାହାର ଅବିକଳ ନକଲ ଲିପିବିଦ୍ ପ୍ରିନ୍‌ସେପ୍ ସାହେବଙ୍କ ଦ୍ୱାରା ୧୮୩୮ ସାଲରେ ପ୍ରକାଶିତ ହୋଇଥିଲା । ସେହି ଅଭିଲେଖରୁ କୋଳାବତୀଙ୍କ କୀର୍ତ୍ତିକଳାପ ସହିତ ସୋମବଂଶୀ ଶାସନର ବହୁ ତଥ୍ୟ ଜଣାପଡ଼େ ।

**ସୁରମା ଦେବୀ**—ଚୋଡ଼ଗଙ୍ଗଦେବଙ୍କ ତୃତୀୟ ପୁତ୍ର ଦ୍ୱିତୀୟ ରାଜରାଜଦେବଙ୍କ ରାଣୀ ଥିଲେ ସୁରମା ଦେବୀ । ରାଜରାଜଦେବଙ୍କ ମୃତ୍ୟୁପରେ ତାଙ୍କର ଅନୁଜ ଦ୍ୱିତୀୟ ଅନଙ୍ଗଭୀମ ଦେବଙ୍କ ଶାସନ କାଳରେ (ଖ୍ରୀ:୧୧୯୦-୧୧୯୮) ସୁରମାଦେବୀଙ୍କ ଭାଇ ସ୍ୱପ୍ନେଶ୍ୱର ଦେବ ଭୁବନେଶ୍ୱରଠାରେ ମେଘେଶ୍ୱର ଶିବମନ୍ଦିର ନିର୍ମାଣ କରିଥିଲେ । ସେହି ମନ୍ଦିର ନିର୍ମାଣରେ ସୁରମାଦେବୀଙ୍କର ସାହାଯ୍ୟ ଓ ପ୍ରେରଣା ନିହିତଥିବା ଜଣାଯାଏ । ସେତେବେଳେ ଦ୍ୱିତୀୟ ଅନଙ୍ଗ ଭୀମଦେବ ନିଆଳି ଗ୍ରାମରେ ଶୋଭନେଶ୍ୱର ଶିବଙ୍କ ମନ୍ଦିର ମଧ୍ୟ ନିର୍ମାଣ କରିଥିଲେ । ମେଘେଶ୍ୱର ଓ ଶୋଭନେଶ୍ୱର ମନ୍ଦିର ଗାତ୍ରରେ ଯେଉଁ ଦୁଇଟି ଅଭିଲେଖ ଉତ୍କୀର୍ଣ୍ଣ ହୋଇଅଛି ତାହାର ରଚୟିତା ହେଉଛନ୍ତି ସୁବିଖ୍ୟାତ କବି ଉଦୟନ । କବି ଜୟଦେବଙ୍କ ଗୀତଗୋବିନ୍ଦର ପ୍ରଥମ ଟୀକା 'ଭାବବିଭାବିନୀ' ଉଦୟନାଚାର୍ଯ୍ୟଙ୍କର କୃତି ।

**ଚନ୍ଦ୍ରିକା ଦେବୀ**—ସୁବିଖ୍ୟାତ ଗଜପତି ତୃତୀୟ ଅନଙ୍ଗଭୀମଦେବଙ୍କର ଏକମାତ୍ର କନ୍ୟା ହେଉଛନ୍ତି ଚନ୍ଦ୍ରିକାଦେବୀ । ଚୋଡ଼ଗଙ୍ଗ ଦେବଙ୍କ କାଳରୁ ଦୀର୍ଘ ଏକଶତବର୍ଷ ବ୍ୟାପି ଗଙ୍ଗବଂଶ ଓ କଳଚୁରୀ ବଂଶ ମଧ୍ୟରେ ଯେଉଁ ସଂଗ୍ରାମ ଚାଲିଥିଲା ତାହାର ଅବସାନ ଘଟିଥିଲା ତୃତୀୟ ଅନଙ୍ଗଭୀମଦେବଙ୍କ ରାଜତ୍ୱରେ—ଗଙ୍ଗ-ବଂଶର ବିଜୟ ଓ କଳଚୁରୀ ବଂଶର ପରାଜୟରେ । ସେହି ଐତିହାସିକ ଯୁଦ୍ଧପରେ କଳଚୁରୀ ପରମାର୍ଦ୍ଦି ଦେବଙ୍କ ସହିତ ଚନ୍ଦ୍ରିକାଦେବୀଙ୍କ ବିବାହ ସଂପନ୍ନ ହୋଇଥିଲା । ପରମାର୍ଦ୍ଦିଦେବ ଓ ଚନ୍ଦ୍ରିକାଦେବୀ ଉଭୟେ ନୃତ୍ୟ, ସଙ୍ଗୀତ କଳାରେ ପାରଦର୍ଶିତା ଅର୍ଜ୍ଜନ କରିଥିବା ଜଣାପଡ଼େ ।

ଅନଙ୍ଗଭୀମ ଦେବଙ୍କ ପୁତ୍ର ପ୍ରଥମ ନରସିଂହ ଦେବଙ୍କ ଶାସନକାଳରେ ପରମାର୍ଦ୍ଦିଦେବ ଥିଲେ ଓଡ଼ିଶା ସେନା-ବାହିନୀର ଜଣେ ପ୍ରଧାନ ସେନାନାୟକ । ସେ ବଙ୍ଗ ସୁଲତାନ ଇଖ୍‌ତିୟାର୍ ଉଦ୍ଦୀନ ୟୁଜ୍‌ବାକ୍‌ଙ୍କ ବିରୁଦ୍ଧରେ ଅଭିଯାନର ନେତୃତ୍ୱନେଇ ୧୨୫୫ ଖ୍ରୀ: ରେ ଯୁଦ୍ଧଭୂମିରେ ପ୍ରାଣ ବିସର୍ଜନ କରିଥିଲେ ।

ପ୍ରଥମ ନରସିଂହଦେବଙ୍କ ପୁତ୍ର ପ୍ରଥମ ଭାନୁଦେବଙ୍କ ରାଜତ୍ୱକାଳରେ ଚନ୍ଦ୍ରିକାଦେବୀ ୧୨୭୮ ଖ୍ରୀ: ରେ ଭୁବନେଶ୍ୱରଠାରେ ଅନନ୍ତବାସୁଦେବଙ୍କ ମନ୍ଦିର ନିର୍ମାଣ କରି ଅକ୍ଷୟ କୀର୍ତ୍ତି ଅର୍ଜନ କରି ଅଛନ୍ତି । ଶୈବକ୍ଷେତ୍ର ଭୁବନେଶ୍ୱରଠାରେ ତାହା ହେଉଛି ଏକମାତ୍ର ବୈଷ୍ଣବ ମନ୍ଦିର । ଅନନ୍ତବାସୁଦେବ ମନ୍ଦିର ଗାତ୍ରରେ ଚନ୍ଦ୍ରିକା-ଦେବୀଙ୍କର ଯେଉଁ ଅଭିଲେଖ ଉତ୍କୀର୍ଣ୍ଣ ହୋଇଥିଲା ତାହା ଇଂରେଜଙ୍କ ଓଡ଼ିଶା ଅଧିକାରପରେ କର୍ଣ୍ଣେଲ ଷ୍ଟୁଆର୍ଟ ବଳପୂର୍ବକ ନେଇ ଯାଇଥିଲେ । ତାହା ବର୍ତ୍ତମାନ ଲଣ୍ଡନ ମ୍ୟୁଜିୟମରେ ସଂରକ୍ଷିତ ହୋଇ ରହିଅଛି । ତାହାର ପ୍ଲାଷ୍ଟର ନକଲ ଭୁବନେଶ୍ୱର ଷ୍ଟେଟ୍ ମ୍ୟୁଜିୟମ୍‌ରେ ଏବଂ ସମ୍ବଲପୁର ବିଶ୍ୱବିଦ୍ୟାଳୟ ମ୍ୟୁଜିୟମ୍‌ରେ ସଂରକ୍ଷିତ ।

ପ୍ରତ୍ନତତ୍ତ୍ୱ ଉପଦେଷ୍ଟା

○○○

# ଓଡ଼ିଶାରେ ପର୍ଯ୍ୟଟନର ବିକାଶ

ଶ୍ରୀ ଯୁଗଳ କିଶୋର ପଟ୍ଟନାୟକ
ମନ୍ତ୍ରୀ
ପର୍ଯ୍ୟଟନ, କ୍ରୀଡ଼ା ଓ ସଂସ୍କୃତି, ଓଡ଼ିଶା

ପ୍ରାଚୀନ କାଳରୁ ପର୍ଯ୍ୟଟନ ଓଡ଼ିଶାରେ ବେଶ୍ ଲୋକପ୍ରିୟ ହୋଇ ଆସିଛି । କେଉଁ ପୁରାଣାତୀତକାଳରୁ ବହୁ ମୁନିଋଷି, ବିଦ୍ୱାନ ଓ ଜ୍ଞାନ ପିପାସୁଗଣ ପୃଥିବୀର ଏହି ପବିତ୍ର ଭୂଖଣ୍ଡ ପରିଦର୍ଶନରେ ଆସିଛନ୍ତି ।

ଧର୍ମ ଉପରେ ବିଶ୍ୱାସ ରଖି ଅତୀତରେ କଷ୍ଟ ସ୍ୱୀକାର କରି ଗୋଟିଏ ଦେଶରୁ ଅନ୍ୟ ଦେଶକୁ ପର୍ଯ୍ୟଟନ କରୁଥିଲେ । ମହାତ୍ମା ଶଙ୍କରାଚାର୍ଯ୍ୟ ଦେଶର ଚାରିକୋଣରେ ଚାରୋଟି ମଠ ପ୍ରତିଷ୍ଠା କରି ପ୍ରଥମେ "ଆନ୍ତର୍ଦେଶୀୟ ପର୍ଯ୍ୟଟନ"ର ମୂଳଦୁଆ ପକାଇଥିଲେ । ଭାରତର ଜନସାଧାରଣ ଧର୍ମ ତଥା ସାଂସ୍କୃତିକ ମେଳାରେ ଯୋଗ ଦେବା ପାଇଁ ମଧ୍ୟ ଯାତ୍ରା କରୁଛନ୍ତି । "ପଣ୍ଡା"ମାନେ ପୂର୍ବେ ବିଭିନ୍ନ ଧର୍ମପୀଠରେ ଆଧୁନିକ ପର୍ଯ୍ୟଟନର ଏଜେଣ୍ଟ ରୂପେ କାର୍ଯ୍ୟ କରୁଥିଲେ ଓ ସ୍ଥାନୀୟ "ଧର୍ମଶାଳା" ଓ "ସରାଇଘର" ପାନ୍ଥଶାଳା ରୂପେ ବ୍ୟବହୃତ ହେଉଥିଲା ।

ଶିଳ୍ପ ବିପ୍ଳବପରେ ବୈଜ୍ଞାନିକ ଜ୍ଞାନର ବିକାଶ ସାଧନ ହେବା ଦ୍ୱାରା ବିଶ୍ୱରେ ଦୂରତା କ୍ରମଶଃ ହ୍ରାସ ପାଉଛି । ଏହା ଛଡ଼ା ଦ୍ରୁତ ତଥା ସହଜସାଧ୍ୟ ଯାତ୍ରାର ସୁବିଧା ମିଳିବା ଫଳରେ ଗୋଟିଏ ଦେଶର ଲୋକ ପର୍ଯ୍ୟଟନ କରିବାର ଆଗ୍ରହ ପ୍ରକାଶ କରି, ଅବସର ବିନୋଦନ ଉଦ୍ଦେଶ୍ୟରେ, ବିଶ୍ରାମ ନେବା ଅଭିପ୍ରାୟରେ ଅଥବା ଦୁଃସାହସିକ କାର୍ଯ୍ୟ କରିବାର ଇପ୍ସା ନେଇ ସଂପ୍ରତି ବିଶ୍ୱର ବିଭିନ୍ନ ଦେଶ ପର୍ଯ୍ୟଟନ କରୁଛନ୍ତି ।

ଏହି ପରିପ୍ରେକ୍ଷୀରେ ଭାରତୀୟ ପର୍ଯ୍ୟଟନ ଶିଳ୍ପର ପ୍ରକାଣ୍ଡ ପ୍ରକୋଷ୍ଠରେ ଓଡ଼ିଶା ତା' ନିଜ ପାଇଁ ଏକ ସ୍ୱତନ୍ତ୍ର ସ୍ଥାନ ନିରୂପଣ କରି ପାରିଛି ।

ମୁଖ୍ୟତଃ କହିବାକୁ ଗଲେ ପର୍ଯ୍ୟଟନ ଚିନ୍ତାଧାରାରେ ଦୁଇଟି ଅଭିମୁଖ୍ୟ ଅନ୍ତର୍ନିହିତ । ସେଗୁଡ଼ିକ ହେଲା, (୧) ଆନ୍ତର୍ଜାତିକ କ୍ଷେତ୍ରରେ ଗୋଟିଏ ରାଷ୍ଟ୍ରରୁ ଅନ୍ୟ ରାଷ୍ଟ୍ରକୁ ଜନସାଧାରଣ ଗମନାଗମନ କରିବା ଓ (୨) ଆନ୍ତର୍ଦେଶୀୟ କ୍ଷେତ୍ରରେ ନିଜ ଦେଶ ମଧ୍ୟରେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ପରିଦର୍ଶନରେ ଯିବା । ଭାରତରେ କେନ୍ଦ୍ର ସରକାର ଆନ୍ତର୍ଜାତିକ ପର୍ଯ୍ୟଟନ ଶିଳ୍ପର ବିକାଶ ନିମନ୍ତେ ଦାୟିତ୍ୱ ଗ୍ରହଣ କରିଛନ୍ତି ଏବଂ ଆନ୍ତର୍ଦେଶୀୟ ପର୍ଯ୍ୟଟନ ଶିଳ୍ପର ଦାୟିତ୍ୱ ରାଜ୍ୟ ସରକାରଙ୍କ ଉପରେ ନ୍ୟସ୍ତ କରିଛନ୍ତି ।

ଅତୀତର ଅଭିଜ୍ଞତାରୁ ଜଣାଯାଉଛି ତୀର୍ଥ ଯାତ୍ରା କରିବା ପାଇଁ ଆନ୍ତର୍ଦେଶୀୟ ପର୍ଯ୍ୟଟକମାନେ ବହୁ ସଂଖ୍ୟାରେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାତ୍ରା କରି ଥାଆନ୍ତି । ତେଣୁ ରାଜ୍ୟର ଛଅଟି ତୀର୍ଥ ସ୍ଥଳୀରେ ସ୍ୱଳ୍ପ ଆୟସଂପନ୍ନ ପର୍ଯ୍ୟଟକମାନଙ୍କ ପାଇଁ ନୂତନ ପାନ୍ଥଶାଳା ଖୋଲିବା ପାଇଁ ରାଜ୍ୟ ସରକାର ନିଷ୍ପତ୍ତି ନେଉଛନ୍ତି । ସେଗୁଡ଼ିକ ହେଲା —ବାଲେଶ୍ୱର ଜିଲ୍ଲାର ଆରଡ଼ି, ପଞ୍ଚଲିଙ୍ଗେଶ୍ୱର ଓ ଚନ୍ଦନେଶ୍ୱର; କଟକ ଜିଲ୍ଲାର ଧବଳେଶ୍ୱର ଓ ଯାଜପୁର ଏବଂ କୋରାପୁଟ ଜିଲ୍ଲାର ଗୁପ୍ତେଶ୍ୱର । ଏହିସବୁ ସ୍ଥାନ ନିରୂପଣ କରାଯିବା ବେଳେ ପଡ଼ୋଶୀ ରାଜ୍ୟ ସହିତ ତାହାର ଦୂରତା ସଂପର୍କରେ ମଧ୍ୟ ବିଚାର ଆଲୋଚନା କରା ଯାଇଥିଲା ।

ରାଜ୍ୟରେ ଥିବା ଉଷ୍ଣ ପ୍ରସ୍ରବଣ ପର୍ଯ୍ୟଟକମାନଙ୍କ ପାଇଁ ଅନ୍ୟ ଏକ ବିଶେଷ ଆକର୍ଷଣ । ଅତ୍ରି, ତପ୍ତପାଣି, ଦେଉଳଝରି ଓ ତାରାବଳଠାରେ ଥିବା ଚାରୋଟି ଉଷ୍ଣ ପ୍ରସ୍ରବଣ ପର୍ଯ୍ୟଟକମାନଙ୍କୁ ବିଶେଷ ଭାବେ ଆକୃଷ୍ଟ କରୁଛି ବୋଲି ବିବେଚନା କରାଯାଉଛି । ଉଷ୍ଣ ପ୍ରସ୍ରବଣରୁ ନିର୍ଗତ ଜଳରେ ଚର୍ମରୋଗ ଆରୋଗ୍ୟ ନିମନ୍ତେ ଔଷଧ ସମ୍ବନ୍ଧୀୟ ଉପାଦାନ ରହିଛି । ଏହା ସଙ୍ଗେ ସଙ୍ଗେ ଏହି ଉଷ୍ଣ ପ୍ରସ୍ରବଣଗୁଡ଼ିକ ମଧ୍ୟରୁ ଅଧିକାଂଶ ଧର୍ମ ପୀଠସ୍ଥଳୀ ସହିତ ସଂଶ୍ଳିଷ୍ଟ । ଏଠାରେ ସ୍ୱାସ୍ଥ୍ୟକର ସ୍ଥାନ ନିମନ୍ତେ ଉପାଦାନ ରହିଥିଲେ ସୁଦ୍ଧା, ଏଗୁଡ଼ିକ ରାଜ୍ୟର ଛୋଟ ଛୋଟ ତୀର୍ଥସ୍ଥାନ ରୂପେ ବିବେଚିତ ହୋଇଛି । ଆବଶ୍ୟକ ଭିତ୍ତିଭୂମିକ ସୁବିଧା ଯୋଗାଇ ଦିଆଯିବା ପରେ ଏହି ତୀର୍ଥ କେନ୍ଦ୍ରଗୁଡ଼ିକୁ ବହୁ ସଂଖ୍ୟକ ପର୍ଯ୍ୟଟକ ଆସିବେ । ଅତ୍ରିଠାରେ ଗୋଟିଏ ସ୍ନାନାଗାର ନିର୍ମାଣ କରାଯାଇ ଏହି ବ୍ୟବସ୍ଥାର ଆରମ୍ଭ ହୋଇଛି । ଏହାର କାର୍ଯ୍ୟ ଖୁବ୍ ଜୋରରେ ଆଗେଇ ଚାଲିଛି ଏବଂ ଏହା ଷଷ୍ଠ ଯୋଜନାକାଳ ମଧ୍ୟରେ ସଂପୂର୍ଣ୍ଣ ହେବ । ଏହା ପରେ ପରେ ତପ୍ତପାଣିଠାରେ

ଗୋଟିଏ ଅନୁରୂପ ସ୍ନାନାଗାର ନିର୍ମାଣ ହେବ । ତପ୍ତପାଣିଠାରେ ଗୋଟିଏ ପାନ୍ଥନିବାସ ମଧ୍ୟ ନିର୍ମାଣ ହୋଇସାରିଛି ।

ରାଜ୍ୟରେ ସଡ଼କ ପଥରେ ସାଧାରଣତଃ ଯାତାୟତ କରା ଯାଇଥାଏ । ରାଜ୍ୟ ମଧ୍ୟରେ କେତେକ ଗୁରୁତ୍ୱପୂର୍ଣ୍ଣ ଜାତୀୟ ରାଜପଥ ରହିଛି । ଏହି ଜାତୀୟ ରାଜପଥଗୁଡ଼ିକ ରାଜ୍ୟର ସଡ଼କ ଯୋଗାଯୋଗ ପାଇଁ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଛି । କାରଣ ଏହା ଏକ ଦିଗରେ କଲିକତା ଓ ଅନ୍ୟ ଦିଗରେ ବମ୍ବେ ଓ ମାଡ୍ରାସ ସହିତ ସଂଯୋଗ କରାଯାଉଛି । ଏହି ଜାତୀୟ ରାଜପଥରେ ଯାନବାହନ ଚଳାଚଳ ସଂଖ୍ୟା ଯଥେଷ୍ଟ ଅଧିକ । ଅନ୍ୟାନ୍ୟ ରାଜ୍ୟରେ ଥିବା ଜାତୀୟ ରାଜପଥ ତୁଳନାରେ ଆମ ରାଜ୍ୟରେ ଥିବା ରାଜପଥରେ ଯାତାୟତ କରିବା ନିରୁତ୍ସାହଜନକ ଓ କ୍ଳେଶଦାୟକ, କାରଣ ଏହି ରାସ୍ତାରେ ଯାତ୍ରୀମାନଙ୍କ ପାଇଁ ଆବଶ୍ୟକ ସୁବିଧା-ସୁଯୋଗର ଅଭାବ ରହିଛି । ତେଣୁ ଜାତୀୟ ରାଜପଥରେ ଯେଉଁସବୁ ଅସୁବିଧା ରହିଛି, ତାହା ଦୂର କରି ପର୍ଯ୍ୟଟକମାନଙ୍କୁ ଆକର୍ଷଣ ପୀଠ ପରିଦର୍ଶନ କରାଇବା ଉଦ୍ଦେଶ୍ୟରେ ଉଦ୍ୟମ କରାଯାଉଛି । ସେମାନଙ୍କର ଯାତ୍ରା ଆମୋଦଦାୟକ ନିମନ୍ତେ ରାଜପଥର ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କରେ ଛୋଟ ଧରଣର ଭୋଜନାଳୟ ନିର୍ମାଣ କରିବା ପାଇଁ ନିଷ୍ପତ୍ତି ନିଆଯାଉଛି । ଏହି ଉଦ୍ଦେଶ୍ୟରେ ସଂପ୍ରତି ୧୯ଟି ସ୍ଥାନ ନିରୂପଣ କରାଯାଉଛି । ପ୍ରାରମ୍ଭିକ ପଦକ୍ଷେପ ସ୍ୱରୂପ ଷଷ୍ଠ ପଞ୍ଚବାର୍ଷିକ ଯୋଜନା କାଳରେ ଭଦ୍ରକ ଓ ଅନୁଗୁଳଠାରେ ଦୁଇଟି ଛୋଟ ଧରଣର ଭୋଜନାଳୟ ନିର୍ମାଣ କରାଯିବ ।

ଓଡ଼ିଶାରେ ସମଗ୍ର ଦେଶର ବୃହତ୍ତମ ଲବଣ ହ୍ରଦ 'ଚିଲିକା' ଖ୍ୟାତି ଲାଭ କରିଛି । ଏହି ହ୍ରଦଟି ଉଭୟ ଦେଶଜ ତଥା ବିଦେଶାଗତ ପକ୍ଷୀମାନଙ୍କ କ୍ରୀଡ଼ାସ୍ଥଳୀ । ଏହି ହ୍ରଦରେ ଥିବା ବିସ୍ତୀର୍ଣ୍ଣ ଜଳରାଶି ଜଳକ୍ରୀଡ଼ା ଓ ସମୁଦ୍ର ପର୍ଯ୍ୟଟନ ନିମନ୍ତେ ବିଶେଷ ଉପଯୋଗୀ । ଚିଲିକାରେ ପର୍ଯ୍ୟଟନ ନିମନ୍ତେ ବାଲୁଗାଁ ଓ ବରକୂଳଠାରେ କେତେକ ମୋଟର ଲଞ୍ଚ ରହିଛି । ଓଡ଼ିଶା ପର୍ଯ୍ୟଟନ ଉନ୍ନୟନ କର୍ପୋରେସନ ଲିମିଟେଡ୍ ବରକୂଳଠାରେ ଆଉ କେତୋଟି ମଟର ଲଞ୍ଚ ରଖିବା ପାଇଁ କାର୍ଯ୍ୟକ୍ରମ ସ୍ଥିର କରିଛନ୍ତି । ଏହା ସହିତ ସମନ୍ୱୟ ରକ୍ଷା କରିବା ପାଇଁ ବରକୂଳଠାରେ ଗୋଟିଏ ଜେଟି ନିର୍ମାଣ କରା ଯାଉଛି । ରମ୍ଭାଠାରେ ମଧ୍ୟ ଆଉ ଗୋଟିଏ ଜେଟି ନିର୍ମାଣ କରାଯିବ । ଏଠାରେ ଜଳକ୍ରୀଡ଼ା (ୟଟିଂ) ବ୍ୟବସ୍ଥା ପ୍ରବର୍ତ୍ତନ କରିବା ସରକାରଙ୍କ ସକ୍ରିୟ ବିଚାରାଧୀନ ରହିଛି । ସରକାରଙ୍କ ଅନୁରୋଧକ୍ରମେ ଗୁଲମାର୍ଗ-ସ୍ଥିତ ସ୍କିଇଂ ଓ ମାଉଣ୍ଟେନେରିଂ ଶିକ୍ଷାନୁଷ୍ଠାନର ଅଧ୍ୟକ୍ଷ ସର୍ଭେ କରିବା ପାଇଁ ଏହି ହ୍ରଦ ପରିଦର୍ଶନରେ ଆସିଥିଲେ ଓ ଏଠାରେ ଜଳକ୍ରୀଡ଼ାର ସମ୍ଭାବ୍ୟ ରହିଛି ବୋଲି ତାଙ୍କର ହୃଦବୋଧ ହୋଇଛି ।

ରାଜ୍ୟରେ ମଧ୍ୟବିତ୍ତ ତଥା ଉଚ୍ଚ ଆୟସଂପନ୍ନ ପର୍ଯ୍ୟଟକମାନଙ୍କ ନିମନ୍ତେ ପର୍ଯ୍ୟଟନ ଶିଳ୍ପ ଭୂମିର ବିକାଶ ସାଧନ କରିବା ଲାଗି ରାଜ୍ୟ ସରକାର ଓଡ଼ିଶା ପର୍ଯ୍ୟଟନ ଉନ୍ନୟନ କର୍ପୋରେସନ ଲିମିଟେଡ୍‌କୁ ଏହାର ଏଜେନ୍ସି ରୂପେ ବାଛିଛନ୍ତି । ଓଡ଼ିଶା ପର୍ଯ୍ୟଟନ ଉନ୍ନୟନ କର୍ପୋରେସନ ଲିମିଟେଡ୍ ସ୍ୱର୍ଣ୍ଣ ତ୍ରିଭୁଜ ଅର୍ଥାତ୍ ପୁରୀ, କୋଣାର୍କ ଓ ଭୁବନେଶ୍ୱର ମଧ୍ୟରେ ସଂପ୍ରତି ରହିଥିବା ପାନ୍ଥନିବାସଗୁଡ଼ିକର ସଂପ୍ରସାରଣ ଦାୟିତ୍ୱ ହାତକୁ ନେଇଛନ୍ତି । ପର୍ଯ୍ୟଟନର ବିଭିନ୍ନ ବିକାଶଶୀଳ କେନ୍ଦ୍ର-ଗୁଡ଼ିକରେ ପର୍ଯ୍ୟଟକମାନଙ୍କୁ ଅଧିକ ସଂଖ୍ୟକ ବାସସ୍ଥଳୀ ଯୋଗାଇ ଦେବା ଉଦ୍ଦେଶ୍ୟରେ ଗୋପାଳପୁର, ସୁନାବେଡ଼ା ଓ ରାଉରକେଲାଠାରେ ନୂତନ ପାନ୍ଥଶାଳା ନିର୍ମାଣ କରିବା ପାଇଁ ନିଷ୍ପତ୍ତି ନିଆଯାଉଛି ।

ଉଚ୍ଚ ଆୟ ସଂପନ୍ନ ପର୍ଯ୍ୟଟକମାନଙ୍କ ପାଇଁ ଓଡ଼ିଶା ପର୍ଯ୍ୟଟନ ଉନ୍ନୟନ କର୍ପୋରେସନ ଲିମିଟେଡ୍ ତିନୋଟି ବିଳାସପୂର୍ଣ୍ଣ ହୋଟେଲ ନିର୍ମାଣ କରିବେ । ସେଥି–ମଧ୍ୟରୁ ଗୋଟିଏ ପର୍ଯ୍ୟଟକମାନେ ପ୍ରଥମେ ବିମାନରୁ ଅବତରଣ କରୁଥିବା ସ୍ଥାନ ଭୁବନେଶ୍ୱରରେ, ଦ୍ୱିତୀୟଟି ରାଜ୍ୟର ପ୍ରଧାନ ବାଣିଜ୍ୟିକ ତଥା ସାଂସ୍କୃତିକ ପୀଠସ୍ଥଳୀ କଟକରେ ଓ ଅନ୍ୟଟି ଓଡ଼ିଶାର ଏକମାତ୍ର ପୋତାଶ୍ରୟ ପାରାଦୀପରେ ନିର୍ମାଣ କରାଯିବ । ଏହି ବିଳାସପୂର୍ଣ୍ଣ ହୋଟେଲର ନିର୍ମାଣ କାର୍ଯ୍ୟ ଷଷ୍ଠ ପଞ୍ଚବାର୍ଷିକ ଯୋଜନା-କାଳରେ ଶେଷ ହେବ । ଏହା ଛଡ଼ା ଭାରତ ପର୍ଯ୍ୟଟନ ଉନ୍ନୟନ କର୍ପୋରେସନ ଲିମିଟେଡ୍‌ଙ୍କ ସହାୟତାରେ କୋଣାର୍କଠାରେ ଗୋଟିଏ ଏବଂ ପୁରୀ ରାଜଭବନକୁ ପରିବର୍ତ୍ତନ କରାଯାଇ ଅନ୍ୟ ଗୋଟିଏ ବିଳାସପୂର୍ଣ୍ଣ ହୋଟେଲ ନିର୍ମାଣ କରାଯିବ ।

କେନ୍ଦ୍ରୀୟ ଉଦ୍ୟୋଗରେ ଭାରତ ପର୍ଯ୍ୟଟନ ଉନ୍ନୟନ କର୍ପୋରେସନ ଲିମିଟେଡ୍ ଭୁବନେଶ୍ୱରସ୍ଥିତ କଳିଙ୍ଗ ଅଶୋକ ହୋଟେଲର ୩୮ଟି ପ୍ରକୋଷ୍ଠକୁ ୧୦୦ଟି ପ୍ରକୋଷ୍ଠରେ ପରିଣତ କରିବା ପାଇଁ ଏବଂ ଶିମିଳି-ପାଳଠାରେ ଗୋଟିଏ ବନ ନିବାସ ପ୍ରତିଷ୍ଠା କରିବା ପାଇଁ ଯୋଜନା ରଖିଛନ୍ତି ।

ପର୍ଯ୍ୟଟକମାନଙ୍କୁ ଅଧିକ ଅବସର ବିନୋଦନ ସୁବିଧା ଯୋଗାଇ ଦେବା ଲାଗି ରାଜ୍ୟ ସରକାର କୋଣାର୍କଠାରେ ଶବ୍ଦାଲୋକ ବ୍ୟବସ୍ଥା ଏବଂ ଖଣ୍ଡଗିରି ଓ ଉଦୟଗିରିରେ ଦୋଳାୟପଥ ବ୍ୟବସ୍ଥା ଓ ବେଳାଭୂମି ସରଣୀ ନିକଟରେ ପର୍ଯ୍ୟଟକ ଗ୍ରାମ ଷଷ୍ଠ ଯୋଜନା କାଳରେ ପ୍ରବର୍ତ୍ତନ କରିବା ପାଇଁ କେନ୍ଦ୍ର ସରକାରଙ୍କ ଉପରେ ଚାପ ପକାଉଛନ୍ତି ।

ରାଜ୍ୟରେ ଖଣିଜ ତଥା ଜଙ୍ଗଲ ସଂପଦ ସାଙ୍ଗକୁ ପର୍ଯ୍ୟଟନ ସଂପଦ ମଧ୍ୟ ଭଣ୍ଡାର ହୋଇ ରହିଛି । ପର୍ଯ୍ୟଟନ ଶିଳ୍ପ ଦୃଷ୍ଟିକୋଣରୁ ଓଡ଼ିଶାର ଅବସ୍ଥିତି ବିଶେଷ ଗୁରୁତ୍ୱପୂର୍ଣ୍ଣ । କାରଣ ଓଡ଼ିଶାରେ ବିସ୍ତୀର୍ଣ୍ଣ ସମୁଦ୍ର ଉପକୂଳ, ପ୍ରାକୃତିକ ସଂପଦ, ଐତିହାସିକ କୀର୍ତ୍ତିରାଜି ଓ ତୀର୍ଥଯାତ୍ରା ନିମନ୍ତେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ରହିଛି । ରାଜ୍ୟକୁ ବହୁ ସଂଖ୍ୟକ ପର୍ଯ୍ୟଟକ ଆସିବା ନିମନ୍ତେ ଷଷ୍ଠ ଯୋଜନାକାଳରେ ପର୍ଯ୍ୟଟନ ଶିଳ୍ପର ବିକାଶ ସାଧନ ଲାଗି ଏକ ପ୍ରଗତିଶୀଳ ନୀତି ଅବଲମ୍ବନ କରାଯାଉଛି ।



# ଆଧୁନିକୀକରଣର ଆଗ ଓ ପଛ

ଅଧ୍ୟାପକ ଶତ୍ରୁଘ୍ନ ନାଥ

ଆଧୁନିକୀକରଣର ବାସ୍ତବ ତାତ୍ପର୍ଯ୍ୟ ହେଉଛି ଶିକ୍ଷାର ପ୍ରସାର ଓ ଶିକ୍ଷା ସଙ୍ଗେ ଏହାର ସଂପର୍କ ସ୍ଥାପନ । ଶିକ୍ଷାର ପ୍ରସାର କରାଯାଉ କୌଶଳୀ ଓ ସୁଶିକ୍ଷିତ ନାଗରିକ ସୃଷ୍ଟି କରିବା ଏକାନ୍ତ ଆବଶ୍ୟକ । ଶିକ୍ଷା କର୍ମାଭିମୁଖୀ ହେବ । ପରିବର୍ତ୍ତନର କୌଶଳ ଓ ପରିବର୍ତ୍ତନ ପାଇଁ ଅନୁକୂଳ ମନୋଭାବ ସୃଷ୍ଟି କରାଯିବ । ଶିକ୍ଷା ବର୍ତ୍ତମାନ ଏକମୁହାଁ ହୋଇଛି । ତେଣୁ ଏହାକୁ ବହୁମୁଖୀ କରିବାଦ୍ୱାରା ସବୁଶ୍ରେଣୀର ଲୋକ ଉପକୃତ ହେବେ ।

ଦେଶର ସମୃଦ୍ଧୀକରଣପାଇଁ ପୁଞ୍ଜିଲଗାଣ ସହିତ ପ୍ରତିଶ୍ରୁତିବଦ୍ଧ ପ୍ରଚେଷ୍ଟା ଚାଲିଛି । ଉଦ୍ୟମକୁ ଅବାରିତ ଓ କ୍ଷିପ୍ରତର କରାଯାଉଛି । ଏହି ପରିପ୍ରେକ୍ଷୀରେ ଆମ ରାଜ୍ୟର ଭୂମିକା ମଧ୍ୟ ଉଲ୍ଲେଖନୀୟ । ଶିଳ୍ପାୟନ ଓ ଉଦ୍ୟୋଗୀକରଣ ପାଇଁ ଦଶ ସହସ୍ର କୋଟିରୁ ଅଧିକ ବ୍ୟୟବରାଦ କରାଯାଇ ଜାତୀୟ ମାନଚିତ୍ରରେ ଆମ ରାଜ୍ୟକୁ ଏକ ସୁନିର୍ଦ୍ଦିଷ୍ଟ ସ୍ଥାନ ଦିଆଯାଉଛି । ପାରମ୍ପରିକ ସ୍ଥିତିର ପରିବର୍ତ୍ତନ କରାଯାଇ ଏକ ଗତିଶୀଳ ଓ ସମୃଦ୍ଧ ସମାଜ ରଚନା ଦିଗରେ ସୁଦୂରପ୍ରସାରୀ ଓ ସୁଚିନ୍ତିତ ଆୟୋଜନ ଚାଲିଛି । ଏହା ଏକ ପ୍ରାଣମୂର୍ଚ୍ଛା ପ୍ରତିଜ୍ଞା ଓ ଉତ୍ସର୍ଗର ନିଦର୍ଶନ । କୌଣସି ଗୋଟିଏ ବର୍ଷ ବା ଯୋଜନା କାଳରେ ଏତେ ଅଧିକ ମାତ୍ରାର ପୁଞ୍ଜିଲଗାଣ ଓ ଉତ୍ସର୍ଗୀକୃତ ଚିନ୍ତାର ପରିପ୍ରକାଶ ସମ୍ଭବତଃ ବିରଳ ।

ଏହା କେତେଦୂର ଆମମାନଙ୍କୁ ଆଗେଇ ନେଇଯାଇ ପାରିବ, ଏହା ବିଚାର୍ଯ୍ୟ । ଏହା ଫଳରେ ବିଜ୍ଞାନ ଭିତ୍ତିକ କାରିଗରି ବିଦ୍ୟାର ପ୍ରୟୋଗ ଅଧିକରୁ ଅଧିକ କରାଯିବ । ତେଣୁ ଆମ ଉତ୍ପାଦନ ନିଶ୍ଚିତଭାବରେ ବୃଦ୍ଧିପାଇବ । ଶିଳ୍ପ, କୃଷି, ଛୋଟବଡ଼ କାମଧନ୍ଦା ଆଦି ଉତ୍ପାଦନମୂଳକ ପ୍ରଚେଷ୍ଟା ସଂପ୍ରସାରିତ ହେବ । ସେଗୁଡ଼ିକ ଉଦ୍‌ଜୀବିତ ହେବ । ଏହା କାହାରି କଳ୍ପନା ବା ଅନୁମାନର କଥାନୁହେଁ । ପୃଥିବୀପୃଷ୍ଠରେ ବିକାଶଶୀଳ ଦେଶଗୁଡ଼ିକ ଏହାର ଦୃଷ୍ଟାନ୍ତ । ଦାରିଦ୍ର୍ୟ ଦୂରୀକରଣର ଏହା ମୂଳମନ୍ତ୍ର । ଅତଏବ ବିଜ୍ଞାନଭିତ୍ତିକ କାରିଗରି ବିଦ୍ୟାର ପ୍ରୟୋଗଦ୍ୱାରା ଉତ୍ପାଦନ ବଢ଼ିବ ; ଏଥିରେ ସନ୍ଦେହ ନାହିଁ । ଆହୁରି ମଧ୍ୟ, ସମଗ୍ର ମାନବ ଜୀବନରେ ଉକ୍ତ ପ୍ରକ୍ରିୟାଦ୍ୱାରା ବୈପ୍ଳବିକ ପରିବର୍ତ୍ତନ ହୋଇଯିବ । ଲୋକମାନଙ୍କ ଦୃଷ୍ଟିକୋଣ, ଚିନ୍ତା, ମନୋଭାବ, ରୀତିନୀତି, ଆଗ୍ରହ ବିଶ୍ୱାସ ଆଦିରେ ପରିବର୍ତ୍ତନ ହେବ । କୃଷି, ଶିଳ୍ପ ଆଦି ଉତ୍ପାଦନକ୍ଷେତ୍ରରେ ବିଜ୍ଞାନର ପ୍ରୟୋଗଦ୍ୱାରା ଉତ୍ପାଦନ ବଢ଼ୁଛି ଓ ବଢ଼ିବ, ଏହା ସଙ୍ଗେ ସଙ୍ଗେ ଜନଜୀବନରେ ପରିବର୍ତ୍ତନ ସାଧିତ ହେବ । ସାମାଜିକ ଓ ସାଂସ୍କୃତିକ ଜୀବନଯାତ୍ରାରେ ମୌଳିକ ପରିବର୍ତ୍ତନ ସାଧିତ ହେବ । ରାଜନୈତିକ, ଧାର୍ମିକ ଓ ପାରିପାର୍ଶ୍ୱିକ ଚିନ୍ତାରେ ଗତିଶୀଳତା, ଅଗ୍ରଗାମିତା ଓ ସହଯୋଗିତା ପ୍ରକାଶ ପାଇବ । ବିଜ୍ଞାନର ବ୍ୟବହାର ହେତୁ ଜନଜୀବନର ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ବିଭାଗରେ ଯେଉଁ ବୈପ୍ଳବିକ ପରିବର୍ତ୍ତନ ହୁଏ, ଏହି ପ୍ରକ୍ରିୟାକୁ ଆଧୁନିକୀକରଣ କୁହାଯାଏ ।

ଯନ୍ତ୍ରାଦିର ବ୍ୟବହାରରେ ଆଧୁନିକୀକରଣ ସୀମିତ ନୁହେଁ । ଏହା ମଧ୍ୟ ସେତିକିରେ ପର୍ଯ୍ୟାପ୍ତ ନୁହେଁ । ଅବଶ୍ୟ ଯନ୍ତ୍ର ଓ ଆଧୁନିକ ଯନ୍ତ୍ରର ବ୍ୟବହାର ପ୍ରଯୁକ୍ତିବିଦ୍ୟା ସହିତ ଜଡ଼ିତ । ଉପଯୋଗୀ ଯନ୍ତ୍ର ଓ କୌଶଳର ଉଦ୍ଭାବନ ମଧ୍ୟ ଏଥିସହିତ ସଂପୃକ୍ତ ! କିନ୍ତୁ ଏସବୁ ଫଳରେ ମାନସିକ, ସାମାଜିକ, ସାଂସ୍କୃତିକ, ରାଜନୈତିକ ଆଦି ଦିଗରେ ଯେଉଁ ସମୂହ ପରିବର୍ତ୍ତନ ଘଟେ ତାହାହିଁ ଆଧୁନିକୀକରଣ । ହାତଲଙ୍ଗଳ ପରିବର୍ତ୍ତେ କଳଲଙ୍ଗଳ ବ୍ୟବହାର କରିବାଦ୍ୱାରା ଚାଷୀ ପ୍ରାକୃତିକ ଅବସ୍ଥାର ଅନିଶ୍ଚିତତାକୁ କିୟଦଂଶ ଆୟତ୍ତକରି ନିଜର ସାମର୍ଥ୍ୟ ବଢ଼ାଏ । ଅଳ୍ପ ସମୟରେ ଅଧିକ କାମ କରିବାର ସୁଯୋଗ ଲାଭ କରିବାଦ୍ୱାରା ତା'ର ଆତ୍ମବଳ ବଢ଼ିଯାଏ । ତା'ର ଆଗ୍ରହ ଓ ବିଶ୍ୱାସରେ ବୈପ୍ଳବିକ ପରିବର୍ତ୍ତନ ହୁଏ । ଦାଆ ପରିବର୍ତ୍ତେ ଧାଡୁଆ ଦା କିମ୍ବା ଏସବୁ ପରିବର୍ତ୍ତେ କଳ ଦା ବ୍ୟବହାର କଲେ ଘାସକଟାଳିର ମାନସିକ ପରିବର୍ତ୍ତନ ଆସେ । ସାମାଜିକ ସଂପର୍କ, ଜୀବନପ୍ରତି ଦୃଷ୍ଟି ଓ ସାଂସ୍କୃତିକ ଚେତନାରେ ନୂତନ ବିଶ୍ୱାସ ଆସିଯାଏ ବ୍ୟକ୍ତିର ତଥା ସାମାଜିକ ସଂପର୍କର ନିୟନ୍ତ୍ରଣ କରିବା ପାଇଁ ଚେତନା ମଧ୍ୟ ଆସେ ।

## ଜ୍ଞାନର ବିସ୍ଫୋରଣ

ମାନବର ଜୀବନ ଓ ଜୀବିକାକୁ ସୁଖମୟ ତଥା ସମୃଦ୍ଧ କରିବା ପାଇଁ ମାନବ ସେବାରେ ବିଜ୍ଞାନ କେବଳ କେତୋଟି ଯନ୍ତ୍ରପାତି ଓ ହାତହତିଆର ଦେଇନାହିଁ ; ଦେଇଛି ଓ ଦେଉଛି ଅସୀମ ଓ କ୍ରମବର୍ଦ୍ଧିଷ୍ଣୁ ଜ୍ଞାନ । ବିଜ୍ଞାନର ଯୁଗରେ ଜ୍ଞାନର ବିସ୍ଫୋରଣ ହେଉଛି ଅଭୂତପୂର୍ବ ବିସ୍ମୟ । ଆଧୁନିକ ସମାଜରେ ଏହା ମାନବ ପ୍ରତି ଆହ୍ୱାନ । ସମାଜର ଆଧୁନିକୀକରଣରେ ଏହି ବିସ୍ମୟ ଏକ ଅଭିନବ ଚିନ୍ତା ସୃଷ୍ଟି କରିଛି । କେବଳ ଜ୍ଞାନର ଭଣ୍ଡାର ବଢୁନାହିଁ, ଏହି ଭଣ୍ଡାରର ବୃଦ୍ଧିର ବେଗ ବଢିବାରେ ଲାଗିଛି । କିଛି ଦିନ ପୂର୍ବେ ଦଶ ବର୍ଷରେ ଜ୍ଞାନ ଦ୍ୱିଗୁଣିତ ହେଉଛି ବୋଲି କହୁଥିଲେ । ପୁଣି ଏହା ପାଞ୍ଚବର୍ଷକୁ କମିଲା । ବର୍ତ୍ତମାନ ଏହା ଆହୁରି କମି ଦୁଇ ତିନି ବର୍ଷରେ ଜ୍ଞାନ ଦ୍ୱିଗୁଣିତ ହେଉଥିବାର ଅନୁମାନ କରାଯାଏ । କେବଳ ପାଠପଢ଼ା ପାଇଁନୁହେଁ, ଜୀବନର ପ୍ରତ୍ୟେକ ବିଭାଗପାଇଁ ଓ ପ୍ରତ୍ୟେକ ମାନବପାଇଁ ଏହି ଜ୍ଞାନବୃଦ୍ଧି ଏକ ବିସ୍ଫୋରଣ ସୃଷ୍ଟି କରିଛି । ଏହି କ୍ରମବର୍ଦ୍ଧିଷ୍ଣୁ ଜ୍ଞାନକୁ ଆପଣାର କରି ଅନୁରୂପ ଆସ୍ପୃର ସଙ୍ଗେ ସଙ୍ଗେ ଏହାର କ୍ରମବର୍ଦ୍ଧିଷ୍ଣୁ-ତାରେ ସହାୟକ ନ ହେଲେ ମନୁଷ୍ୟ ଓଲଟି ପଡ଼ିବ । ତା'ର ଥୟ ରହିବ ନାହିଁ । ସେଥିପାଇଁ ଶିକ୍ଷାୟତନ ସହିତ ଜୀବନର ପ୍ରତ୍ୟେକ ବିଭାଗକୁ ଏହି ଆହ୍ୱାନର ସମ୍ମୁଖୀନ ହେବାକୁ ପଡ଼ିବ । ପ୍ରତ୍ୟେକଟି ଗଣମାଧ୍ୟମ ଏହି ଦୃଷ୍ଟିରୁ ସଚେତନ ହେବା ଆବଶ୍ୟକ ।

ଆଜିକାଲି ଜ୍ଞାନାର୍ଜନ କହିଲେ ଏହା କେବଳ ଶିକ୍ଷାୟତନକୁ ନିର୍ଦ୍ଦେଶିତ କରେ ଓ କଣ୍ଠସ୍ଥୀକରଣକୁ ବୁଝାଉଥାଏ । ଆଧୁନିକ ସମାଜରେ ଏହା ସେତିକି ନୁହେଁ । ଜ୍ଞାନାର୍ଜନକୁ ଜୀବନବ୍ୟାପୀ ପ୍ରକ୍ରିୟା କରିବାକୁ ପଡ଼ିବ ଓ ଜୀବନର ସମସ୍ତ ଅନୁଭୂତିକୁ ଆଧାରିତ କରିବାକୁ ହେବ । ଏହାଛଡ଼ା କଣ୍ଠସ୍ଥୀ-କରି ଏହା ଗ୍ରହଣ କରିବାକୁ ହେବ । ଏ ଯାଏଁ ଜ୍ଞାନ ଗ୍ରହଣ ଏକ ନିଷ୍କ୍ରିୟ ପ୍ରକ୍ରିୟା ହୋଇଛି । ଏହାକୁ ସକ୍ରିୟ ପ୍ରକ୍ରିୟାରେ ପରିଣତ କରାଯିବ । ଏହାକୁ ପଯୋଗାତ୍ମକ କରାଯିବ । ଜ୍ଞାନର ଅଗ୍ରଗତି ସହିତ ତାଳ ରକ୍ଷି ଆଧୁନିକ ସମାଜ ଆଗେଇ ଚାଲିବ । ସେ ଦୃଷ୍ଟିରୁ ରେଡିଓ, ଟେଲିଭିଜନ, ସମ୍ବାଦପତ୍ର, ପାଟୀର ପତ୍ର ଆଦି ସର୍ବବିଧ ଗଣମାଧ୍ୟମ ଏହି ନୂତନ ଦୃଷ୍ଟିକୋଣ ଗ୍ରହଣ କରିବେ ।

## ଆଧୁନିକୀକରଣ ଓ ସହରୀକରଣ

ପାଶ୍ଚାତ୍ୟ ଦେଶର ଦୃଷ୍ଟାନ୍ତରୁ ଜଣାଯାଏ ଯେ ଆଧୁନିକୀକରଣକୁ ସହରୀକରଣ ସହିତ ସମାନ କରା-ଯାଉଛି । ଯେଉଁଠି ଶିଳ୍ପ, ସେଇଠି ସହର ଓ ଏହାକୁ କେନ୍ଦ୍ର କରି ଅପରାଧ, ଅପବ୍ୟୟ, ଅନ୍ୟାୟ, ଅସମତା, ଅସାମାଜିକତା ଆଦି ଏକ ଅଳିଆର ସ୍ତୂପ ସଦୃଶ ପର୍ବତ ଦଣ୍ଡାୟମାନ । ଜନାକୀର୍ଣ୍ଣତା ଏହାର ପରିଚୟ ଦିଏ । ଏକ ଅର୍ଥହୀନ କୋଳାହଳ ଓ କଳରବ ଯନ୍ତ୍ର ସାହାଯ୍ୟରେ କାନକୁ ବଧିରା କରି ପକାଏ । ରୋଜ-ଗାରର ସୁବିଧା ଥାଏ ସତ, ଏହାର ପ୍ରଲୋଭନରେ "ବୁଭୁକ୍ଷିତ କିଂ ନ କରୋତି ପାପଃ" ନ୍ୟାୟରେ ପାପ, ତାପ ଓ ମନସ୍ତାପ ସବୁଆଡୁ ଆସି ଏଠି ପୁଞ୍ଜୀଭୂତ ହୁଏ । ଗ୍ରାମରୁ ଏହା ହୁଏ ସହରକୁ ଦାରିଦ୍ର୍ୟର ରପ୍ତାନି । ପ୍ରକୃତିଲକ୍ଷ୍ମୀ ଅନ୍ୟତ୍ର ଆପଣାଛାଏଁ ଛାଡି ଚାଲି ଯାଆନ୍ତି । ଉତ୍ପାଦନ କ୍ଷମତାକୁ ଛାଡି କେବଳ ରୋଜଗାର କ୍ଷମତା ଉପରେ ଧ୍ୟାନ ରହେ । ଏହା ଫଳରେ ଶଠତା, ଆଳସ୍ୟ, ପାପାଚରଣ, ହିଂସା, ମିଥ୍ୟା, ଚୋରି ଆଦି ଅତି ଦ୍ରୁତ ମାତ୍ରାରେ ବଢିଯାଏ । ଏହା କଅଣ ବିଜ୍ଞାନଭିତ୍ତିକ ସମାଜ ରଚନା ? ଏହା କଅଣ ପ୍ରଯୁକ୍ତି ବିଦ୍ୟା ଆଧାରିତ ସମାଜ ? ଅତଏବ ଆଧୁନିକୀକରଣ ଅର୍ଥରେ ସହରୀକରଣର ଦୃଷ୍ଟିପାତ ପ୍ରତି ସତର୍କ ରହିବାକୁ ହେବ । ଛୋଟ ଛୋଟ ଶିଳ୍ପ ଗାଁ ଗାଁରେ କରି ଗାଁର ଅସୁବିଧା ଦୂର କରିବା ଉଚିତ । ଗ୍ରାମ୍ୟ ଜୀବନକୁ ସମୃଦ୍ଧ ଓ ସୁଖମୟ କରିବାକୁ ହେବ । ବୃହତ୍ ଶିଳ୍ପର ପରିପୂରକ ଭାବରେ କୁଟୀର ଶିଳ୍ପ ଗଢି ଉଠିବାକୁ ସୁଯୋଗ ଦିଆଯିବ । ଶ୍ରମ ଓ ଶ୍ରମିକର ସମ୍ମାନ ରହିବ । ବିନା ଶ୍ରମରେ ଅର୍ଜନ ଅନ୍ୟାୟ ହେବ । ସହରର ଜୀବନର ପୁନଃନିର୍ମାଣ କରା ନ ଗଲେ ଆମର ଅଗ୍ରଗତି ବ୍ୟାହତ ହେବ । ଏହା କିମ୍ଭୂତକିମାକାର ହୋଇଯିବ । ବିଧି ଗଢୁ ଗଢୁ ସମ୍ଭବତଃ ମାଙ୍କଡ଼ ଗଢିବା ଓ ଏହି ମାଙ୍କଡ଼ ଆମ ପ୍ରାଣ ନାଶ କରିବ ।

ସେ ଦୃଷ୍ଟିରୁ ବିଶ୍ୱର ଉନ୍ନତ ଦେଶମାନଙ୍କରେ ଉତ୍ପାଦନ ବୃଦ୍ଧି ସଙ୍ଗେ ସଙ୍ଗେ ମାନବିକ ସମ୍ବଳର ବିକାଶ ଉପରେ ଗୁରୁତ୍ୱ ଦିଆଯାଉଛି । ଦେଶର ସମୃଦ୍ଧି ଏହାର ଲୋକମାନଙ୍କ ଚରିତ୍ର ଉପରେ ନିର୍ଭର କରେ । ପୁଞ୍ଜି ଲଗାଣ, କଞ୍ଚାମାଲ ଓ କାରିଗରି କୌଶଳ ସହିତ ଜାତୀୟ ଚରିତ୍ର ଏକତ୍ର ହେଲେ ଦେଶର ପ୍ରଗତି ସହଜ ଓ ସୁନିଶ୍ଚିତ ହେବ । ଆଜି ଶିଳ୍ପୋନ୍ନତ ଦେଶ-ଗୁଡିକରେ ମାନବଜୀବନ ବିଦୀର୍ଣ୍ଣ, ବିଖଣ୍ଡିତ ଓ ବିଭକ୍ତ । ସମ୍ବଳର ପ୍ରାଚୁର୍ଯ୍ୟ ମଧ୍ୟରେ ସୁସମ୍ପର୍କ ଓ ସଦ୍‌ଭାବର ଅଭାବ ମନୁଷ୍ୟ ମନରେ ଘୋର ଅଶାନ୍ତି ସୃଷ୍ଟି କରିଛି । ଶିଳ୍ପାୟନ ସହିତ ସବୁଦିଗରୁ ମାନବ ଜୀବନର ମାନ ଓ ଶୈଳୀ ଉନ୍ନତ କରିବା ଆମ ଯୋଜନାରେ ଅଗ୍ରାଧିକାର ପାଇବା ଉଚିତ । ଆମ ଯୋଜନା ଯଦି ଏକତରଫା ହୋଇଯିବ ତେବେ ଏହାର ପରିଣତି ବିଷମୟ ହେବାର ଆଶଙ୍କା କରାଯାଏ ।

## ଦ୍ୱରିତ ସାମାଜିକ ପରିବର୍ତ୍ତନ

ଏହାହିଁ ଆଧୁନିକ ସମାଜର ଲକ୍ଷଣ । ପଶ୍ଚାତ୍ପରରେ ପୁରୁଣାକାଳିଆ ସମାଜରେ ପରିବର୍ତ୍ତନ ଧୀର ଓ ମନ୍ଥର । ଯେଉଁ ସମାଜରେ ପରିବର୍ତ୍ତନ ମନ୍ଥର ଗତିରେ ଚାଲିଥାଏ, ସେଠି ସ୍ଥିତିଶୀଳତା କୌଣସି କ୍ଷତି କରି ପାରେ ନାହିଁ । ଏହା ମଧ୍ୟ ଆଶା କରାଯାଏ ଯେ ପରିବର୍ତ୍ତନର ଗତିଶୀଳତା କ୍ରମବର୍ଦ୍ଧିଷ୍ଣୁ ହେବା ଉଚିତ । ହଠାତ୍ ଯଦି ଗତିରୋଧ କରାଯାଏ ବା ସ୍ଥିତାବସ୍ଥାକୁ ଫେରିବାକୁ ପଡେ ତେବେ ଗୋଟିଏ ଯାନର ଅବସ୍ଥା ଯାହା ହୁଏ, ସମାଜର ଅବସ୍ଥା ସେହିପରି ହେବାର ଆଶଙ୍କା ଅଛି ।

ତ୍ୱରିତ ସାମାଜିକ ପରିବର୍ତ୍ତନ ସଙ୍ଗେ ଲୋକମାନଙ୍କର ଆଶା ଓ ଆକାଂକ୍ଷା ବେଗର ମାତ୍ରା ଓ କଳେବର ଦୃଷ୍ଟିରୁ ବଢ଼ି ବଢ଼ି ଚାଲିଛି । ଦେଶର ସ୍ୱାଧୀନତା ସମୃଦ୍ଧୀକରଣର ଅରୁଣୋଦୟ ଥିଲା । ସେ ଦିନଠୁ ଆଜି ଯାଏଁ ଆକାଂକ୍ଷା ଓ ଅଭିଳାଷ କେତେ ବଢ଼ିଛି ଏହାର କଳନା କରି ହେବ ନାହିଁ । ସେହିପରି ଶିଳ୍ପାୟନ ଓ ତତ୍ ସହାୟକ ନଦୀବନ୍ଧ, ବିଦ୍ୟୁତ୍ କେନ୍ଦ୍ର ଆଦି ସାମାଜିକ ଜୀବନରେ ନୂତନ ଆକାଂକ୍ଷା ସୃଷ୍ଟି କରୁଛି ଓ ସେସବୁର ବୃଦ୍ଧିମାତ୍ରାକୁ କ୍ଷିପ୍ରତର କରୁଛି । ଏ ସବୁକୁ ଆଧୁନିକ ଯୁଗର ଦେବାଳୟ ରୂପେ ଚିତ୍ରିତ କରାଯାଏ । ବସ୍ତୁତଃ ପୁରାତନ କାଳରେ ଦେବାଳୟଗୁଡ଼ିକ ମନସ୍କାମନା ପୂର୍ଣ୍ଣ କରିବାର ପୀଠ ଥିଲା ଓ ଆଜିକାଲି ଏହି ସବୁ ଆଧୁନିକ ଦେବାଳୟ କାମନା ଓ ବାସନାର ସୃଷ୍ଟି ମନ ମଧ୍ୟରେ କରୁଛି । ଭୋଗବିଳାସର କଳ୍ପନା ଜାଗ୍ରତ କରୁଛି । ସେପରି ସ୍ଥଳରେ ଦୁଇଟି ବିଚାର ମନକୁ ଆସେ । ପ୍ରଥମଟି ହେଉଛି: ଜୀବନ ସମସ୍ୟାର ସମାଧାନ ତୁରନ୍ତ ହେବା ଉଚିତ । ସରକାରୀ ନୀତି ନିର୍ଦ୍ଧାରଣ ବର୍ଷ ବର୍ଷ ଧରି ଅପେକ୍ଷା ନ କରି ସମୟ ଉପଯୋଗୀ ହେବା ଦରକାର । ସାନ ସାନ କଥାର ନିଷ୍ପତ୍ତି ସ୍ଥାନୀୟ ଭିତ୍ତିରେ କରାଯିବା ଉଚିତ । ରାଜନୈତିକ ହସ୍ତକ୍ଷେପ ବା ହିସାବ ପ୍ରୟୋଗରେ ନିଷ୍ପତ୍ତି ହୋଇ ପାରିବ—ଏ କଥା ଲୋପ ପାଇବା ଦରକାର । ଲୋକଙ୍କ ଆପତ୍ତି ଓ ଅଭିଯୋଗ ଶୁଣି ପ୍ରତିକାର କରିବା ପାଇଁ ପ୍ରଶାସନ ବ୍ୟବସ୍ଥା ତତ୍ପର ରହିବା ଆବଶ୍ୟକ । ୧୯୪୭ ମସିହାଠାରୁ ଏ ପର୍ଯ୍ୟନ୍ତ ବହୁ ସଂସ୍କାରର ପରୀକ୍ଷା କରାଯାଇ ଥିଲେ ହେଁ ଲୋକସାଧାରଣଙ୍କ ପାଇଁ କାଳ ଆଗରେ ମୂଳା ଝୁଲେଇଲା ପରି ପ୍ରଶାସନ ଅବୋଧ୍ୟ ହୋଇ ରହିଛି । ଏଥିପାଇଁ ଇଂରାଜୀ ଭାଷା, ଆଭିଜାତ୍ୟପୂର୍ଣ୍ଣ ମନୋଭାବ, ଜଟିଳ ବ୍ୟବସ୍ଥା ଆଦି ଦାୟୀ ହୋଇପାରେ । କିନ୍ତୁ ପ୍ରଶାସନରେ ଶ୍ରମିକ, କୃଷକ, ଶିକ୍ଷକ, ଜନସାଧାରଣ ପ୍ରଭୃତିଙ୍କର ଅଂଶ ଗ୍ରହଣ ଯଥା ସ୍ଥାନରେ ଏକାନ୍ତ ଆବଶ୍ୟକ । ସରକାରୀ, ଅର୍ଦ୍ଧ ସରକାରୀ ବା ବେସରକାରୀ ସ୍ତରରେ ନିଷ୍ପତ୍ତିମୂଳକ ବ୍ୟବସ୍ଥା ତୁରନ୍ତ ସାଧିତ ହେବା ଉଚିତ । ଯୋଜନା ରଚନାରେ ଜନ ଜୀବନର ସ୍ପନ୍ଦନ ପ୍ରତିଫଳିତ ହେବା ଉଚିତ ।

ଦ୍ୱିତୀୟ ବିଚାର ହେଉଛି ଗଣତାନ୍ତ୍ରୀକରଣ । ଆଧୁନିକୀକରଣ ଓ ଗଣତାନ୍ତ୍ରୀକରଣ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ ପରି । ସ୍ୱାଧ୍ୟାୟ, ସ୍ୱାଭିମାନ ଓ ଆତ୍ମଚିନ୍ତନ ପାଇଁ ସୁଯୋଗ ଦେବା ଉଚିତ । ତଦ୍ୱାରା କୌତୂହଳ ବୃଦ୍ଧି ପାଇବ । ପ୍ରତ୍ୟେକ ବିଷୟରେ ବୈଜ୍ଞାନିକ ମନୋଭାବ ପ୍ରକାଶ ପାଇବା ଦରକାର । ସ୍ୱାଧୀନ ଚିନ୍ତା, ବସ୍ତୁନିଷ୍ଠ ବିଚାର ଓ ଉନ୍ମୁକ୍ତ ମନ ପାଇଁ ପ୍ରସ୍ତୁତ କରିବାକୁ ହେବ । ବ୍ୟକ୍ତିପ୍ରତି ସମ୍ମାନ ରହିବ । ଶାସନ, ଶିକ୍ଷା, ସମସ୍ତ ନିଷ୍ପତ୍ତିକାରୀ ସଂସ୍ଥାରେ ଏ ସବୁ ସଦ୍‌ଗୁଣ ପ୍ରତିଫଳିତ ହେବା ଦରକାର ।

## ଦ୍ରୁତ ଅଗ୍ରଗତିର ଆବଶ୍ୟକତା

ଆଧୁନିକୀକରଣର ସଫଳତା ପାଇଁ ଦ୍ରୁତ ଅଗ୍ରଗତି ଆବଶ୍ୟକ ହୁଏ । ଥରେ ଆଧୁନିକୀକରଣ ଆରମ୍ଭ ହୋଇଗଲେ ବା ସେଥିପାଇଁ ଅନୁକୂଳ ଆୟୋଜନ କରାଗଲେ, ଆଉ ପଛେଇବାର ନୁହେଁ । ମଝାମଝି ନାହିଁ କିମ୍ବା ବିଶ୍ରାମ ନାହିଁ । ସବୁବେଳେ ଆଗେଇବାକୁ ପଡ଼ିବ । ଏହା ହୋଇପାରେ, ଆମକୁ ସାମାଜିକ, ସାଂସ୍କୃତିକ ଓ ରାଜନୈତିକ କ୍ଷେତ୍ରରେ ଅପ୍ରତ୍ୟାଶିତ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିବ । ଆମକୁ କଠିନ ପରିଶ୍ରମ ସହ ବିଶେଷ ଭାବରେ ବାସ୍ତବବାଦୀ ଓ ବସ୍ତୁନିଷ୍ଠ ହେବାକୁ ପଡ଼ିବ । ଆମକୁ ଫୁଲମାଳ ମିଳିବ, ଏ ଅପେକ୍ଷା ରଖାଯିବ ନାହିଁ । ଲୋକଙ୍କ ପିଣ୍ଡା, ଗଛମୂଳ ଓ ରାସ୍ତାଘାଟ ଆମ ଅଗ୍ରଗତି ପାଇଁ ଚେତନା, ଚିନ୍ତା ଓ କର୍ମର ପୀଠସ୍ଥଳୀ ହେବ । ସମସ୍ୟାକୁ ଆମେ ଯଦି ଖଣ୍ଡିତ, ବିକୃତ ଓ ବିଚ୍ୟୁତ କରି ଦେଖୁଁ ବା ଟଳ ଟଳ ପାଦ ପକାଉ, ଆମେ ସ୍ଥିର ଲକ୍ଷ୍ୟରେ ପହଞ୍ଚି ପାରିବା ନାହିଁ । ଗୋଟିଏ ନୂତନ ସ୍ଥିତାବସ୍ଥା ଲାଭ କରିବା ପାଇଁ ଆମେ ଅଗ୍ରଗତି କରି ଚାଲିଯିବା ।

## ଆଧୁନିକୀକରଣ ଓ ଶିକ୍ଷାର ପ୍ରସାର

ବସ୍ତୁତଃ ଆଧୁନିକୀକରଣର ଅର୍ଥ ହେଉଛି ଶିକ୍ଷାର ପ୍ରସାର ଓ ଶିକ୍ଷା ସଙ୍ଗେ ଏହାର ସମ୍ପର୍କ ସ୍ଥାପନ । ଶିକ୍ଷାର ପ୍ରସାର କରାଯାଇ କୌଶଳୀ ଓ ସୁଶିକ୍ଷିତ ନାଗରିକ ସୃଷ୍ଟି କରିବା ଏକାନ୍ତ ଆବଶ୍ୟକ । ଶିକ୍ଷା କର୍ମାଭିମୁଖୀ ହେବ । ପରିବର୍ତ୍ତନର କୌଶଳ ଓ

ପରିବର୍ତ୍ତନ ପାଇଁ ଅନୁକୂଳ ମନୋଭାବ ସୃଷ୍ଟି କରାଯିବ । ଏହା ବର୍ତ୍ତମାନ ଏକମୁହାଁ ହୋଇଛି । ଏହାକୁ ବହୁମୁଖୀ କରାଯିବ । ସମାଜର ସବୁ ଶ୍ରେଣୀର ଲୋକ ସମାନ ଭାବରେ ଉପକୃତ ହେବେ । ସାମାଜିକ ପୁନର୍ଗଠନର ଆହ୍ୱାନର ସମ୍ମୁଖୀନ ହେବା-ପାଇଁ ଶିକ୍ଷା ଦିଆଯିବ । କର୍ମାଭିମୁଖୀ ଶିକ୍ଷା ସହିତ ଆବଶ୍ୟକ ସ୍ତରରେ ବୈଷୟିକ ଶିକ୍ଷା ଓ ଶିକ୍ଷାର ବୈଷୟିକୀକରଣ ଉପରେ ଗୁରୁତ୍ୱ ଦିଆଯିବ । କର୍ମ ଦକ୍ଷତାର ସ୍ତର ଯେପରି କ୍ରମୋନ୍ନତ ହେବ, ସେଥିପ୍ରତି ନଜର ରହିବ । ମାନବିକ ଶକ୍ତିର ଯୋଜନା ସହିତ ଶିକ୍ଷାକୁ ଜଡିତ କରାଯିବ । ଏହା ହେବ ସମସ୍ତ ବ୍ୟକ୍ତିଙ୍କର ସାକ୍ଷରତା ଓ ସେଥିପାଇଁ ଧ୍ୟାନ ରହିବ ।

## ମାନବିକ ମୂଲ୍ୟବୋଧ ହେବ ଆଧୁନିକୀକରଣର ଭିତ୍ତି

ଆଧୁନିକୀକରଣ ବାନରୀକରଣରେ ପରିଣତ ହେବ ଯଦି ଆମେ ଅନ୍ଧ ଭାବରେ ଅନ୍ୟାନ୍ୟ ଦେଶର ବିଜ୍ଞାନ-ପ୍ରୟୋଗକୁ ଅନୁକରଣ କରି ଚାଲିବା । ସେଥିପାଇଁ ସମାଜତତ୍ତ୍ୱବିତ୍‌ମାନେ ସତର୍କ କରି ଦେଇଛନ୍ତି ଯେ, ପ୍ରତ୍ୟେକ ଦେଶର ଇତିହାସ ଓ ବିଶ୍ୱାସ, ସମସ୍ୟା ଓ ସାହସ ତଥା ଅଭାବ ଓ ସଦ୍‌ଭାବକୁ ସମ୍ବଳ କରି ବିଜ୍ଞାନର ପ୍ରୟୋଗ କରାଯିବ । ଏହା ହେବ ଏପ୍ରୋପ୍ରିଏଟ୍ ଟେକ୍ନୋଲଜି । ବିଜ୍ଞାନ ଏକ ହେଲେହେଁ ଟେକ୍ନୋଲଜି ଏକାଧିକ ଭାବରେ ରୂପାୟିତ ହେବ । ବିଜ୍ଞାନ ରୂପକ ଦର୍ପଣରେ ପ୍ରତ୍ୟେକ ବ୍ୟକ୍ତିର ପ୍ରତିବିମ୍ବ ସ୍ୱଭାବରେ ପ୍ରତିଭାତ ହେବ । ତାହାହିଁ ହେବ ବ୍ୟକ୍ତିର ସ୍ୱାଭିମାନ । ଆମ ସମୃଦ୍ଧୀକରଣ ଯୋଜନା ଆମ ଐତିହ୍ୟ ଓ ଚିରନ୍ତନ ମୂଲ୍ୟବୋଧ ଦ୍ୱାରା ରକ୍ଷିତ ହେବ ।

ଆମର ବିଭିନ୍ନ ଯୋଜନାର ତ୍ରୁଟି ସତ୍ତ୍ୱେ ସଫଳତା ରହିଛି । ଅଭାବ, ଅନାଟନ ଓ ଦୈନ୍ୟ ସଙ୍ଗେ ଜାତୀୟ ଆୟ ବଢୁଛି ଓ ବଢ଼ାଇବା ପାଇଁ ଯୋଜନା ରହିଛି । ଯାହାଙ୍କ ପାଖରେ ସ୍ୱଚ୍ଛଳତା ଅଛି ସେମାନେ ସେମାନଙ୍କ ବିତ୍ତର ବ୍ୟୟ କିପରି କରୁଛନ୍ତି ? ସେମାନଙ୍କର କେଉଁ ଦୃଷ୍ଟିକୋଣ ରହିଛି ? "ଧନ ଥିଲେ ଧର୍ମ କରି" — ଏହି ବିଶ୍ୱାସ ସେମାନଙ୍କର ଅଛି କି ? "ତେନ ତ୍ୟକ୍ତେନ ଭୁଞ୍ଜିଥା" — ଏହି ପ୍ରେରଣା ସେମାନଙ୍କୁ ପ୍ରେରିତ କରେ କି ? "ମା ଗୃଧଃ କସ୍ୟ ସ୍ୱିଦ୍ ଧନଂ" ପରିବର୍ତ୍ତେ ଧନର ବଳରେ ଧନାଢ୍ୟ ହୋଇ ଅନ୍ୟର ଧନ ଅପହରଣ କରିବାରେ ଲାଗିଛନ୍ତି । ଅଧିକାଂଶ ସ୍ଥଳରେ ଧନଭୋଗ ଆମକୁ ଦେହସର୍ବସ୍ୱ କରି ଦେଉଛି । ଲୋଭରୁ ପାପ ଓ ସେଥିରୁ ମୃତ୍ୟୁ ଆମ ପାଇଁ ଶ୍ରେୟ ଶେଷରେ ହେବ ।

ଏହା ହେଉଛି ଗୋଟିଏ ଦିଗ । ଶିଳ୍ପାୟନ, ଉଦ୍ୟୋଗୀକରଣ ଆଦି ମାଧ୍ୟମରେ ଆଧୁନିକୀକରଣ କରାଗଲେ ପ୍ରଶ୍ନ ହେବ : ଆମେ କାହାକୁ ବାଛିବା ? ଆମ ଆଗରେ ଦ୍ରବ୍ୟର ସମ୍ଭାର । କାହା ସପକ୍ଷରେ ଆମେ ଯିବା ? କୃଷିକୁ ବିଜ୍ଞାନଭିତ୍ତିକ କରିବା ଦ୍ୱାରା ଆମେ ଗୋଟିଏ କିଆରିରେ ଏକ ସମୟରେ ବିଭିନ୍ନ ଶସ୍ୟ କରି ପାରିବା । କେଉଁ ଶସ୍ୟ ଆମେ ସ୍ଥିର କରିବା ? ଶିଳ୍ପାୟନ ଦ୍ୱାରା କେଉଁ ଦ୍ରବ୍ୟର ଉତ୍ପାଦନ ପାଇଁ ଆମେ ଅଗ୍ରାଧିକାର ଦେବା ? ଔଷଧକୁ ଭେଜାଲ କରି ଜୀବନକୁ ସାରି ଦେବା କି ? ଏ ସବୁ କ୍ଷେତ୍ରରେ ଆମ ଆଧ୍ୟାତ୍ମିକ ଓ ନୈତିକ ମୂଲ୍ୟବୋଧ ଆମର ଧ୍ରୁବତାରା ହେବ । ଯେଉଁ ଦେଶର କବି, ସ୍ୱଦେଶ ପ୍ରେମୀ, ସଂସ୍କାରକ ଓ ସାଧାରଣ ଲୋକ "ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ"ର ବାଣୀକୁ ଜୀବନରେ ପାଳିଗଲେ, ସେ ଦେଶରେ ଅହଙ୍କାର, ମିଥ୍ୟା, ଶଠତା, ଡକାଏତି, ଅନ୍ୟାୟ, ଅତ୍ୟାଚାର ଓ ଅନାଚାର ଆମ ଜୀବନର ଧ୍ୟେୟ ହେବ କି ? ବିଜ୍ଞାନ ସହିତ ଆମେ ଆତ୍ମଜ୍ଞାନକୁ ଜଡିତ କରିବା । ଆଜି ନୁହେଁ, କେତେ ବର୍ଷ ପୂର୍ବରୁ ସ୍ୱାମୀ ବିବେକାନନ୍ଦ, ଗାନ୍ଧୀ, ରବୀନ୍ଦ୍ରନାଥ ପ୍ରଭୃତି ପ୍ରାଚ୍ୟ ଗୁରୁଗଣ ପାଶ୍ଚାତ୍ୟ ଦେଶର ବିଜ୍ଞାନକୁ ଆବାହନ କରି ଦେଶର ଦାରିଦ୍ର୍ୟ ଦୂରକରିବା-ପାଇଁ ଯୁକ୍ତି କରିଛନ୍ତି । କିନ୍ତୁ ଏ ଦେଶର ସଂସ୍କୃତି ଓ ମୂଲ୍ୟବୋଧକୁ ପରିହାର କରି ସେମାନଙ୍କୁ ଏହା କରିବାକୁ ଇଚ୍ଛା କରି ନାହାନ୍ତି ।

ଶିଳ୍ପାୟନ ପ୍ରଭୃତି ସମୃଦ୍ଧୀକରଣ କାର୍ଯ୍ୟକ୍ରମର ପଛରେ ସାଂସ୍କୃତିକ ଚେତନା ଉଗ୍ର ରୂପେ ରହିବା ଉଚିତ୍ । ଭାଗବତ ଟୁଙ୍ଗୀରେ ଆଗ କାଳରେ ଦୀପଟିଏ ଜଳୁଥିଲା । ଏବେ ଆମେ ବିଜୁଳି ଆଲୁଅ ଜାଳି ପାରୁ । ମାଇକ୍ ସାହାଯ୍ୟରେ ଭଜନ ପାଠ କରାଯାଉ । କିନ୍ତୁ ଭାଗବତ ଭଜନ ଆଦି ଆମ ଜୀବନର ନିୟାମକ ହେଉ । ଆମ ଯୋଜନା ଏଥିରେ ଶାଣିତ ହେବା ଉଚିତ । ଉଦ୍ୟୋଗୀକରଣର ସବୁ ବିଭାଗ, ବ୍ୟବସ୍ଥା ଓ ସଂସ୍ଥା ଏହି ଅଭିମୁଖ୍ୟ ଦ୍ୱାରା ପରିଚାଳିତ ହେବା ଉଚିତ । ଦ୍ରବ୍ୟର ଉତ୍ପାଦକ ହେଉଛି ମନୁଷ୍ୟ ଓ ସେ ଦ୍ରବ୍ୟର ବିନିଯୋଗ କରେ । ତେଣୁ ସେ ସମୃଦ୍ଧ ହେବ । ତାକୁ ବିଜ୍ଞାପନ ଓ ଯନ୍ତ୍ରର ଆୟୁଧ କଲେ ଚଳିବ ନାହିଁ ।




ଭାରତର ରାଷ୍ଟ୍ରପତି ଶ୍ରୀ ଏନ୍. ସଂଜୀବ ରେଡିଙ୍କ
ଉଦଘାଟନ ଅଭିଭାଷଣ ।



ଶାରୀରିକ ବିକଳାଙ୍ଗଙ୍କୁ ସାହାଯ୍ୟ ପ୍ରଦାନ ଉତ୍ସବରେ ଓଡ଼ିଶାର ରାଜ୍ୟପାଳ ଶ୍ରୀ ସି. ଏମ୍. ପୁନାଚ୍ଛ



ଖୋର୍ଦ୍ଧାରେ ମହିଳା କଲେଜ ଉଦଘାଟନ

ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟ
ଡିସେମ୍ବର ୯ ତାରିଖ ଦିନ ଚର୍ଣ୍ଣୋଳସ୍ଥିତ
ତନ୍ତୁବାୟ ସମବାୟ ଲୁଗାକଳ ଶିଳାନ୍ୟାସ



୧୯୮୧ ଡିସେମ୍ବର ୧୮ ତାରିଖ ଦିନ କଳାହାଣ୍ଡି ଜିଲ୍ଲା ଭବାନୀପାଟଣା ମହିଳା ମହାବିଦ୍ୟାଳୟର ଭିତ୍ତିପ୍ରସ୍ତର ସ୍ଥାପନ କରୁଛନ୍ତି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ



୧୯୮୧ ଡିସେମ୍ବର ୨୦ ତାରିଖ ଦିନ ଭୁବନେ
ଭବନଠାରେ ଓଡ଼ିଶା ରାଜ୍ୟ ଅର୍ଥ ସ
ରୌପ୍ୟ ଜୟନ୍ତୀ ଉତ୍ସବ ଉଦ୍‌ଘାଟନ କରୁଛ
ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ।

ଯୁବବାଣୀଠାରେ ମୁଖ୍ୟମନ୍ତ୍ରୀଙ୍କଦ୍ୱାରା ଶିଳ୍ପଗ୍ରାମ କେନ୍ଦ୍ର ଉଦ୍‌ଘାଟନ।



# ୧୮୧୭ ବିପ୍ଳବ ଓ ବକ୍ସି ଜଗବନ୍ଧୁ - ଏକ ସିଂହାବଲୋକନ

ଶ୍ରୀ ଭଗୀର ପ୍ରସାଦ ପଟ୍ଟନାୟକ

> ସୈନିକ ଯେପରି ଶକ୍ତିଶାଳୀ ହୁଅନ୍ତୁ, ଯେପରି ଶାରୀରିକ ବଳ ବା ମନର କୁଶଳତା ଥାଉ, ସେମାନେ ଯେପରି ପ୍ରାଣ ଦେବାକୁ ପ୍ରସ୍ତୁତ ଥାଆନ୍ତୁ; ସମୁଦ୍ର ବକ୍ଷରେ ଜାହାଜ ପରି ସୁଜନ ଅବସ୍ଥରେ ଲକ୍ଷ୍ୟ ସ୍ଥଳରେ ଯାଇ ପହଞ୍ଚିବା ସେମାନଙ୍କ ପକ୍ଷେ ସମ୍ଭବ

ଓଡ଼ିଶାର ଇତିହାସରେ ଖୋରଧା ଏକ ବିଶିଷ୍ଟ ସ୍ଥାନ ବରାବର ଅଧିକାର କରି ଆସିଛି, ନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖିଛି, ଅନେକ ବିଷୟରେ ଦକ୍ଷାଧିକ ଭାବରେ ଜାତି ଆଗରେ ଆଦର୍ଶ ଥୋଇପାରିଛି; କିନ୍ତୁ ତାହା ସମ୍ଭବପର ହୋଇଛି ତା'ର ପାଇକ ବାହିନୀ ଯୋଗେ । ପାଇକମାନେ ଏକ ସମରକୁଶଳ ଜାତି ଥିଲେ । ତାହା ଆଜି ଅବଶ୍ୟ ଇତିହାସର ବିଷୟ ହୋଇପଡିଛି; ତଥାପି ସେମାନଙ୍କ ଗୌରବ 'ରଣସିଂହ', ଚମୁପତି', 'ବାହୁବଳେନ୍ଦ୍ର', 'ନରେନ୍ଦ୍ରସିଂହ', 'ବୈରୀଗଞ୍ଜନ' 'ମରଗଜସିଂହ', ସଂଗ୍ରାମସିଂହ' ପ୍ରଭୃତି ସଂଜ୍ଞାରୁ ଆଜିସୁଦ୍ଧା ସ୍ପଷ୍ଟ ଜଣାପଡୁଛି ।

ପାଇକମାନେ ପ୍ରଧାନତଃ ଖୋରଧାର ବାସିନ୍ଦା । ଭୋଇବଂଶ ରାଜାଙ୍କଠାରୁ ଜାଗିର ଜମି ପାଇ, ଗୃହବାସ କରି ସେମାନେ ଚଳାଚଳ ହେଉଥିଲେ; କାହାରିଠାରୁ ବେତନ ନେଇ ଚାକିରି କରୁ ନ ଥିଲେ । ଶାନ୍ତି ସମୟରେ ସେମାନେ ନିଜ ନିଜ ଘରେ ରହୁଥିଲେ, ଆଖେଡାରେ କୁସ୍ତି କସରତ କରି ଦେହରେ ବଳ ସଞ୍ଚୟ କରିବା ସଙ୍ଗେ ସଙ୍ଗେ ଅସ୍ତ୍ରଶସ୍ତ୍ର ଚଳାଇବା ବିଦ୍ୟା ମଧ୍ୟ ହାସଲ କରୁଥିଲେ । ବିଜୟ ଅଭିଯାନକୁ ଡାକରା ପାଇଲେ କିମ୍ବା ଦେଶରେ ଶତ୍ରୁ ଆସି ପହଞ୍ଚିଲେ ସେମାନେ ଘରଦ୍ୱାର ଛାଡ଼ି; ସ୍ତ୍ରୀ, ପୁତ୍ର କନ୍ୟାଙ୍କଠାରୁ ବିଦାୟ ନେଇ, ସମର ଅନଳରେ ବୀର-ଦର୍ପରେ ସଗର୍ବରେ ଡେଇଁ ପଡୁଥିଲେ । ଯୁଦ୍ଧ ବାଦ୍ୟ ବାଜିବା ମାତ୍ରେ ସେମାନଙ୍କ ପାଦ ସ୍ଥିର ହୋଇ ରହି ପାରୁନଥିଲା । ଆଜି ତାହା ପାଇକନାଟରେ ପରିଣତ ହୋଇଛି ଓ କେବଳ ଆମୋଦପ୍ରମୋଦରେ ଦେଖାଯାଉଛି । ସେତେବେଳେ ପାଇକ ଜୀବନ ପଣ କରି ଯଷ୍ଟି ଖୋଡ଼ କାଢୁଥିଲେ ।

ସମଗ୍ର ଖଣ୍ଡାୟତ ସମାଜ ପାଇକ ସେନାର ଅନ୍ତର୍ଗତ ଥିଲା; କିନ୍ତୁ ସବୁ ପାଇକମାନେ ଖଣ୍ଡାୟତ ନ ଥିଲେ । ତାଙ୍କ ଛଡା ଓଡ଼ିଶାର ପଦାତିକ ସୈନ୍ୟ ଭିତରେ ରହୁଥିଲେ ବ୍ରାହ୍ମଣ, ବୈଶ୍ୟ, ଶୁଦ୍ର, ତେଲଙ୍ଗ, ମୁସଲମାନ ପ୍ରଭୃତି ଅନ୍ୟ ଜାତି ଓ ଧର୍ମର ଲୋକ ମଧ୍ୟ । ବିଭିନ୍ନ ଜାତି ଓ ସଂପ୍ରଦାୟର ପାଇକମାନେ ଶାନ୍ତି ସମୟରେ ନିଜ ନିଜ ଘରେ ଯେ ଯାହା ଗୋଷ୍ଠୀ ମଧ୍ୟରେ ରହି ଚଳୁଥିଲେ । କିନ୍ତୁ ଯୁଦ୍ଧବେଳେ ସମସ୍ତେ ଜାତି ଓ ସଂପ୍ରଦାୟଗତ ଭେଦ ପୋଛିଦେଇ କାନ୍ଧକୁ କାନ୍ଧ ଲଗାଇ ଏକତ୍ର ଲଢେଇ ଯେପରି କରୁଥିଲେ; ଚଳଣିଚଳ ମଧ୍ୟ ସେହିପରି ହେଉଥିଲେ । ତେବେ ପାଇକ ମାନଙ୍କ ମଧ୍ୟରେ ଶ୍ରେଣୀଭେଦ ଯେ ନ ଥିଲା ତା' ନହେଁ । ଅସ୍ତ୍ରଶସ୍ତ୍ର ଓ କାର୍ଯ୍ୟଭେଦରେ ସେମାନଙ୍କୁ ତିନି ଶ୍ରେଣୀରେ ବିଭକ୍ତ କରାଯାଉଥିଲା । ତା' ମଧ୍ୟରୁ ଗୋଟିଏ ଶ୍ରେଣୀର ନାମ ଥିଲା 'ପହାରୀ' । ଏମାନେ ମୁଖ୍ୟତଃ ଦୁର୍ଗ ଓ ରାଜ-ପ୍ରାସାଦର ପ୍ରହରୀ କାର୍ଯ୍ୟ କରୁଥିଲେ; ଲମ୍ବ ଶସ୍ତ୍ର ଏବଂ ସିଧା ଓ ଆଗଆଡ଼କୁ ଗୋଳିଆ ଖଣ୍ଡା ବ୍ୟବହାର କରୁଥିଲେ । ସେମାନଙ୍କ ଢାଲ କାଠରେ ତିଆରି ହେଉଥିଲା ଓ କାଠ ଉପରେ ଏକ ପ୍ରସ୍ତ ଚମ ଛିଆଣି ହୁଏ ଏବଂ ଲୁହା ଗୋଲ-ମାନ ବସିଥାଏ । ଆଉ ଏକ ଶ୍ରେଣୀ ପାଇକଙ୍କ ନାମ 'ବଣୁଆ' ଏମାନେ ପ୍ରଥମେ ଧନୁର୍ବାଣ ବ୍ୟବହାର କରୁଥିଲେ ଓ ପରେ ବନ୍ଧୁକ ସେମାନଙ୍କର ଆୟୁଧ ହେଲା । ତୃତୀୟ ଶ୍ରେଣୀର ପାଇକ 'ଢେଙ୍କିଆ' । ଏମାନେ ଉଭୟ 'ପହାରୀ' ଓ 'ବଣୁଆ' ଶ୍ରେଣୀର ପାଇକଙ୍କ ଅସ୍ତ୍ର ଶସ୍ତ୍ର ବ୍ୟବହାର କରୁଥିଲେ । ଏ ତିନି ଶ୍ରେଣୀର ପାଇକମାନଙ୍କ ନାମ ଓ କାର୍ଯ୍ୟର ପ୍ରକାରରେ ଭେଦ ଥିଲେ ସୁଦ୍ଧା, ପରିଚ୍ଛେଦରେ ବିଶେଷ କିଛି ପ୍ରଭେଦ ନ ଥିଲା । ସମସ୍ତଙ୍କ ପରିଚ୍ଛଦ ବିଚିତ୍ର ଧରଣର ଥିଲା । ସେମାନେ ସମଗ୍ର ଦେହ ଚମଡିଆରି ବର୍ମରେ ଆବୃତ କରୁଥିଲେ ଓ ମୁଣ୍ଡରେ ଶିରସ୍ତ୍ରାଣ ପିନ୍ଧୁ-ଥିଲେ । ସମସ୍ତେ ପ୍ରତ୍ୟହ ଦେହ ହଳଦୀ ଲଗାଉଥିଲେ ଏବଂ କପାଳରେ ଗୋଟିଏ ବଡ଼ ସିନ୍ଦୂର ଟୋପା ଘେନୁଥିଲେ । ପ୍ରତ୍ୟେକ ପାଇକର ଦୁଇପଟା ବଡ଼ ବଡ଼ ନିଶ ରହୁଥିଲା । ଶତ୍ରୁ ସେମାନଙ୍କୁ ଦେଖିଲେ ଯମଦୂତ ବୋଲି ମଣୁଥିଲେ ।

ଇଂରେଜ ୧୮୦୩ ମସିହାରେ ଓଡ଼ିଶାର ବାକି ସମଗ୍ର ଅଞ୍ଚଳ ଅଧିକାର କରିସାରି ବର୍ଷକ ପରେ ଖୋରଧା ନେଲେ । ସେତେବେଳେ ମୁକୁନ୍ଦଦେବ ଦ୍ୱିତୀୟ, ଇଂରେଜ-ମାନଙ୍କ ସହିତ ବିଶ୍ୱାସାଚରଣ କରି ନ ଥିଲେ । ମୁକୁନ୍ଦଦେବ ଇଂରେଜଙ୍କ ସହିତ ସନ୍ଧି କରିଥିଲେ ହେଁ ସେମାନେ କ୍ରମଶଃ ଭାବିଲେ, ସେ ନିଜ ପାଇକମାନଙ୍କୁ ଭିତରେ ଭିତରେ ସେମାନଙ୍କ ବିରୁଦ୍ଧରେ ମତାଉଛନ୍ତି । ସୁତରାଂ ଇଂରେଜମାନେ ତାଙ୍କୁ ବନ୍ଦୀକରି ପ୍ରଥମେ ବାରବାଟୀ କିଲାରେ ଓ ପରେ ମେଦିନୀପୁରରେ ରଖିଲେ । ଅବସ୍ଥା ଟିକିଏ ସୁଧୁରିବା ପରେ ତାଙ୍କୁ ବନ୍ଦୀଶାଳାରୁ ମୁକ୍ତି ଦିଆଗଲା ଅବଶ୍ୟ, କିନ୍ତୁ ଖୋରଧାରେ ପାଦ ପକାଇବାକୁ ନିଷେଧ କରାଗଲା । ଖୋରଧାର ଭୋଇବଂଶ ରାଜତ୍ୱ ସେତିକିରେ ଲୋପପାଇଲା । ଏହାପରେ ପାଇକ କୁଳର ମେରୁଦଣ୍ଡ ଚୂର୍ଣ୍ଣବିଚୂର୍ଣ୍ଣ କରିବା ଇଂରେଜଙ୍କ ପ୍ରଧାନ କାର୍ଯ୍ୟ ହେଲା । ସେଥିପାଇଁ ଇଂରେଜ ଶାସନକର୍ତ୍ତା ମେଜର ଫ୍ଲେଚର (Major Fletcher) ସବୁ ରକମର କୂଟନୀତି ପ୍ରୟୋଗ କରିବାକୁ ଆରମ୍ଭ କଲେ । ପାଇକମାନେ ଅବହମାନ କାଳରୁ ଯେଉଁ ନିଷ୍କର ଜାଗିର ଭୋଗ କରି ଆସୁଥିଲେ ତାହା ସେ ଛଡ଼ାଇ ନେଇ ଖାସ୍ ଦଖଲରେ ରଖିଲେ । ସବୁପ୍ରକାର ନିଷ୍କର ସତ୍ୱ ଉପରେ କରଧାର୍ଯ୍ୟ ହେଲା । ୧୮୦୫ ମସିହାରୁ ୧୮୧୬ ମସିହା—ଏହି ବାରବର୍ଷ ମଧ୍ୟରେ ଆଠଥର ବନ୍ଦୋବସ୍ତ କରାଗଲା ଏବଂ ପ୍ରତିଥର ଖଜଣା ବଢ଼ିବାକୁ ଲାଗିଲା । ତା'ଛଡ଼ା ବନ୍ଦୋବସ୍ତ କର୍ମଚାରୀମାନେ ଘୋର ବ୍ୟତିବ୍ୟସ୍ତ ହୋଇଗଲେ । ରାଜ୍ୟରୁ ଶ୍ରୀ ସମ୍ପଦ ତୁଟିଗଲା । ଖଜଣା କ୍ରମଶଃ ବଢ଼ିଲା ଓ କଠୋର ଭାବରେ ତାହା ଅସୁଲ କରାଗଲା । ତା' ପରେ ପୁଣି ରାଜସ୍ୱ ନୀତି ଏପରି ଧାର୍ଯ୍ୟ ହେଲା ଯେ କଉଡ଼ିରେ ଦେବ ଜଣଙ୍କ ଦେୟ ଦେବାକୁ ପଡ଼ିଲା । ମରହଟ୍ଟା ଅମଳରେ ଓ ତା' ପୂର୍ବରୁ ଭୂମିର ରାଜସ୍ୱ କଉଡ଼ିରେ ଆଦାୟ ହେଉଥିଲା । କିନ୍ତୁ ମେଜର ଫ୍ଲେଚର କଉଡ଼ି ପରିବର୍ତ୍ତେ ଟଙ୍କା ଧାର୍ଯ୍ୟ କଲେ । ଦୁହିଁଙ୍କ ଭିତରେ ଅନୁପାତ ରହିଲା ୫,୧୨୦ କଉଡ଼ିକି ଏକଟଙ୍କା । କିନ୍ତୁ ଟଙ୍କାର ପରିମାଣ ଓ ପ୍ରଚଳନ ଅଳ୍ପ ଥିବାଯୋଗେ ୭,୬୮୦ କଉଡ଼ିରୁ କମ୍ ହେଲେ ଟଙ୍କାଟିଏ ମିଳୁ ନ ଥିଲା । ସେଥି ସକାଶେ ଖଜଣା ଟଙ୍କାକ ସ୍ଥାନରେ ହବୃତରେ ଦେଢ଼ଟଙ୍କା ଦେବାକୁ ପଡ଼ିଲା । ପାଇକମାନେ ବୁଝି ପାରିଲେ ଯେ ଇଂରେଜ ହାତରେ ନମାରି ଭାତରେ ମାରିବାକୁ ବସିଛି ଏବଂ ଖୋରଧାର ବହୁକାଳରୁ ପ୍ରତିଷ୍ଠିତ ଆର୍ଥିକ ମେରୁଦଣ୍ଡ ଭାଙ୍ଗି ପକାଉଛି । ତା'ପରେ ପୁଣି ଅବହମାନ କାଳରୁ ଶାନ୍ତି ସମୟରେ ପାଇକମାନେ ଚିଲିକା ପାଣିରୁ ଅବାଧରେ ଲୁଣ ମାରି ଆସୁଥିଲେ । ଇଂରେଜ ସରକାର ତା' ଉପରେ ଖୋଟିଏ କର ବସାଇ ଦେଲେ ଏବଂ କ୍ରମେ ଲୁଣ ମାରିବା ବିଷୟରେ ଗୋଟି ଗୋଟି ହୋଇ ନାନା କଠୋର ନିୟମ ପ୍ରବର୍ତ୍ତିତ ହେଲା । ଅନେକ ବେଆଇନ ଲୁଣ ମାରିବା ଅପରାଧରେ ଧରା ହୋଇ ଦଣ୍ଡିତ ହେଲେ ଓ କଏଦିଖାନାକୁ ନିଆଗଲେ । ଜେଲରୁ ଫେରିଲା ପରେ ସମାଜ ମଧ୍ୟରେ ସେମାନଙ୍କୁ ପତିତ ହୋଇ ରହିବାକୁ ପଡ଼ିଲା । ତା' ପରେ ପୁଲିସ କର୍ମଚାରୀଙ୍କ ଅତ୍ୟାଚାର ଅସହନୀୟ ହୋଇ ଉଠିଲା । ସେତେବେଳେ ବଙ୍ଗାଳୀମାନେ ସରକାରଙ୍କ ପ୍ରଧାନ ପ୍ରଧାନ କର୍ମଚାରୀ ଥିଲେ । ନିଜ ନିଜର ସ୍ୱାର୍ଥ ସିଦ୍ଧି ନିମନ୍ତେ ସେମାନେ ଯେ କଦର୍ଯ୍ୟ ଆଚରଣ କରୁଥିଲେ ତାହା ପାଇକମାନଙ୍କୁ ବିଶେଷ ଉତ୍ତେଜିତ କରୁଥିଲା । ଏହିପରି ନାନା ବିଶୃଙ୍ଖଳା ଓ ସାମାଜିକ ବିଭ୍ରାଟ ଘୁରିଆସି ବ୍ୟାପିଗଲା । ସେଥିରେ ଦେଖାଗଲା ଯେ ଏକେ ପାଇକକୁଳର ଭାଙ୍ଗିଯାଉଛି; ତା'ପରେ ପୁଣି ସମଗ୍ର ଖୋରଧାର ସାମାଜିକ ଜୀବନ ଉପରେ ମଧ୍ୟ ଭୀଷଣ କୁଠାରାଘାତ ହେଉଛି । ସୁତରାଂ ଇଂରେଜ ଶାସନକୁ କିପରି ସମୂଳେ ରାଜ୍ୟରୁ ଉପାଡ଼ି ଫିଙ୍ଗି ଦେବେ, ସେଥିପାଇଁ ସମସ୍ତେ ବ୍ୟାକୁଳ ହୋଇ ପଡ଼ିଲେ ।

ସୈନ୍ୟ ଯେତେ ଶକ୍ତିଶାଳୀ ହୁଅନ୍ତୁ, ଯେତେ ଶାରୀରିକ ବଳ ବା ସମର କୁଶଳତା ଥାଉ, ସେମାନେ ଯେତେ ପ୍ରାଣଦେବାକୁ ପ୍ରସ୍ତୁତ ଥାଆନ୍ତୁ, ସମୁଦ୍ର ବକ୍ଷରେ ଜାହାଜ ପରି ଚାଳକ ଅଭାବରେ ଲକ୍ଷ୍ୟସ୍ଥଳରେ ଯାଇ ପହଞ୍ଚିବା ସେମାନଙ୍କ ପକ୍ଷେ ଅସମ୍ଭବ । ଖୋରଧାର ପାଇକ ସେନା ଶକ୍ତିର ଆଧାର ରୂପେ କେବଳ ଦୁଇଜଣଙ୍କୁ ଜାଣିଥିଲେ, ଜଣେ ଭୋଇବଂଶର ରାଜା ଓ ଅନ୍ୟ ଜଣକ ଆପଣାର ପ୍ରଧାନ ସେନାପତି । ପ୍ରଧାନ ସେନାପତି ମଧ୍ୟ ସେହିପରି ରାଜ୍ୟ ମଧ୍ୟରେ ଦୁଇଗୋଟି ଶକ୍ତି ଦେଖୁଥିଲେ, ଗୋଟିଏ ସେହି ଭୋଇବଂଶର ରାଜଶକ୍ତି, ଅପରଟି ନିଜର ବିଶାଳ ପାଇକବାହିନୀ । ଖୋରଧା ରାଜାଙ୍କର ପାଇକ ସେନାନୀ ଯେପରି ବେତନଭୋଗୀ ଚାକିରିଆ ନ ଥିଲେ ତାଙ୍କ ପ୍ରଧାନ ସେନାପତି ବକ୍ସି ମଧ୍ୟ ସେହିପରି ରାଜାଙ୍କ-ଠାରୁ ବେତନ ପାଇ ସେନାପତି ଚାକିରି କରୁନଥିଲେ । ତାଙ୍କର ମଧ୍ୟ ନିଷ୍କର ଜାଗିର ଥିଲା । ସେ ସମଗ୍ର ରୋଡଙ୍ଗ କିଲ୍ଲାର ଉପସ୍ୱତ୍ୱ ବଂଶ ପରମ୍ପରାକ୍ରମେ ଅତି ସାମାନ୍ୟ ଜମାରେ ଭୋଗକରି ଆସୁଥିଲେ । ଖୋରଧାର ରାଜା ବୀରକିଶୋର ଦେବ ରାହାଙ୍ଗ, ଚବିଶକୁଦ, ଲେମ୍ବାଇ ଓ ସିରାଇ ପ୍ରଗଣାମାନ ମରହଟ୍ଟା ସୁବାଦାର ଶିବଭଟ୍ଟଙ୍କୁ ସୈନ୍ୟବ୍ୟୟ ଚୁକ୍ତି ଅନୁସାରେ ଦଖଲ ବନ୍ଧକ ସ୍ୱରୂପ ଦେଇ ପକାଇଥିଲେ । ସେତେବେଳେ ରୋଡ଼ଙ୍ଗ ବକ୍ସି ନିଜ କିଲ୍ଲା ଖଣ୍ଡିକ ମରହଟ୍ଟାଙ୍କଠାରୁ କିଣି ଆଣିଲେ । ତା'ପରେ ସେ କିଲ୍ଲା ଆଉ ରୋଡ଼ଙ୍ଗ ବକ୍ସିଙ୍କର ଜାଗିର ହୋଇ ରହିଲା ନାହିଁ, ସ୍ୱକୀୟ ସମ୍ପତ୍ତି ହୋଇଗଲା । କିନ୍ତୁ ଓ୍ୱାଲଟର ୟୁଏରଙ୍କ (Walter Ewer) ମତରେ ବକ୍ସି ଜଗବନ୍ଧୁଙ୍କ ପୂର୍ବ ବଂଶଧରମାନେ ରୋଡ଼ଙ୍ଗ କିଲ୍ଲା ବୈବାହିକ ସୂତ୍ରରେ ପାଇଥିଲେ । ସେ ଯାହା ହେଉନା କାହିଁକି ଇଂରେଜ ଖୋରଧା ଜୟ କରିବା ସମୟକୁ ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟ ରୋଡ଼ଙ୍ଗର ଖୋଦ ମାଲିକ ।

ବକ୍ସି ଜଗବନ୍ଧୁ ରାଜକୁଳସମ୍ଭୂତ ଥିଲେ ଓ ରାଜାଙ୍କ ବ୍ୟତୀତ ସେ ସମଗ୍ର ଦେଶ ତଥା ପାଇକ ସମାଜର ସର୍ବୋଚ୍ଚ ସମ୍ମାନର ପାତ୍ର ଥିଲେ । ସେ ଗଞ୍ଜାମ ଜିଲ୍ଲାର ଶେରଗଡ଼ ରାଜବଂଶ ଓ କଟକ ଜିଲ୍ଲାର ବଡ଼ମ୍ବା ରାଜବଂଶ ସହିତ ବୈବାହିକ ସମ୍ପର୍କ ସ୍ଥାପନ କରିଥିଲେ । ଜଗବନ୍ଧୁ ପିଲାଦିନରୁ ରଣକୌଶଳ ଓ ସମର ବିଦ୍ୟା

ଶିକ୍ଷାଲାଭ କରିଥିଲେ । ବର୍ଣ୍ଣ ଗୌର, କପାଳ ଉନ୍ନତ, ଆଖିରେ ଜ୍ୟୋତି ଓ ଶରୀରର ମାଂସ-ପେଶୀମାନ ବଳିଷ୍ଠ ଏବଂ ସୁଦୃଢ଼ । ଦେହରେ ଅସୀମ ବଳ । କଥିତ ଅଛି, ଥରେ ଖୋର୍ଦ୍ଧାର ଏକ ମନ୍ଦିର ବେଢ଼ାରେ ଥିଲାବେଳେ ତାଙ୍କ ପିଠି କୁଣ୍ଡାଇ ହେଲା । ସେ ହଠାତ୍ କିଛି ନ ପାଇ ମାଟିରେ ପୋତା ହୋଇଥିବା ଏକ ୧୦ଫୁଟ× ୫ଫୁଟ × ୨½ ଫୁଟ ଆକାରର ପଥରରେ ନିଜ ପିଠି ଘଷିଲେ ଏବଂ ଫଳରେ ପଥରଟି ମାଟିର ଅଧାଅଧି ଉପରକୁ ଉଠିଗଲା । ଏଥିରୁ ତାଙ୍କର ଶାରୀରିକ ବଳ ଜଣାଯାଏ । ଜଗବନ୍ଧୁଙ୍କ ଜନ୍ମ ତାରିଖ ବର୍ତ୍ତମାନ ସୁଦ୍ଧା ସଠିକ୍ ଭାବେ ନିର୍ଣ୍ଣୟ କରାଯାଇ ନାହିଁ, କିନ୍ତୁ ନିଃସନ୍ଦେହରେ ଏତିକି କୁହାଯାଇପାରେ ଯେ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ସେ ଜନ୍ମ ଗ୍ରହଣ କରିଥିଲେ; ସମ୍ଭବତଃ ୧୭୭୦ ମସିହା ପରେ । ଜଗବନ୍ଧୁଙ୍କ ଦୁଇଟି ସ୍ତ୍ରୀ ଥିଲେ । ପ୍ରଥମ ସ୍ତ୍ରୀଙ୍କ ନାମ ରାଧାମଣି ଜେମା ଦେଈ ଓ ଦ୍ୱିତୀୟ ସ୍ତ୍ରୀଙ୍କ ନାମ ଚତୁର ମଣି ଜେମା ଦେଈ । ନିଜ ପୁଅଙ୍କ ନାମ ଗୋପୀନାଥ ବିଦ୍ୟାଧର । ପାଳିତ ପୁଅଙ୍କ ନାମ ଶ୍ୟାମସୁନ୍ଦର ରାୟ ଓ ପାଳିତା ଝିଅଙ୍କ ନାମ ପଦ୍ମା ଦେଈ ।

ଇଂରେଜମାନେ ଓଡ଼ିଶା ଅଧିକାର କରିବାବେଳେ ବକ୍ସି ଜଗବନ୍ଧୁ ରୋଡଙ୍ଗ କିଲ୍ଲାର ଅଧିକାରୀ ଥିଲେ, ଏହା ଏଥିପୂର୍ବରୁ କୁହାଯାଇଛି । ସେତେବେଳେ ଇଂରେଜ ସରକାରଙ୍କ ପ୍ରତିନିଧି କର୍ଣ୍ଣେଲ ହାର୍‌କୋର୍ଟ (Lt. Col. G. Harcourt) ଜଗବନ୍ଧୁଙ୍କ ଦଲିଲପତ୍ର ଦେଖି ତାଙ୍କୁ ରୋଡଙ୍ଗର ଜମିଦାର ବୋଲି ସ୍ୱୀକାର କଲେ । ତା' ପରବର୍ଷ ପୁଣି ତିନିବର୍ଷ ପାଇଁ ତାଙ୍କ ସହିତ ନୂତନ ବନ୍ଦୋବସ୍ତ ହେଲା । ଏଥି ମଧ୍ୟରେ କୃଷ୍ଣଚନ୍ଦ୍ର ସିଂହ କଲିକତା ନିକଟବର୍ତ୍ତୀ ପାଇକପଡ଼ାର ଜଣେ ବଙ୍ଗାଳୀ ପ୍ରଥମେ କଲେକ୍ଟରଙ୍କର ଦେୱାନ ଥିଲେ । ସେ ନିଜର ଛଳ କୌଶଳ ପ୍ରୟୋଗ କରି ଚକ୍ରାନ୍ତରେ ରୋଡଙ୍ଗ କିଲ୍ଲା ଆତ୍ମସାତ୍ କରି ନେଲେ ଓ 'ରାହାଙ୍ଗ ଓଗେର,' ପ୍ରଗଣାର ଜମିଦାର ହୋଇ ବସିଲେ । କୃଷ୍ଣଚନ୍ଦ୍ର ସିଂହ ରୋଡଙ୍ଗ ଦଖଲ କରିବାର ଚେଷ୍ଟା କରନ୍ତେ ଜଗବନ୍ଧୁ ବାଧା ଦେଲେ । ବନ୍ଦୋବସ୍ତ କମିଶନର ବୁଲରଙ୍କଠାରେ କୃଷ୍ଣଚନ୍ଦ୍ର ଆପଣାର ରୋଡଙ୍ଗ ଦଖଲ ଦାବୀକଲେ । ବୁଲର୍ ସାହେବଙ୍କ ବିଚାରରେ ଜଗବନ୍ଧୁଙ୍କ ମୌଳିକ ଅଧିକାର ସନ୍ଦେହ-ଜନକ ବୋଧ ହେଲା ଏବଂ ଉପଯୁକ୍ତ ଅଦାଲତରେ ଆପଣାର ସ୍ୱତ୍ୱ ସାବ୍ୟସ୍ତ ନ କରିବା ପର୍ଯ୍ୟନ୍ତ ଜଗବନ୍ଧୁ ରୋଡ଼ଙ୍ଗ କିଲ୍ଲାରୁ ବେଦଖଲ ହେଲେ । ଫଳରେ ଜଗବନ୍ଧୁଙ୍କୁ ଗୋଟିଏ ଚେର ଉପୁଡ଼ା ଗଛ ପରି ପବନରେ ଉଡ଼ିବାକୁ ହେଲା । ଖୋର୍ଦ୍ଧା ରାଜ୍ୟ ସାରା ସେତେବେଳେ ଯାଇଛି ଓ ତାହାର ଉଦ୍ଧାର ଲାଗି ବାଟ ମିଳୁ ନାହିଁ, ସେତେବେଳେ ନିଜର ସାମାନ୍ୟ କିଲ୍ଲା ଲାଗି ଇଂରେଜ କର୍ମଚାରୀଙ୍କ ଦ୍ୱାରସ୍ଥ ହେବାକୁ ବକ୍ସି ପସନ୍ଦ କଲେନାହିଁ । ଇଂରେଜ ମଧ୍ୟ ତାଙ୍କର ଛିଣ୍ଡିଯାଇଥିବା ଚେର ପୁଣି ଖୋର୍ଦ୍ଧା ମାଟିରେ ପୋତିବାକୁ ଇଚ୍ଛା କରୁ ନ ଥିଲେ । ସେମାନେ ବୁଝିଥିଲେ ଯେ ଖୋର୍ଦ୍ଧାରେ ଇଂରେଜ ରାଜ୍ୟର ଶତ୍ରୁ ଯଦି କେହି ଥାଏ ସେ ହେଉଛନ୍ତି ପାଇକ ବାହିନୀର ମଥାମଣି ବକ୍ସି ।

ଏହାଦେଖି ପ୍ରଜାମାନେ ସ୍ୱତଃପ୍ରବୃତ୍ତ ହୋଇ ସ୍ୱେଚ୍ଛାଦାନରେ ଜଗବନ୍ଧୁଙ୍କ ଭରଣପୋଷଣ ଚଳାଇଲେ, କିନ୍ତୁ କେତେକାଳ ବା ସେ ପ୍ରଭୁଭକ୍ତ ପ୍ରଜାଙ୍କ ଦାନରେ ଜୀବିକା ଚଳାନ୍ତେ? ଖୋର୍ଦ୍ଧା ରାଜବଂଶର ରାଜତ୍ୱ ଲୋପ ପରେ ତାଙ୍କର ସକଳ ଉପସ୍ୱତ୍ୱ ଯାଇ ବାକୀ କେବଳ ରୋଡଙ୍ଗ କିଲ୍ଲା ହିଁ ତାହାଙ୍କର ସର୍ବସ୍ୱ ଥିଲା । ୧୮୧୪ ମସିହା ଜୁନ ମାସରେ ସେ ସେଥିରୁ ମଧ୍ୟ ବଞ୍ଚିତ ହେବାରୁ କୌଣସି ଆଉ କିଛି ଆଶ୍ରୟ ନ ଦେଖି ସ୍ଥିର କଲେ ଯେ ଆପଣାର ମହାରାଜାଙ୍କୁ ପୂର୍ବପରି ଖୋର୍ଦ୍ଧା ରାଜ ସିଂହାସନରେ ନ ବସାଇବା ପର୍ଯ୍ୟନ୍ତ ତାଙ୍କର ତଥା ପ୍ରଜାଗଣଙ୍କ ଦୁର୍ଦ୍ଦଶା ଘୁଞ୍ଚିବାର ଅନ୍ୟ ସମ୍ଭାବନା ନାହିଁ ।

ଜଗବନ୍ଧୁଙ୍କ ମନ ମଧ୍ୟରେ ଏହିରୂପ ବିଦ୍ରୋହଭାବ ଜନ୍ମିବା ବେଳକୁ ୧୮୧୭ ଖ୍ରୀଷ୍ଟାବ୍ଦର ମାର୍ଚ୍ଚ ମାସରେ ଘୁମୁସରରୁ ୪୦୦ କନ୍ଧ ଖୋର୍ଦ୍ଧା ରାଜ୍ୟ ମଧ୍ୟରେ ପଶି ବିଦ୍ରୋହ ଆରମ୍ଭ କଲେ । ଘୁମୁସର ରାଜାଙ୍କର ପ୍ରଧାନ ସେନାପତି ଓ ବକ୍ସିଜଗବନ୍ଧୁଙ୍କ ମଧ୍ୟରେ ବୈବାହିକ ସମ୍ପର୍କ ଆଗରୁ ଥିଲା । ଖୋର୍ଦ୍ଧା ପାଇକଙ୍କ ମଧ୍ୟରେ ବିଦ୍ରୋହ ବହ୍ନି ବହୁ କାଳର ଅତ୍ୟାଚାର ମଧ୍ୟରେ ଜୁଳୁଜୁଳୁ-ଥିଲା । ଏହି କନ୍ଧ ବିଦ୍ରୋହରେ ତାହା ହଠାତ୍ ଜଳି ଉଠିଲା ଏବଂ ବକ୍ସି ଜଗବନ୍ଧୁ ଏହାକୁ ପରମ ସୁଯୋଗ ଜ୍ଞାନ କରି ଜୀବନର ଶେଷ ପରୀକ୍ଷା ସ୍ୱରୂପ ଏହି ବିଦ୍ରୋହ ବହ୍ନିରେ ଆପଣାକୁ ଝାସଦେଲେ । ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ପାଇକମାନେ ବିଦ୍ରୋହୀ କନ୍ଧମାନଙ୍କ ସଙ୍ଗେ ଯୋଗଦେଇ ବାଣପୁର ଆକ୍ରମଣ କଲେ ଏବଂ ପୁଲିସ ଥାନା, ଅନ୍ୟାନ୍ୟ ସରକାରୀ ଘର ଓ କଚେରୀ ଲୁଣ୍ଠନ କରି ଶହେରୁ ଊର୍ଦ୍ଧ୍ୱ ଲୋକଙ୍କୁ ମାରି ଟ୧୫,୦୦୦ଙ୍କା ମୂଲ୍ୟର ଧନ ହସ୍ତଗତ କଲେ । ଚିଲିକା ମଧ୍ୟରେ ଲୁଣ ହାକିମଙ୍କ ନୌକା ଲୁଣ୍ଠନ କଲେ । ବାଣପୁର ବିଜୟ ପ୍ରଭାବରେ ବିଦ୍ରୋହୀମାନେ ଖୋର୍ଦ୍ଧାର କଚେରୀ ଓ ସରକାରୀ ଘରମାନ ଭାଙ୍ଗିଦେଲେ ଓ ଖଜଣାଖାନା ଲୁଣ୍ଠନ କରିଦେଲେ । ଆଉ ଏକ ଦଳ ପାଇକ ଲେମ୍ବାଇ ଆକ୍ରମଣ କଲେ । କଟକରେ ଏହି ବିଦ୍ରୋହ ସମ୍ବାଦ ପହଞ୍ଚିବା ମାତ୍ରେ ଦୁଇ ଦଳ ସୈନ୍ୟ ଖୋର୍ଦ୍ଧା ଓ ଲେମ୍ବାଇ ରକ୍ଷା କରିବା ନିମନ୍ତେ ଯଥାକ୍ରମେ ଲେଫଟନାଣ୍ଟ ପ୍ରାଇଡକସ୍ (Lt. Prideaux) ଓ ଲେଫଟ୍‌ନାଣ୍ଟ ଫାରିସ (Lt. Farris) ଙ୍କ ଅଧୀନରେ ପ୍ରେରିତ ହେଲେ ଏବଂ ନିଜେ ମାଜିଷ୍ଟ୍ରେଟ ଏଡ୍‌ଓ୍ୱାର୍ଡ ଇମ୍ପେ (Edward Impey) ୬୦ ଜଣ ସିପାହୀଙ୍କ ସଙ୍ଗେ ଲେଫଟ୍‌ନାଣ୍ଟ ଟ୍ରାଭିସ୍‌ଙ୍କ (Lt. Travis) ପରିଚାଳନାରେ ଏପ୍ରିଲ ୧ ତାରିଖରେ ଖୋର୍ଦ୍ଧା ଯାତ୍ରାକଲେ ଓ ତା'ପରଦିନ ସନ୍ଧ୍ୟାକୁ ଖୋର୍ଦ୍ଧାର ୧୧ କିଲୋମିଟର ଦୂରବର୍ତ୍ତୀ ଗଙ୍ଗପଡ଼ାରେ ପହଞ୍ଚିଲେ । ପାଇକମାନେ ସେଠାରେ ଏକ ପ୍ରାଚୀର ନିର୍ମାଣକରି ଗୋଳାଗୁଳି ଧରି ଖୋର୍ଦ୍ଧା ପଥ ଅବରୋଧ କରି ରହିଥିଲେ । ହଠାତ୍ ଇଂରେଜ ସିପାହୀମାନଙ୍କୁ ଦେଖି ସେମାନେ ଗୁଳିବର୍ଷଣ କଲେ । ଏଥି ମଧ୍ୟରେ କ୍ରମେ ପାଇକମାନଙ୍କ ସଂଖ୍ୟା ବଢ଼ି ତିନି ହଜାର ହେଲା । ମାଜିଷ୍ଟ୍ରେଟ ଏଡ୍‌ଓ୍ୱାର୍ଡ ଇମ୍ପେ

(Edward Impey)ଯଥାସମ୍ଭବ ଦ୍ରୁତ ଗତିରେ ସଦଳବଳେ ପଳାଇଆସି ବାଲକାଟି ଗ୍ରାମରେ ଆଶ୍ରୟନେଲେ । ସେଠାରେ ମଧ୍ୟ ସେ ପାଇକମାନଙ୍କ ଆକ୍ରମଣରେ ସନ୍ତ୍ରସ୍ତ ହୋଇ ହାତୀ ବନ୍ଧୁକ ପ୍ରଭୃତି ଯୁଦ୍ଧୋପକରଣ ସବୁ ହରାଇ କଟକ ପଳାଇଗଲେ । ଯେଉଁ ସୈନ୍ୟଦଳ ଦୁଇଟି ଖୋର୍ଦ୍ଧା ଓ ପିପିଲିକୁ ଯାଇଥିଲେ, ସେମାନଙ୍କ ଦୁର୍ଦ୍ଦଶା ମଧ୍ୟ ମାଜିଷ୍ଟ୍ରେଟଙ୍କ ଦଳ ଅପେକ୍ଷା କିଛି ଅଳ୍ପ ନ ଥିଲା, ସେମାନେ ସକଳ ସାଜସରଞ୍ଜାମ ହରାଇ ପିପିଲି ବାଟେ କଟକ ପଳାୟନ କଲେ । ପାଇକମାନେ ପିପିଲି ଅଧିକାର କରି ପୁଲିସଥାନା ପୋଡ଼ିଦେଲେ ଓ ଲେଫ୍‌ଟେନାଣ୍ଟ ଫାରିସଙ୍କୁ ମାରିଦେଲେ । ଖୋର୍ଦ୍ଧା ଓ ପିପିଲିକୁ ସୈନ୍ୟ ପଠାଇବା ସଙ୍ଗେ ସଙ୍ଗେ ଏକ ଦଳ ସୈନ୍ୟ ପୁରୀ ସହର ରକ୍ଷା କରିବା ନିମନ୍ତେ ପଠା ହୋଇଥିଲେ । ପୁରୀ ପହଞ୍ଚିବା ପରେ ସେମାନଙ୍କ ମଧ୍ୟରୁ ୫୫୦ ଜଣ ସୈନ୍ୟ ଯୁଦ୍ଧୋପକରଣ ସହ ଲି ଫାରେ(Captain Le Favre) ସେନାପତିଙ୍କ ଅଧୀନରେ ଏପ୍ରିଲ ୯ ତାରିଖରେ ଖୋର୍ଦ୍ଧା ଯାତ୍ରାକଲେ ଓ ସେଠାରେ ୧୨ ତାରିଖରେ ପହଞ୍ଚି ସାମରିକ ଆଇନ ଜାରିକଲେ । ସେହି ୧୨ ତାରିଖ ବେଳକୁ ବହୁ ସଂଖ୍ୟକ ପାଇକ ପୁରୀ ନିକଟସ୍ଥ ସକଳ ଗ୍ରାମରେ ଏକତ୍ରିତ ହୋଇ ଲୋକନାଥ ଘାଟ ବାଟେ ପୁରୀରେ ପଶି ସରକାରୀ କଚେରୀ ଓ ଗୃହମାନ ଭସ୍ମସାତ୍ କରିଦେଲେ । ମନ୍ଦିରର ସେବକମାନେ ଓ ସହରବାସୀ ବିଦ୍ରୋହୀଙ୍କ ସଙ୍ଗେ ଯୋଗ ଦେଲେ । ଇଂରେଜ ରାଜତ୍ୱ ଲୋପ ଏବଂ ଖୋର୍ଦ୍ଧା ମହାରାଜାଙ୍କ ରାଜତ୍ୱ ପ୍ରତିଷ୍ଠିତ ହେଲା, ଏହା ପଣ୍ଡାମାନେ ଘୋଷଣାକଲେ । ବିଦ୍ରୋହୀମାନେ ବିଶେଷ ଉତ୍ସାହିତ ହୋଇ ଇଂରେଜ ସୈନ୍ୟଙ୍କୁ ଏପ୍ରିଲ ୧୪ ତାରିଖରେ ଆକ୍ରମଣ କରିବାରୁ, ଇଂରେଜ ସେନାପତି ଓ୍ୱାଲିଙ୍ଗଟନ୍ (Captain Wallington) ଅନନ୍ୟୋପାୟ ହୋଇ ସୈନ୍ୟ ଓ କର୍ମଚାରୀଙ୍କୁ ନେଇ ଏପ୍ରିଲ୍ ୧୮ ତାରିଖରେ କଟକ ପଳାଇଗଲେ । ମାତ୍ର ବିଦ୍ରୋହୀମାନଙ୍କ ଏହି ବିଜୟ ବହୁ ସମୟ ସ୍ଥାୟୀ ହୋଇ ନ ଥିଲା । ଏପ୍ରିଲ ୯ ତାରିଖଦିନ ଖୋର୍ଦ୍ଧାକୁ ଯେଉଁ ସୈନ୍ୟମାନେ ପୁରୀରୁ ଯାଇଥିଲେ ସେମାନେ ଖୋର୍ଦ୍ଧାରେ ପହଞ୍ଚି ସାମରିକ ଆଇନ ଜାରି କରିବା ସଙ୍ଗେ ସଙ୍ଗେ ବିଦ୍ରୋହୀମାନଙ୍କର ପଛେ ପଛେ ଆସି ପଥ ମଧ୍ୟରେ ପାଇକ ଗ୍ରାମମାନ ଲୁଣ୍ଠନ କରି ଏପ୍ରିଲ ୧୮ ତାରିଖରେ ପୁରୀରେ ପହଞ୍ଚିଲେ । ପ୍ରାୟ ଏକ ହଜାର ପାଇକ ପୁରୀ ନିକଟରେ ଏକତ୍ରିତ ହୋଇଥିଲେ ; କିନ୍ତୁ ଇଂରେଜ ସୈନ୍ୟଙ୍କ ଆକସ୍ମିକ ଗୋଳା ବର୍ଷଣରେ ସେମାନେ ଛତ୍ରଭଙ୍ଗ ହୋଇ ପଳାୟନ କଲେ । ଇଂରେଜ ସେନାପତି ଲି ଫାରେ (Captain Le-Favre) ପୁରୀ ମଧ୍ୟରେ ପଶି ମୁକୁନ୍ଦ ଦେବଙ୍କୁ ବନ୍ଦୀ କଲେ । ଏହାପରେ ପାଇକ ଓ ଇଂରେଜମାନଙ୍କ ମଧ୍ୟରେ ବହୁବାର ଯୁଦ୍ଧ ଘଟିଲା । ବାରଙ୍ଗଗଡ଼ଠାରେ ପାଇକମାନେ ଖାଦ୍ୟ ଓ ଯୁଦ୍ଧ ସାମଗ୍ରୀ ବହୁ ପରିମାଣରେ ଜମା ରଖିଥିଲେ । ହାମିଲ୍‌ଟନ୍ ସାହେବ ଏହି ଦୁର୍ଗ ଅଧିକାର କଲେ । ଜୁନ୍ ୧୮୧୭ରେ ବିଦ୍ରୋହୀମାନେ ଗୋପ ଥାନା ପୋଡ଼ିଦେଲେ । କିନ୍ତୁ ପିପିଲିରୁ ୮୦ ଜଣ ସିପାହୀ ଯାଇ ଗୋପ ଶାନ୍ତି କଲେ ଓ ବିଦ୍ରୋହୀ ନେତା କରୁଣାକରଙ୍କୁ ବନ୍ଦୀ କଲେ । କନିକା ଓ କୁଜଙ୍ଗର ରାଜାମାନେ ପାଇକ ବିଦ୍ରୋହରେ ସାହାଯ୍ୟ କରୁଥିଲେ ଏବଂ ନାରାୟଣ ପରମଗୁରୁ ଓ ବାମଦେବ ପଟ୍ଟଜ୍ୟୋତିଷ ଯଥାକ୍ରମେ କୁଜଙ୍ଗ ଓ କନିକା ପାଇକମାନଙ୍କର ପ୍ରଧାନ ନାୟକ ଥିଲେ । ପାଇକମାନେ ଅସ୍ତରଙ୍ଗ, ତିରଣ ଓ ହରିହରପୁରର ଥାନାମାନ ପୋଡ଼ିଦେଲେ । କିନ୍ତୁ ସେପ୍‌ଟେମ୍ବର ମାସରେ ଇଂରେଜ ସୈନ୍ୟ କୁଜଙ୍ଗ ଯାତ୍ରା କରି ପାରାଦୀପ ହସ୍ତଗତ କଲେ ଓ ନୂଆଗଡ଼ ଅଧିକାର କଲେ । ବିଦ୍ରୋହୀ ନାୟକ ନାରାୟଣ ପରମଗୁରୁ ଓ ବାମଦେବ ପଟ୍ଟଜ୍ୟୋତିଷ ଧରା ହୋଇ ଯାବତ୍‌ଜୀବନ କାରାଦଣ୍ଡ ପାଇ ଆଲିପୁର ଜେଲରେ ରହିଲେ । କୁଜଙ୍ଗର ରାଜା ଇଂରେଜଙ୍କ ନିକଟରେ ଆତ୍ମ ସମର୍ପଣ କରି ବାରବାଟୀ କିଲ୍ଲାରେ ବର୍ଷେ କାଳ ବନ୍ଦୀ ରହିଲେ । ଅକ୍ଟୋବର ମାସ ମଧ୍ୟରେ ଖୋର୍ଦ୍ଧା ବ୍ୟତୀତ ଅନ୍ୟ ସବୁଠାରେ ଶାନ୍ତି ସ୍ଥାପିତ ହେଲା । ଖୋର୍ଦ୍ଧାରେ କେବଳ ଦଳେ ପାଇକ ସ୍ଥାନେ ସ୍ଥାନେ ଆକ୍ରମଣ କରୁଥିଲେ, ଏଣୁ ଶାନ୍ତି ରକ୍ଷା ନିମନ୍ତେ ୧୮୨୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବିଦ୍ରୋହ କେନ୍ଦ୍ରମାନଙ୍କରେ ଦଳେ ଦଳେ ସିପାହୀ ରଖାଯାଇଥିଲେ ।

୧୮୧୭ ମସିହା ଅକ୍‌ଟୋବର ମାସରୁ ଦୁଇଜଣ ଇଂରେଜ ବିଚାରକ ସାର୍ ଗେବ୍ରିଏଲ ମାର୍ଟିନ ଡେଲ୍ ଓ ଓ୍ୱାଲଟେର ଇଓର (Major General Sir Gabrial Martindell. Military Commissioner at Cuttack and walter Ewer, Judge and Magistrate. Cuttack) ବନ୍ଦୀ ବିଦ୍ରୋହୀମାନଙ୍କର ବିଚାର ନିମନ୍ତେ ଖୋର୍ଦ୍ଧାରେ ଅବସ୍ଥାପିତ ହେଲେ । ବିଦ୍ରୋହୀମାନଙ୍କ ମଧ୍ୟରୁ ଅନେକ ପ୍ରାଣଦଣ୍ଡ, କେହି କେହି ଦ୍ୱୀପାନ୍ତର ଏବଂ ଅନ୍ୟାନ୍ୟମାନେ କାରାଦଣ୍ଡ ପାଇଲେ । ରାଜା ମୁକୁନ୍ଦଦେବ ଇଂରେଜଙ୍କ ହାତରେ ବନ୍ଦୀ ହବା ପରେ ନିଜ ପୁତ୍ର ସହିତ ବାରବାଟୀ ଦୁର୍ଗ ଭିତରେ ଏକ କୁଡ଼ିଆ ଘରେ ଅବସ୍ଥାପିତ ହେଲେ ଏବଂ ଦୈନିକ ୮୨ଟଙ୍କା ହିସାବରେ ନିଜର ଓ ମାସିକ ଟ୫୦୦ଙ୍କା ହିସାବରେ ପରିବାରର ଭରଣପୋଷଣ ସରକାରୁ ଭତ୍ତା ପାଇଲେ । ସେ ଏହି ବନ୍ଦୀ ଅବସ୍ଥାରେ ୧୮୧୭ ମସିହା ଡିସେମ୍ବର ମାସରେ ମୃତ୍ୟୁ ବରଣ କଲେ । ଏହି ଡିସେମ୍ବର ମାସରେ କୁଜଙ୍ଗ ରାଜା ବନ୍ଦୀରୁ ମୁକ୍ତ ହୋଇ ନିଜ ଇଲାକାରେ ରହିବା ପାଇଁ ଅନୁମତି ପାଇଲେ । ଇତି ମଧ୍ୟରେ ଅନେକ ବିଦ୍ରୋହୀ ପାଇକ ଇଂରେଜଙ୍କ ଦ୍ୱାରା ବନ୍ଦୀ ହେଲେ କିନ୍ତୁ ମୁଖ୍ୟ ନେତା ପ୍ରଧାନ ସେନାପତି ବକ୍ସି ଜଗବନ୍ଧୁ ଇଂରେଜଙ୍କ ନିକଟରେ ଆତ୍ମସମର୍ପଣ ନ କରି ଘୁମୁସର ରାଜ୍ୟର ଘନ ଜଙ୍ଗଲରେ ଲୁଚି ରହିଲେ ଏବଂ ତାଙ୍କୁ ଧରାଇଦବା ପାଇଁ ଘୋଷଣାନାମା ପ୍ରକାଶ ପାଇଲା ।

ରବର୍ଟ କେର (Robert Ker) ୧୮୧୮ ମସିହା ଜୁନ ୧୦ ତାରିଖରେ କଟକରେ କମିଶନର ଭାବେ ଶାସନ ଭାର ଗ୍ରହଣ କଲେ ଏବଂ ସମଗ୍ର ଅଞ୍ଚଳରେ ଶାନ୍ତି ସ୍ଥାପନ ପାଇଁ ପ୍ରଗାଢ଼ ଚେଷ୍ଟା କଲେ । ଯେଉଁ ବିଦ୍ରୋହୀମାନେ ଆତ୍ମସମର୍ପଣ କରିବେ ସେମାନଙ୍କୁ ରାଜକ୍ଷମା ଦିଆଯିବ

ବୋଲି ଘୋଷଣା କରାଗଲା । କିନ୍ତୁ ଯେଉଁମାନେ ବନ୍ଦୀ ଅଛନ୍ତି ଏବଂ ଗୋପାଳ ଛୋଟରାୟ, ପୀତବାସ ମଙ୍ଗରାଜ, ପଦ୍ମନାଭ ଛୋଟରାୟ, ପିଣ୍ଡିକି ବାହୁବଳେନ୍ଦ୍ର ଓ କରୁଣାକର ପରମଗୁରୁଙ୍କୁ ଏହି ସୁବିଧାରୁ ବାଦ ଦିଆଗଲା । ଏପ୍ରିଲ ୧୮୧୮ ମସିହାରେ ପର୍ଶୁରାମ ରାଉତରାୟ ଓ ସଚ୍ଚିଦାନନ୍ଦ ପଟ୍ଟନାୟକଙ୍କୁ ମୃତ୍ୟୁଦଣ୍ଡ ଦିଆଗଲା ।

ସେପଟେମ୍ବର ମାସରେ ଗୋପାଳ ଛୋଟରାୟ ଏବଂ ତାଙ୍କର ଅନୁଗତ ବିଷ୍ଣୁ ପାଇକରାୟ, ରାମ ସିଂ, ନିଧି ପ୍ରଧାନ ଓ ନରସିଂହଙ୍କୁ ମୃତ୍ୟୁଦଣ୍ଡ ଦିଆଗଲା । ବାରୁଣେଇର ପଦ୍ମନାଭ ଛୋଟରାୟ ଧରାପଡ଼ି ମୃତ୍ୟୁଦଣ୍ଡ ପାଇଲେ ଏବଂ ଦଳେଇ ପିଣ୍ଡିକି ବାହୁବଳେନ୍ଦ୍ର ବନ୍ଦୀଶାଳାରୁ ଖସି ଯାଉଥିବା ଅବସ୍ଥାରେ ବାରଙ୍ଗ ନିକଟରେ ଇଂରେଜ ସୈନ୍ୟଙ୍କ ଦ୍ୱାରା ନିହତ ହେଲେ । କରୁଣାକର ପରମଗୁରୁ ଦ୍ୱୀପାନ୍ତର ଦଣ୍ଡ ପାଇ ଜେଲରୁ ଖସି ପଳାଇଲେ, କିନ୍ତୁ ପରେ ଧରାପଡ଼ିଲେ । ପରିଶେଷରେ ଲାଟ ସାହେବ ତାଙ୍କୁ ଦଣ୍ଡରୁ ମୁକ୍ତି ଦେଲେ । ଅନ୍ୟ ବିଦ୍ରୋହୀ ନେତାଙ୍କ ମଧ୍ୟରେ ମିର ହାଇଦର ଅଲି ଜେଲରେ ମଲେ । ସେନାପତିମାନେ ଯଥା, ଜଗବନ୍ଧୁ ସାହରା, ଧରମୁ ହରିଚନ୍ଦନ, ଲୋକନାଥ ବଳିଆରସିଂ, ରାମଚନ୍ଦ୍ର ସାମନ୍ତସିଂହାର ଆଦିକନ୍ଦ ବିଦ୍ୟାଧର, ଉପେନ୍ଦ୍ର ଜଗଦେବ, ବିଶ୍ୱନାଥ ହରିଚନ୍ଦନ, ଶ୍ରୀହରି ମାନସିଂ, ପୁରୁଷୋତ୍ତମ ମାନସିଂହ ଓ ଅନ୍ତର୍ଯ୍ୟାମି ପାହାଡସିଂ ଇଂରେଜଙ୍କଠାରେ ଆତ୍ମସମର୍ପଣ କଲେ । ଭଗବାନ ସିଂ ଜଙ୍ଗଲରେ ଲୁଚିଥିବା ବେଳେ ମରିଗଲେ ।

ଇଂରେଜମାନେ ଶେଷରେ ଏହି ବିଦ୍ରୋହକୁ ଦମନ କରିଦେଇଥିଲେ ମଧ୍ୟ ବିଦ୍ରୋହର ମୁଖ୍ୟ ନେତା ବକ୍‌ସି ଜଗବନ୍ଧୁଙ୍କୁ ଆଠ ବର୍ଷ ପର୍ଯ୍ୟନ୍ତ ଧରି ପାରି ନ ଥିଲେ । ସେ ପ୍ରଥମେ ଘୁମୁସରର ଘନ ଜଙ୍ଗଲରେ ଛଦ୍ମବେଶରେ ରହୁଥିଲେ । ତାଙ୍କର ଅନ୍ୟ ସହଯୋଗୀ କୃଷ୍ଣଚନ୍ଦ୍ର ବିଦ୍ୟାଧର ମଧ୍ୟ ସେହି ଘୁମୁସର ଜଙ୍ଗଲ କିମ୍ବା ତାହାର ପାଖାପାଖି ଅଞ୍ଚଳରେ ଲୁଚି ରହିଥିଲେ । ଜଗବନ୍ଧୁ ମଝିରେ ମଝିରେ ତାଙ୍କର ଶ୍ୱଶୁରଘର ସେରଗଡ ଜମିଦାରୀକୁ ଯାଉଥିଲେ ଏବଂ ଖୋରଧା ରାଜ୍ୟର ମୁକ୍ତି ପାଇଁ ଚେଷ୍ଟା କରୁଥିଲେ । ଲେଫ୍‌ଟନାଣ୍ଟ ଜି. ବି. ବେଲ(Lt.G.B. Bell) ମେଜର ରାଫ୍‌ସେଜ୍ (Major Roughsedge) ବ୍ରିଗାଡିଏର ଥୋମାସ୍ (Brigadier Thomas) ପ୍ରଭୃତି ଇଂରେଜ ସେନାପତିଗଣ ଅକ୍ଳାନ୍ତ ପରିଶ୍ରମ ଓ ଚକ୍ରାନ୍ତ କରି ମଧ୍ୟ ବକ୍‌ସି ଜଗବନ୍ଧୁଙ୍କୁ ଧରିପାରିଲେ ନାହିଁ । ପରିଶେଷରେ ଅକ୍‌ଟୋବର ୧୮୧୯ ମସିହାରେ ଜଗବନ୍ଧୁଙ୍କ ପରିବାରବର୍ଗଙ୍କୁ ବନ୍ଦୀରେ ବାରବାଟୀ ଦୁର୍ଗ ଭିତରେ ରଖାଗଲା । ବନ୍ଧୁ ପଟ୍ଟନାୟକଙ୍କ ପରିବାରବର୍ଗ ମଧ୍ୟ ବନ୍ଦୀହେଲେ । କିନ୍ତୁ ସେଥିରେ ମଧ୍ୟ ଜଗବନ୍ଧୁ ଟିକିଏ ହେଲେ ନଇଁଲେ ନାହିଁ । ତେଣୁ ଇଂରେଜ ସରକାର ଜଗବନ୍ଧୁଙ୍କ ପରିବାରବର୍ଗଙ୍କୁ ନଭେମ୍ବର ୧୮୨୦ ମସିହାରେ ଛାଡିଦେଲେ । ୧୮୨୦ ମସିହା ଓ ୧୮୨୧ ମସିହା ସାରା ଜଗବନ୍ଧୁଙ୍କୁ ଧରିବା ପାଇଁ ଇଂରେଜମାନେ ସମସ୍ତ ଚେଷ୍ଟାକରି ବିଫଳ ହେଲେ ।

ଏପରି ଲୁଚକାଳି ଖେଳ ୧୮୨୫ ମସିହା ମଧ୍ୟଭାଗ ଯାଏ । ତା'ପରେ ଉଭୟ ପକ୍ଷ ଏକ ଆପୋଷ ସମାଧାନ କରିବାପାଇଁ ଚାହିଁଲେ । ଏତିକିବେଳେ ଜଗବନ୍ଧୁ ରହୁଥାନ୍ତି ନୟାଗଡ଼ ରାଜାଙ୍କ ସୀମା ଭିତରେ । ଇଂରେଜମାନେ ନୟାଗଡ଼ ରାଜାଙ୍କ ଉପରେ ବହୁତ କଟକଣା ଜାରିକଲେ ଏବଂ ଜଗବନ୍ଧୁଙ୍କୁ ଆତ୍ମସମର୍ପଣ କରିବାପାଇଁ ପ୍ରବର୍ତ୍ତାଇବାପାଇଁ ଜୋର ଦେଲେ । ନୟାଗଡ଼ ରାଜାଙ୍କ ଦେବର୍ତ୍ତା ବଉଳୁ ପାଇକରାୟ ବହୁତ ଚେଷ୍ଟାକରି ଜଗବନ୍ଧୁଙ୍କୁ ଇଂରେଜଙ୍କ ସର୍ତ୍ତ ଗ୍ରହଣ କରିବାପାଇଁ ଶେଷରେ ରାଜି କରାଇଲେ । ଏହାପରେ ଜଗବନ୍ଧୁଙ୍କୁ କଟକ ଆଣିବାପାଇଁ ଇଂରେଜମାନେ ବିସ୍ତୃତ ଆୟୋଜନ କଲେ । ଓ୍ୱାଜ୍ ମହମ୍ମଦ (Waz Mahammad) ମଇ ୧୮୨୫ ସାଲରେ ଜଗବନ୍ଧୁଙ୍କୁ ଭେଟିବା ପାଇଁ ନୟାଗଡ଼ ଜମିଦାରୀର ଏକ ସୀମାନ୍ତ ଜାଗାକୁ ଗଲେ ଏବଂ ଜଗବନ୍ଧୁ ମଇ ୨୭ ତାରିଖ ୧୮୨୫ ସାଲରେ କଟକରେ ପହଞ୍ଚି ଏକ ରାଜିନାମାରେ ସ୍ୱାକ୍ଷର କଲେ । ଏହି ରାଜିନାମା ଅନୁସାରେ ସେ ମାସିକ ଏକ ଶତ ଟଙ୍କା ଭତ୍ତା ପାଇଲେ ଓ ବିନା ଅନୁମତିରେ କଟକ ଛାଡ଼ି ନ ଯିବା ପାଇଁ ସମ୍ମତ ହେଲେ । ଏହାପରେ କମିଶନର ଜଗବନ୍ଧୁଙ୍କ ମାସିକ ଭତ୍ତା ୧୫୦ ଟଙ୍କାକୁ ବଢ଼ାଇଦେବା ପାଇଁ ସୁପାରିଶ୍ କଲେ । ବଡ଼ ଲାଟ ଏଥିରେ ଖୁସି ହୋଇ ଜଗବନ୍ଧୁଙ୍କ ଭତ୍ତା ବଢ଼ାଇ ଦେଲେ ଏବଂ ତାଙ୍କ ଜାଗିରସବୁ ଫେରାଇଦେବାପାଇଁ ସମ୍ମତ ହେଲେ । ଜଗବନ୍ଧୁଙ୍କ ଅନ୍ୟତମ ସହଯୋଗୀ କୃଷ୍ଣଚନ୍ଦ୍ର ବିଦ୍ୟାଧର ଜାନୁଆରୀ ୧୮୨୬ରେ ଆତ୍ମସମର୍ପଣ କଲେ । ତାଙ୍କୁ ପ୍ରଥମେ ମାସିକ ୫୦ ଟଙ୍କା ଭତ୍ତା ଦିଆଗଲା ଏବଂ ପରେ ଏହା ମାସିକ ୧୦୦ ଟଙ୍କାକୁ ବଢ଼ାଇ ଦିଆଗଲା । ତା'ପରେ ଜଗବନ୍ଧୁଙ୍କ ଅବଶିଷ୍ଟ ସହଯୋଗୀମାନେ ଆତ୍ମସମର୍ପଣ କଲେ । ଏମାନେ ହେଲେ ଗୌରାଙ୍ଗ ବରିଶାଲ, ବନ୍ଧୁ ସାନ୍ତ୍ରା, କନେଇ ମାନସିଂହ, ହରିସାନ୍ତ୍ରା ୯ ପାଇକମାନଙ୍କ ମଧ୍ୟରେ ମଧୁ ବିଶୋଇ, ଭଗବାନ ଜେନା, ରାଜିବ ବିଶୋଇ ଏବଂ ଉଦ୍ଧବ ନାୟକ । ଏମାନଙ୍କୁ ସବୁ ବିନାଦଣ୍ଡରେ ଛାଡ଼ିଦିଆଗଲା । ଜଗବନ୍ଧୁ ନିଜେ ପରିବାରବର୍ଗଙ୍କ ସହ କଟକରେ ରହୁଥିଲେ ଏବଂ ଶନିବାର ୨୪ ତାରିଖ ଜାନୁଆରୀ ୧୮୨୯ ସାଲରେ ସେଠାରେ ମୃତ୍ୟୁବରଣ କଲେ । ଭାରତମାତା ତା'ର ଏକ ସୁଯୋଗ୍ୟ ସନ୍ତାନ ସବୁଦିନ ପାଇଁ ହରାଇଲା ଏବଂ ଓଡ଼ିଶା ନଭୋମଣ୍ଡଳରୁ ଏକ ଉଜ୍ଜ୍ୱଳ ତାରକା ଚିରଲୀନ ହେଲା ।

ଉପରୋକ୍ତ ବିବରଣୀରୁ ଜଣାଯାଏ ଯେ, ଓଡିଶାର ପାଇକ ବିଦ୍ରୋହ ବାସ୍ତବିକ ଏକ ଗଣ ବିପ୍ଳବ ଏବଂ ଖ୍ରୀଷ୍ଟାବ୍ଦ ୧୫୬୮ ପରେ ପାଇକ ବିଦ୍ରୋହ ହିଁ ଓଡିଶାର ସ୍ୱାଧୀନତା ପାଇଁ ଏକମାତ୍ର ଗଣ ଆନ୍ଦୋଳନ । ଏହି ଆନ୍ଦୋଳନ ଫଳରେ ଇଂରେଜମାନେ ଅନେକ ପରିମାଣରେ ନିଜକୁ ମାର୍ଜିତ କରିନେଲେ ଏବଂ ଶାସନଗତ ଭୁଲ୍ ସଂଶୋଧନ କଲେ । ଅମଲାତନ୍ତ୍ରର କୁତ୍ସିତ ବାହାରେ ପ୍ରକାଶିତ ହୋଇଗଲା । ଓଡିଶାର ଭୂ ରାଜସ୍ୱ, ଲୁଣ ଚଷ

(tax), ଶାସନପ୍ରଣାଳୀ, ଶକ୍ତିରୀ ନିମ୍ନ ଶ୍ରୀ ପ୍ରଭୃତିରେ ପରିବର୍ତ୍ତନ କରାଗଲା । **ଦୁଃଖର ବିଷୟ ଏହି ଯେ, ଓଡ଼ିଶା ଇତିହାସର** ଏତେ ବଡ଼ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣାକୁ ଉଚ୍ଛାକରି ବା ଅନିଚ୍ଛା କରି ହେଉ, ଐତିହାସିକମାନେ ବଡ଼ ଲଘୁ କରି ଦେଉଅଛନ୍ତି ।

ନିରୀହ ଓ ଭୀରୁ ଭାବରେ ଅତ୍ୟାଚାର ସହିବାଠାରୁ ବୀରପଣେ ପ୍ରାଣ ଦେବା ସହସ୍ରଗୁଣେ ଶ୍ରେୟସ୍କର ମନେକରି ଦେଶର ସ୍ୱାଧୀନତା ପାଇଁ ଅଗଣିତ ଜନ୍ଧ ଓ ପାଇକମାନେ ଅକୁଣ୍ଠିତ ଚିତ୍ତରେ ନିଜର ରକ୍ତ ଦାନ କଲେ ; ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର, ଭ୍ରମରବର ରାୟ ଓ ରାଜା ମୁକୁନ୍ଦ ଦେବ ସ୍ୱାଧୀନତା ବିଦ୍ରୋହରେ ନେତୃତ୍ୱ ଗ୍ରହଣ କରି ନିଜର ଜୀବନ ଜଳାଞ୍ଜଳି ଦେଲେ । ମାତ୍ର ପାଇକମାନେ ଅକାରଣରେ ଜୀବନ ଦେଇ ନାହାନ୍ତି । ଜଗବନ୍ଧୁ ଓ ମୁକୁନ୍ଦଦେବଙ୍କ ପ୍ରାଣ ନିରର୍ଥକ ଯାଇନାହିଁ । ସେମାନଙ୍କ ଅଜ୍ଞାତର ଆତ୍ମଦାନ ଅଲକ୍ଷ୍ୟ ଭାବରେ ଓଡ଼ିଆ ପ୍ରାଣରେ କାମକରି ଚାଲିଛି । ସେମାନେ ବାସ୍ତବିକ ଯେଉଁ ଆଦର୍ଶ ଦେଖାଇ ଯାଇଛନ୍ତି ତାର ସ୍ମୃତି ଆମର କୋଟିନିଧି ଓ ସେମାନେ ଆମର ସଂଗମାରାଧ୍ୟ ।

ଗବେଷଣା ଅଧିକାରୀ
ଗେଜେଟିୟରସ୍, ଓଡ଼ିଶା, ଭୁବନେଶ୍ୱର

## ପାନୀୟ ଜଳ ଯୋଗାଣ ଷଷ୍ଠ ଯୋଜନା ଶେଷ ସୁଦ୍ଧା ୩୨,୮୨୭ଟି ଗ୍ରାମକୁ ଅନ୍ତର୍ଭୁକ୍ତ କରିବାକୁ ଉଦ୍ୟମ ।

ଓଡ଼ିଶାରେ ପାନୀୟ ଜଳାଭାବ ଗ୍ରାମରୂପେ ଚିହ୍ନିତ ହୋଇଥିବା ସର୍ବମୋଟ ୨୭,୦୭୭ଟି ଗ୍ରାମରେ ନଳକୂପ ଏବଂ କୂପ ଖନନକରି ଚଳିତ ଷଷ୍ଠ ପଞ୍ଚବାର୍ଷିକ ଯୋଜନା କାଳ ଶେଷସୁଦ୍ଧା (୧୯୮୫ ମସିହା ମାର୍ଚ୍ଚ) ପାନୀୟ ଜଳ ଯୋଗାଇ ଦେବାକୁ ବ୍ୟାପକ ଉଦ୍ୟମ ହୋଇଛି । ଚିହ୍ନିତ ଏହି ଗ୍ରାମଗୁଡ଼ିକ ମଧ୍ୟରୁ ୧୬, ୨୯୪ଟି ଗ୍ରାମରେ ନଳକୂପ ଏବଂ ଅବଶିଷ୍ଟ ୧୦, ୭୮୩ଟି ଗ୍ରାମରେ କୂପ ଖନନ କରିବା ବାବଦରେ ଯଥାକ୍ରମେ ୩୦ କୋଟି ଟଙ୍କା ଏବଂ ୪ କୋଟି ଟଙ୍କା ପର୍ଯ୍ୟନ୍ତ ଏହି ଯୋଜନା କାଳ ମଧ୍ୟରେ ବ୍ୟୟ କରାଯାଇ ପାରିବ ବୋଲି ଯୋଜନା କମିଶନଙ୍କ ସହିତ ଆଲୋଚନା ପରେ ସ୍ଥିର ହୋଇଛି ।

ଏହିସବୁ ଚିହ୍ନିତ ଗ୍ରାମ ବ୍ୟତୀତ ରାଜ୍ୟର ଚିର ମରୁଡ଼ିଗ୍ରସ୍ତ ୫,୭୫୦ଟି ଗ୍ରାମରେ ଗୋଟିଏ ଲେଖାଏଁ ନଳକୂପ ବସାଇବାକୁ ଉଦ୍ୟମ ହେଉଛି । ଏହିପରି ସର୍ବମୋଟ ୩୨, ୮୨୭ଟି ଗ୍ରାମର ୧ କୋଟି ୪୩ ଲକ୍ଷରୁ ଊର୍ଦ୍ଧ୍ୱ ଗ୍ରାମବାସୀ ଏହି ଜଳ ଯୋଗାଣ ଯୋଜନା ଦ୍ୱାରା ଉପକୃତ ହୋଇ ପାରିବେ ।

ଆଦିବାସୀ ଉପ–ଯୋଜନା କାର୍ଯ୍ୟକାରୀ ହେଉଥିବା ଅଞ୍ଚଳଗୁଡ଼ିକରେ ଗତବର୍ଷ ୧୨୯୯ଟି ନଳକୂପ ସ୍ଥାପିତ ହୋଇଥିଲା ଏବଂ ଚଳିତ ଆର୍ଥିକ ବର୍ଷରେ ଆଉ ୧୫୨୨ଟି ନଳକୂପ ସ୍ଥାପନ ପାଇଁ କାର୍ଯ୍ୟକ୍ରମ ରହିଛି ।

ଏହା ବ୍ୟତୀତ ସ୍ୱିଡେନ୍ ଆନ୍ତର୍ଜାତିକ ଉନ୍ନୟନ ସଂସ୍ଥାର ସହାୟତାରେ ମୟୂରଭଞ୍ଜ, ସୁନ୍ଦରଗଡ଼, କେନ୍ଦୁଝର, କୋରାପୁଟ, ଫୁଲବାଣୀ, କଳାହାଣ୍ଡି, ସମ୍ବଲପୁର, ବାଲେଶ୍ୱର ଏବଂ ଗଞ୍ଜାମ ଜିଲ୍ଲାର ଆଦିବାସୀ ବହୁଳ ଅଞ୍ଚଳରେ ବ୍ୟାପକ ପାନୀୟ ଜଳ ଯୋଗାଣ ଯୋଜନା କାର୍ଯ୍ୟକାରୀ କରିବାକୁ ଉଦ୍ୟମ ହେଉଛି । ସେହିପରି ଡେନ୍‌ମାର୍କ ଆନ୍ତର୍ଜାତିକ ଉନ୍ନୟନ ସଂସ୍ଥାର ଆର୍ଥିକ ସହାୟତାରେ କଟକ, ପୁରୀ ଏବଂ ବାଲେଶ୍ୱର ଜିଲ୍ଲାର ଲୁଣିପାଣି ଅଞ୍ଚଳର ୪୧୨୦ଟି ଗ୍ରାମରେ ପାନୀୟ ଜଳ ଯୋଗାଇ ଦେବାର ବ୍ୟବସ୍ଥା ହେଉଛି ।

# ଓଡ଼ିଆ ସଂସ୍କୃତି— ଏକ ମୂଲ୍ୟାଙ୍କନ

ସୁରେନ୍ଦ୍ର ମହାନ୍ତି

ଓଡ଼ିଆ ସଂସ୍କୃତି ସଂପର୍କରେ ଯତ୍ର ତତ୍ର ବହୁ ଉଚ୍ଛ୍ୱସିତ ଉଚ୍ଚାରଣ ଶୁଣିବାକୁ ମିଳିଥାଏ । କିନ୍ତୁ ଏହାର ସଂଜ୍ଞାତ୍ମକ ସତ୍ତା ସେଥିରେ ଖୋଜିଲେ ମିଳିବ ନାହିଁ ।

ବସ୍ତୁତଃ ସମାଜତାତ୍ତ୍ୱିକ, ନୃତାତ୍ତ୍ୱିକ ଦୃଷ୍ଟିରୁ ଏହାର ମୋଟାମୋଟି ଗୋଟାଏ ସଂଜ୍ଞା ରୋପଣ କରିବା ସଂଭବ ହେଲେ ବି ମୁଖ୍ୟତଃ ଏହା ବିଶ୍ଳେଷଣାତ୍ମକ, ବର୍ଣ୍ଣନାତ୍ମକ ହୋଇ ରହିବ । ଉପନିଷଦର ବ୍ରହ୍ମ ବା ଗୀତାର ଆତ୍ମା-ପରି ଏହା ରହିଯିବ ଅପ୍ରମେୟ ହୋଇ ।

ସଂସ୍କୃତିକୁ କେତେକ ଲୌକିକ ଦିଗରୁ ବିଚାର କରାଯାଇପାରେ—ଯଥା, ଚଳଣି । ଓଡ଼ିଆ ଲୋକଙ୍କର ଚଳଣିରେ ଏକ ସ୍ୱାତନ୍ତ୍ର୍ୟ ରହିଛି, ଯାହାକୁ ଗଭୀର ଭାବରେ ଲକ୍ଷ୍ୟ କଲେ ବାରି ହୋଇଯିବ ଲୋକଟି ଉତ୍କଳ-ନନ୍ଦନ ! ଆମମାନଙ୍କର ଜଣେ ଅଧ୍ୟାପକ ଥିଲେ ବଡ଼ ଓଡ଼ିଆପ୍ରେମୀ । ଓଡ଼ିଆତ୍ୱର ଉଦ୍‌ଘୋଷଣ ତାଙ୍କ ଆଚରଣ ପଦ୍ଧତିରେ ଥିଲା ସୋଚ୍ଚାର । ସିଏ ମଧ୍ୟ ଥିଲେ ସ୍ପୋର୍ଟସମ୍ୟାନ, ଭଲ ଫୁଟବଲ୍ ଖେଳୁଥିଲେ । ମ୍ୟାଚ ବେଳେ ୟୁନିଫର୍ମ ପିନ୍ଧି ସିଏତ ମଇଦାନକୁ ଓହ୍ଲାଉଥିଲେ । କିନ୍ତୁ ତା' ସାଙ୍ଗରେ ଅଣ୍ଟାରେ ଝୁଲୁଥିବ ପିପିଲିର କମକରା ବଟୁଆ । ତାଙ୍କ ଦୃଷ୍ଟିରେ ବଟୁଆର ଓଡ଼ିଆ ଚଳଣି, ସଂସ୍କୃତି, ଜାତୀୟତାର ପ୍ରତୀକ । କିନ୍ତୁ ଲକ୍ଷ୍ୟ କଲେ ଦେଖାଯିବ, ଭାରତରେ ଅନ୍ୟତ୍ର ପଲ୍ଲୀସମାଜରେ ମଧ୍ୟ ବଟୁଆର ପ୍ରଚଳନ କମ୍ ନୁହେଁ । ଏବେ ଯେତେବେଳେ ଲୋକ-ସଂସ୍କୃତି ଓ ଲୋକ-ଶିଳ୍ପର ଅଭ୍ୟୁଦୟ ଘଟୁଛି, ମହାନଗରୀମାନଙ୍କରେ ସୁଦ୍ଧା ରୂପସୀ ମହିଳାମାନେ ଏହି ବଟୁଆର ଏକ ଭାନିଟୀ ସଂସ୍କରଣ ହାତରେ ଝୁଲାଇ ଯତ୍ର ତତ୍ର ବିଚରଣ କରୁଅଛନ୍ତି । ତେଣୁ ବଟୁଆକୁ ଓଡ଼ିଆ ସଂସ୍କୃତି/ଚଳଣିର ପ୍ରତୀକ ବୋଲି ଧରି ନିଆଗଲେ, ଯୌକ୍ତିକ ବିମ୍ରାନ୍ତିର ସମ୍ମୁଖୀନ ହେବାପାଇଁ ପଡ଼ିବ ।

ପଖାଳ, ସେହିପରି ଚଳଣି ଦୃଷ୍ଟିରୁ ଓଡ଼ିଆ ଜନ-ଜୀବନର ପ୍ରତୀକ । ପଖାଳ ପାଇଁ ଓଡ଼ିଆର ଅବଚେତନରେ ରହିଛି ଏକ ଆକର୍ଷଣ । କିନ୍ତୁ ବଙ୍ଗ ଦେଶରେ, ବିଶେଷତଃ ତେଲୁଗୁ-ଭାଷାଭାଷୀ ଅଞ୍ଚଳରେ ଏହାର ପ୍ରଚଳନ ମଧ୍ୟ କମ୍ ନୁହେଁ ।

ପଖାଳ, ବଟୁଆପରି ତୁଚ୍ଛ ବସ୍ତୁ ଛାଡ଼ିଦେଲେ— ଶ୍ରୀଜଗନ୍ନାଥ ଓଡ଼ିଆ ସଂସ୍କୃତିର ପ୍ରତୀକରୂପେ ବିବେଚିତ ହୋଇଥାନ୍ତି । କିନ୍ତୁ ଶ୍ରୀଜଗନ୍ନାଥ ତ ସମଗ୍ର ହିନ୍ଦୁ ଜଗତର ପରମ ଇଷ୍ଟଦେବ । ସମଗ୍ର ବୈଷ୍ଣବ ସମାଜରେ ମହାବିଷ୍ଣୁରୂପେ ସେ ଆରାଧିତ । ଶଙ୍କରାଚାର୍ଯ୍ୟ ସୁଦୂର କେରଳରୁ ଆସି ଜଗନ୍ନାଥଧାମରେ ପୀଠ ସ୍ଥାପନ କରିଥିଲେ । ତା'ହେଲେ ଓଡ଼ିଆମାନେ ଜଗନ୍ନାଥଙ୍କୁ ଏକଚାଟିଆ ଭାବରେ ନିଜ ସଂସ୍କୃତିର ପ୍ରତୀକ ବୋଲି ଦାବୀ କରିବାରେ ଯଥାର୍ଥତା କେଉଁଠି ?

ଯତ୍ର ତତ୍ର ଶୁଣାଯାଏ ଜଗନ୍ନାଥ ସଂସ୍କୃତି । କିନ୍ତୁ ଏହାର ସ୍ୱରୂପ ବା କ'ଣ ? ମୂର୍ତ୍ତି-ତାତ୍ତ୍ୱିକ, ଐତିହାସିକ ଯେ କୌଣସି ଦୃଷ୍ଟିରୁ ବିଚାର କଲେ, ଶବର ସେବିତ ଏକ ଦେବତା, ଇତିହାସର ବହୁ ସଂଘାତ, ସଂଘର୍ଷ ଓ ସଂସ୍କୃତିର ବହୁ ଆକର୍ଷଣ, ବିକର୍ଷଣ, ବିଶ୍ଳେଷଣ, ସଂଶ୍ଳେଷଣ ମଧ୍ୟରେ ବ୍ରାହ୍ମଣ୍ୟ ହିନ୍ଦୁ ସମାଜର ପରମ ଇଷ୍ଟଦେବରେ ପରିଣତ ହୋଇଅଛନ୍ତି । ଏହା ଓଡ଼ିଆଙ୍କ ନିଜସ୍ୱ ହେବ କିପରି ? କୁହାଯାଏ, ପ୍ରାୟ ଏକ ପହଲି ରୂପେ ଜଗନ୍ନାଥ ସଂସ୍କୃତି ସାମ୍ୟ ଓ ମୈତ୍ରୀର ସଂସ୍କୃତି । କିନ୍ତୁ ଇତିହାସ ଦୃଷ୍ଟିରୁ ଏହା ପ୍ରମାଦପୂର୍ଣ୍ଣ ।

କିମ୍ବଦନ୍ତୀର ବିଦ୍ୟାପତି ଯେପରି ଭାବରେ ଶବର କନ୍ୟା ଲଳିତା ପ୍ରତି ବିଶ୍ୱାସଘାତକତା କରି ନୀଳ-ମାଧବଙ୍କୁ ଘେରାଇ ଆଣିଲେ, ସେଥିରେ ନାଁ ଅଛି ସାମ୍ୟ, ନାଁ ଅଛି ପ୍ରୀତି, ମୈତ୍ରୀ ତ ଦୂରର କଥା । ଜଗନ୍ନାଥ ଧାମରେ କମ୍ ବୌଦ୍ଧ ନିର୍ଯ୍ୟାତନା ହୋଇନାହିଁ । ବ୍ରାହ୍ମଣମାନେ ବୌଦ୍ଧମାନଙ୍କୁ ନିର୍ଘାତ ପିଟୁଥିବାର ଚିତ୍ର ଶ୍ରୀଜଗନ୍ନାଥଙ୍କ ନାଟ ମନ୍ଦିର କାନ୍ଥରେ ଏବେ ସୁଦ୍ଧା ରହିଛି । ଇଏ କ'ଣ ମୈତ୍ରୀ । କଥିତ ଅଛି, ଏକଦା

ଶ୍ରୀଜଗନ୍ନାଥଙ୍କ ରତ୍ନବେଦୀ ଉପରେ ଆଦି ଶଙ୍କରାଚାର୍ଯ୍ୟଙ୍କ ଏକ ବିଗ୍ରହ ରହିଥିଲା । ମାତ୍ର ଊନବିଂଶ ଶତାବ୍ଦୀରେ ରତ୍ନବେଦୀର ଜୀର୍ଣ୍ଣ ସଂସ୍କାରବେଳେ, କେହି ଦ୍ୱୈତବାଦୀ ପଣ୍ଡା ବା ପରୀକ୍ଷା ଅଦ୍ୱୈତବାଦୀ ଶଙ୍କରଙ୍କ ଏହି ବିଗ୍ରହକୁ ରତ୍ନବେଦୀରୁ ଫିଙ୍ଗି ଦେଇଥିଲେ । ଭାରତୀୟ ଆଧ୍ୟାତ୍ମିକତା ତଥା ସଂସ୍କୃତିର ଜଣେ ମହାନ୍ ଆଚାର୍ଯ୍ୟ ଶଙ୍କରଙ୍କ ପ୍ରତି ଯଦି ଏପରି ଆଚରଣ ଜଗନ୍ନାଥଧାମରେ ପ୍ରଦର୍ଶିତ ହୋଇଥାଏ ତା'ହେଲେ ସାମ୍ୟ, ମୈତ୍ରୀର ଉଚ୍ଚାରଣ ଯେ ସଂପୂର୍ଣ୍ଣ ଅପ୍ରାସଂଗିକ, ଉଲ୍ଲେଖ କରିବା ନିଷ୍ପ୍ରୟୋଜନ । ଜଗନ୍ନାଥଙ୍କ ଧାମରେ ପଞ୍ଚସଖା ମଧ୍ୟ କମ୍ ନିର୍ଯ୍ୟାତନାର ସମ୍ମୁଖୀନ ହୋଇ ନାହାନ୍ତି । ଅଚ୍ୟୁତାନନ୍ଦଙ୍କ ନିର୍ଯ୍ୟାତନାର କାହାଣୀ "ଶୂନ୍ୟ ସଂହିତା"ରେ ବର୍ଣ୍ଣିତ ଅଛି । ବଳରାମ ଦାସଙ୍କୁ ତ ଗଳାରେ ଅର୍ଦ୍ଧଚନ୍ଦ୍ର ଦେଇ ରଥ ଉପରୁ ବିତାଡ଼ିତ କରାଯାଇଥିଲା । ଜଗନ୍ନାଥ ଦାସ ଶ୍ରୀକ୍ଷେତ୍ରରୁ ବିତାଡ଼ିତ ହୋଇ କ୍ଷେତ୍ର ବାହାରେ ସମୁଦ୍ର କୂଳରେ ସାତଲହରୀ ମଠରେ ପାଇଥିଲେ ଆଶ୍ରୟ । ମହିମାପନ୍ଥୀମାନଙ୍କୁ ଶ୍ରୀମନ୍ଦିରରେ ଊନବିଂଶ ଶତାବ୍ଦୀରେ ଜଗନ୍ନାଥଙ୍କ ଦର୍ଶନ ପାଇଁ ସୁଯୋଗରୁ ବଞ୍ଚିତ କରାଯାଉଥିବାରୁ ସଂଘର୍ଷ ରକ୍ତପାତ ପର୍ଯ୍ୟନ୍ତ ଯାଇଥିଲା । ପୁରୀ ଡିଷ୍ଟ୍ରିକ୍ଟ ଗେଜେଟିୟରରେ ଏହା ବର୍ଣ୍ଣିତ ଅଛି । ଭୀମ ଭୋଇଙ୍କ ପରି ଜଣେ ସନ୍ଥ ସ୍ରଷ୍ଟା ଏ ଆକ୍ରମଣରୁ ରକ୍ଷା ପାଇ ନ ଥିଲେ । ଏଥିରେ ତା'ହେଲେ ମୈତ୍ରୀ କାହିଁ ? ଅନ୍ୟତ୍ର ଯେଉଁପରି ମତାନ୍ଧତା ପ୍ରକାଶ ପାଇଥାଏ, ଏଠାରେ ମଧ୍ୟ ତାହାର ପୁନରାବୃତ୍ତି ! ତା'ହେଲେ ଓଡ଼ିଆ ସଂସ୍କୃତିକୁ ସାମ୍ୟ, ମୈତ୍ରୀ ଓ ପ୍ରୀତିର ସଂସ୍କୃତି ବୋଲି ସଂକୀର୍ତ୍ତନ କରି ବୁଲିବା, ତଥ୍ୟ ଓ ତର୍କ ଦୃଷ୍ଟିରୁ ସମର୍ଥିତ ହୋଇପାରିବ ନାହିଁ । ତେଣୁ ଜଗନ୍ନାଥଙ୍କୁ ଆଶ୍ରୟ କରି ଓଡ଼ିଆ ସଂସ୍କୃତିକୁ ସଂଜ୍ଞାତ୍ମକ ଭାବରେ ନିରୂପଣ କରିବା ସହଜ ନୁହେଁ । ଏଥିପାଇଁ ତଥ୍ୟ ସମର୍ଥିତ ଉପାଦାନ ନାହିଁ । ଏହା ଏକାନ୍ତବାଦୀ ଏକ ଅଭିମତ ହୋଇପାରେ । କିନ୍ତୁ ସଂଜ୍ଞାତ୍ମକ ଭାବରେ ଓଡ଼ିଆ ସଂସ୍କୃତିର ମୂଲ୍ୟାଙ୍କନରେ ବାଧା ଥିଲେ ହେଁ, ବର୍ଣ୍ଣନାତ୍ମକ ଦୃଷ୍ଟିରୁ ଏହାର ଅସ୍ତିତ୍ୱ ଅସ୍ୱୀକାର କରିହେବ ନାହିଁ ।

ମନୁଷ୍ୟର ଅଛି ଦୁଇଟି ଉତ୍ତରାଧିକାର ପ୍ରକୃତି ଓ ସଂସ୍କୃତି । ପ୍ରକୃତି (Nature) ହେଉ ଭୌଗୋଳିକ ଅବସ୍ଥିତି, ପରିବେଶ ଓ ଜଳବାୟୁ ଇତ୍ୟାଦି । ମନୁଷ୍ୟ ଜନ୍ମମାତ୍ରେ ଏହା ଆହରଣ କରିଥାଏ ବିନା ଉଦ୍ୟମରେ । ଏହା ଶିକ୍ଷା ନୁହେଁ । ମନୁଷ୍ୟର ସ୍ୱଭାବ ବା ପ୍ରବୃତ୍ତି ଗଠନରେ ଏହାର ମଧ୍ୟ ଭୂମିକା ରହିଛି । କିନ୍ତୁ ବହୁ ସଂଘାତ ଓ ସଂଗ୍ରାମ ମଧ୍ୟରେ ମନୁଷ୍ୟ ଆହରଣ କରିଥାଏ ସଂସ୍କୃତି । ପୁରୁଷାନୁକ୍ରମେ ଯେଉଁ ସବୁ ଧାରଣା, ବିଶ୍ୱାସ, ମୂଲ୍ୟବୋଧ ପ୍ରଭୃତି ଲୋକକଥା, ଲୋକଗୀତି, ଲୋକଚିତ୍ର ଆକାରରେ ଏକ ନିର୍ଦ୍ଦିଷ୍ଟ ଜନସମାଜରେ ପ୍ରଚଳିତ ହୋଇ ଅଛନ୍ତି, ସେସବୁ ଶିକ୍ଷାଲବ୍ଧ ନୁହେଁ, ତାହା ଏକାନ୍ତ ଭାବରେ ମନୁଷ୍ୟର ମସ୍ତିଷ୍କପ୍ରସୂତ । ଏହା ଓତଃପ୍ରୋତ ଭାବରେ ସେହି ଜନସମାଜର ବ୍ୟକ୍ତିତ୍ୱ ଓ ଚେତନାକୁ ପ୍ରଭାବିତ କରିଥାଏ । ସଂସ୍କୃତି ଏହି ସୂକ୍ଷ୍ମ ମୂଲ୍ୟବୋଧ, ଯାହା

ସଭ୍ୟତାଠାରୁ ସ୍ୱତନ୍ତ୍ର । ସେ ଦୃଷ୍ଟିରୁ ମଧ୍ୟ ଭାରତୀୟ ସଂସ୍କୃତିର ମୂଳପ୍ରବାହଠାରୁ ଓଡ଼ିଆ ସଂସ୍କୃତି ବିଚ୍ଛିନ୍ନ ନୁହେଁ । ଭାରତୀୟ ସଂସ୍କୃତିର ଯେଉଁସବୁ ଚିରନ୍ତନ ମୂଲ୍ୟବୋଧ ଉପନିଷଦ, ଗୀତା, ରାମାୟଣ ଓ ମହାଭାରତ ପ୍ରଭୃତିରେ ନିହିତ ରହିଛି, ଓଡ଼ିଆ ସଂସ୍କୃତି ତାହାର ପ୍ରତିକୂଳାଚରଣ କରେନାହିଁ । ସାରଳା ସାହିତ୍ୟରେ ଯେଉଁ ଶକ୍ତି ତତ୍ତ୍ୱ ରହିଛି, ଭାରତୀୟ ଶକ୍ତି ତତ୍ତ୍ୱଠାରୁ ତାହା କ'ଣ ସ୍ୱତନ୍ତ୍ର ? ଜଗନ୍ନାଥ ଦାସଙ୍କ ଭାଗବତର ଭକ୍ତିବାଦ, ଭାରତୀୟ ଭକ୍ତିବାଦଠାରୁ କ'ଣ ସ୍ୱତନ୍ତ୍ର ? ଓଡ଼ିଶାରେ ବଳରାମ ଦାସଙ୍କ ଦାଣ୍ଡୀ ରାମାୟଣ ପରିବର୍ତ୍ତେ, ତୁଳସୀ ଦାସଙ୍କ ରାମାୟଣର ପାରାୟଣ ତ କରାଯାଇଥାଏ ବେଶୀ ।

ତଥାପି ସାରଳା ଦାସଙ୍କ ମହାଭାରତ, ବ୍ୟାସଙ୍କ ମହାଭାରତର ଠିକ୍ ଅନୁକୃତି ନୁହେଁ । ସଂସ୍କୃତ ମହାଭାରତଠାରୁ ଏଥିରେ ବହୁ ବ୍ୟତିକ୍ରମ ରହିଛି । ସାରଳା ମହାଭାରତରେ ଶ୍ରୀକୃଷ୍ଣଙ୍କ ଚିତ୍ରଣ ସଂସ୍କୃତ ମହାଭାରତଠାରୁ ସଂପୂର୍ଣ୍ଣ ସ୍ୱତନ୍ତ୍ର । ସାରଳା ମହାଭାରତରେ ଶ୍ରୀକୃଷ୍ଣ ଭ୍ରଷ୍ଟ ସହଜିଆ ଓ ରାଧା ସହଜ-ସୁନ୍ଦରୀ । ଏହା ଭାରତୀୟ ଶାସ୍ତ୍ର ବା ପୁରାଣ ସମର୍ଥିତ ନୁହେଁ । ଜଗନ୍ନାଥ ଦାସଙ୍କ ଭାଗବତ ସଂସ୍କୃତ ମହାଭାରତର ଅନୁବାଦ ହେଲେ ହେଁ ଏଥିରେ ମଧ୍ୟ ବହୁ ବ୍ୟତିକ୍ରମ ରହିଛି । "ବହୁତ ଲୋକ ଯହିଁ ମିଳି/ଅବଶ୍ୟ ଉପୁଜଇ କଳି"—ଏ ଉକ୍ତି ସଂସ୍କୃତ ଭାଗବତରେ ନାହିଁ । ଏହା ନିରୋଳ ଭାବରେ ଓଡ଼ିଆ ଜନଜୀବନର ଚିତ୍ର । ଏକ ନିର୍ଦ୍ଦିଷ୍ଟ ଭାଷାଭାଷୀ ଅଞ୍ଚଳରେ ପରଂପରା ବାହିତ ହୋଇ ପ୍ରଚଳିତ ଧ୍ୟାନ, ଧାରଣା, ବିଶ୍ୱାସ ଓ ଚଳଣିରେ କେତେକ ସ୍ୱାତନ୍ତ୍ର୍ୟ ରହିଥାଏ । ଏହି ସ୍ୱାତନ୍ତ୍ର୍ୟକୁ ଯଦି ଏକ ଆଞ୍ଚଳିକ ବା ଭାଷାଭାଷୀ ସଂସ୍କୃତିର ସ୍ୱରୂପ ବୋଲି ଧରି ନିଆଯାଏ, ତା'ହେଲେ ସେଥିରେ ବିଭ୍ରାନ୍ତିର ଅବକାଶ ରହିବ ନାହିଁ । ଭାରତୀୟ ସଂସ୍କୃତିର ପରିସୀମା ମଧ୍ୟରେ ଓଡ଼ିଆ-ସଂସ୍କୃତିର ସ୍ୱାତନ୍ତ୍ର୍ୟ କେବଳ ପରଂପରାବାହିତ ସଂସ୍କାର ଓ ସାହିତ୍ୟରେ ନୁହେଁ, ସ୍ଥାପତ୍ୟ, ଭାସ୍କର୍ଯ୍ୟ, ସଂଗୀତ ଓ ନୃତ୍ୟ ପ୍ରଭୃତିରେ ମଧ୍ୟ ସୁସ୍ପଷ୍ଟ । ଏହାର କିନ୍ତୁ ସ୍ପଷ୍ଟ ରୂପାୟନ ହେବା ବାଂଛନୀୟ । କେବଳ ପହଞ୍ଚିରେ ନୁହେଁ ।

ଓଡ଼ିଶା ମଧ୍ୟ ସଂସ୍କୃତି ଦୃଷ୍ଟିରୁ ଏକ ନିବିଡ଼ ଗୋଷ୍ଠୀ ନୁହେଁ । ଓଡ଼ିଶାରେ ମଧ୍ୟ ଅଞ୍ଚଳରୁ ଅଞ୍ଚଳ ପାର୍ଥକ୍ୟ ରହିଛି—ଯଥା, ସମ୍ବଲପୁରୀ, କଟକୀ, ଗଞ୍ଜାମୀ, ଆଦିବାସୀ ଇତ୍ୟାଦି । ସମ୍ବଲପୁରୀ ଜନଜୀବନର ଗତିରୀତି, କଟକୀ ଜନଜୀବନର ଗତିରୀତିଠାରୁ ବାହ୍ୟ ଦୃଷ୍ଟିରେ ପୃଥକ୍ ; ଯେପରି ପୃଥକ ଆଦିବାସୀ ସଂସ୍କୃତି । କିନ୍ତୁ

ଅନ୍ତର୍ଦୃଷ୍ଟିରୁ ଏ ପ୍ରଭେଦର ସୀମାରେଖା ଅବଶ୍ୟ ଅଳୀକ । ଉପକୂଳବର୍ତ୍ତୀ ଅଞ୍ଚଳର ପଲ୍ଲୀଗ୍ରାମରେ ତୁଳସୀଗଛ ପୂଜା, ଓଷ୍ଠ ଗଛ ମୂଳେ ପାଣି ଇଢ଼ିବା, ଆଦିବାସୀର ବୃକ୍ଷ ପୂଜାଠାରୁ କେଉଁ ଗୁଣରେ ବା ସ୍ୱତନ୍ତ୍ର ?

ଓଡ଼ିଆ ସଂସ୍କୃତି ଆଲୋଚନା କଲାବେଳେ, ମନରେ ସ୍ୱତଃ ଏକ ପ୍ରଶ୍ନ ଉଠେ, ଓଡ଼ିଶାର ଅଧିବାସୀମାନେ କଣ ଏକ ନିର୍ଦ୍ଦିଷ୍ଟ ସାଂସ୍କୃତିକ ଗୋଷ୍ଠୀର ଅନ୍ତର୍ଗତ ? ଏକ Close ethnic group? ଓଡ଼ିଶାର ଇତିହାସ ପ୍ରତି ଏଥିପାଇଁ ଦୃଷ୍ଟିପାତ କରିବା ପାଇଁ ପଡ଼ିବ । ଓଡ଼ିଶା ଇତିହାସରେ ଗଙ୍ଗବଂଶୀ ନରପତିମାନଙ୍କ କାଳରୁ ରାଜ୍ୟ ବିସ୍ତାରର ପ୍ରଚେଷ୍ଟା ଆରମ୍ଭ ହୋଇଥିଲା-ସୂର୍ଯ୍ୟବଂଶ କାଳରେ ଯାହା ସ୍ପର୍ଶ କରିଥିଲା ଚୂଡ଼ାନ୍ତ ସୀମା । ସୂର୍ଯ୍ୟବଂଶୀ ସମ୍ରାଟ କପିଳେନ୍ଦ୍ରଙ୍କ ସାମ୍ରାଜ୍ୟ ବିସ୍ତୃତ ଥିଲା ଉତ୍ତରରେ ଗଙ୍ଗା ବା ହୁଗୁଳୀଠାରୁ ଦକ୍ଷିଣରେ କାବେରୀ ପର୍ଯ୍ୟନ୍ତ । ଗଜପତି ପୁରୁଷୋତ୍ତମ ଦେବଙ୍କ ସାମ୍ରାଜ୍ୟର ଦକ୍ଷିଣ ସୀମା ଥିଲା ପେନ୍ନାର ତୀରରେ ଚନ୍ଦ୍ରଗିରି । ଗଜପତି ପ୍ରତାପରୁଦ୍ର ସିଂହାସନ ଆରୋହଣ କଲା ବାଦରୁ, ଉତ୍କଳ ବା କଳିଙ୍ଗ ସାମ୍ରାଜ୍ୟର ଦକ୍ଷିଣ ସୀମା କ୍ରମେ ସଙ୍କୁଚିତ ହୋଇ ପଡ଼ିଥିଲା କୃଷ୍ଣାନଦୀର ଉତ୍ତର ତୀରରେ । ତେଲେଙ୍ଗାନା ଓ ଦକ୍ଷିଣ କୋଶଳ ମଧ୍ୟ ଥିଲା ଏହାର ଅନ୍ତର୍ଭୁକ୍ତ । କିନ୍ତୁ ଏହି ସୁବିସ୍ତୃତ ଭୂଖଣ୍ଡର ଅଧିବାସୀମାନେ ତ ଏକ ନିର୍ଦ୍ଦିଷ୍ଟ ଭାଷାଭାଷୀ ବା ସାଂସ୍କୃତିକ ଗୋଷ୍ଠୀଭୁକ୍ତ ନ ଥିଲେ । ଉତ୍ତରରେ ରୂପନାରାୟଣ ନଦୀଠାରୁ ଦକ୍ଷିଣରେ ଶ୍ରୀକୂର୍ମ ପର୍ଯ୍ୟନ୍ତ ଅଞ୍ଚଳର ଅଧିବାସୀମାନେ ଥିଲେ ହୁଏତ ଓଡ଼ିଆ-ଭାଷୀ....ଶ୍ରୀକୂର୍ମଠାରୁ କୃଷ୍ଣା ପର୍ଯ୍ୟନ୍ତ ଅଧିବାସୀମାନେ ଥିଲେ ତେଲୁଗୁ । ତେଲେଙ୍ଗାନାର ଅଧିବାସୀମାନେ ଥିଲେ, ନିର୍ଭେଜାଲ ତେଲୁଗୁଭାଷୀ । ଏହିପରି ଭାବରେ ଦେଖିଲେ ଦେଖାଯିବ, ଉତ୍କଳ ବା କଳିଙ୍ଗ ସାମ୍ରାଜ୍ୟ ଏକ ନିର୍ଦ୍ଦିଷ୍ଟ ଭାଷାଭାଷୀ, ସାଂସ୍କୃତିକ ଅଞ୍ଚଳ ନ ଥିଲା । ଏହାର ପରୀ-ସୀମା ମଧ୍ୟରେ, ଅଞ୍ଚଳ ଅଞ୍ଚଳ ମଧ୍ୟରେ ଥିଲା ପାର୍ଥକ୍ୟ ।

ଏହାର ଏକ ଚମତ୍କାର ଉଦାହରଣ, ଗଜପତି ପ୍ରତାପରୁଦ୍ର ଦେବ ଓ ତାଙ୍କ ପ୍ରତିଦ୍ୱନ୍ଦ୍ୱୀ କୃଷ୍ଣଦେବ ରାୟଙ୍କ ଜୀବନଗାଥା ବା ଇତିହାସ । ତେଲୁଗୁ ସାହିତ୍ୟରେ କୃଷ୍ଣଦେବ ରାୟ, ନିଜେ ହୁଏତ ତେଲୁଗୁଭାଷୀ ତୁଳୁଭ-ବଂଶୀୟ ହୋଇଥିବାରୁ ଯେତିକି ପ୍ରକୀର୍ତ୍ତିତ, ତାଙ୍କ ପ୍ରତିଦ୍ୱନ୍ଦ୍ୱୀ ଗଜପତି ପ୍ରତାପରୁଦ୍ର ସେତିକି ନ୍ୟୂନ ଭାବରେ ଚିତ୍ରିତ । ସେହିପରି ଓଡ଼ିଆ ସାହିତ୍ୟରେ (ପୁରୁଷୋତ୍ତମ ଦାସଙ୍କ "କାଞ୍ଚିକାବେରୀ" କାବ୍ୟ) ଗଜପତି ପୁରୁଷୋତ୍ତମ ଦେବ ଯେପରି ଭାସ୍ୱର ଭାବରେ ଚିତ୍ରିତ କାଞ୍ଚି-ରାଜା (ସାଲୁଭ ନରସିଂହ) ନ୍ୟୂନ ଭାବରେ ବର୍ଣ୍ଣିତ । ଏହାର କାରଣ ତୁଳୁଭ ବଂଶୀୟ କୃଷ୍ଣଦେବରାୟ, ତେଲୁଗୁଭାଷୀ ଥିବାରୁ ଓ ତେଲୁଗୁ ସାହିତ୍ୟ ପ୍ରତି ବିପୁଳ ପୃଷ୍ଠପୋଷକତା ପ୍ରଦର୍ଶନ କରି ଥିବାରୁ, ସେ ତେଲୁଗୁଭାଷୀ ଅଞ୍ଚଳବାସୀ ଜନତାର ମନ, ପ୍ରାଣ ଓ ଚେତନାକୁ ଅତି ଗଭୀର ଭାବରେ ସ୍ପର୍ଶ କରି ପାରିଥିଲେ ହେଁ, ଗଜପତି ପ୍ରତାପରୁଦ୍ର ଏହି ଅଞ୍ଚଳର ଅଧୀଶ୍ୱର ହୋଇ ମଧ୍ୟ ସେଥିପାଇଁ ସକ୍ଷମ ହୋଇ ପାରି ନ ଥିଲେ ।

ଏଥିରୁ ସ୍ପଷ୍ଟ ହେବ, ଏକ ନିର୍ଦ୍ଦିଷ୍ଟ ଐତିହାସିକ କାରଣରୁ ବହୁ ଧାରା, ବହୁ ସ୍ରୋତ, ବହୁ ମୂଲ୍ୟବୋଧ ଓ ବହୁ ଆଧ୍ୟାତ୍ମିକ ଭାବନା ଧାରଣାର ସମ୍ମିଶ୍ରଣ ନେଇ ଓଡ଼ିଆ ସଂସ୍କୃତିର ମୂଳପିଣ୍ଡ ଗଠିତ । ଭାରତୀୟ ସଂସ୍କୃତିର ଏହା ଏକ କ୍ଷୁଦ୍ର ପ୍ରତିରୂପ । ଏହି ସାର୍ବଜନୀନତାକୁ ମୂଳତଃ ଭିତ୍ତି କରିଥାଏ ଜଗନ୍ନାଥ-ସଂସ୍କୃତି, ଆର୍ଯ୍ୟ ଓ ଆର୍ଯ୍ୟେତର ସଂସ୍କୃତିର ଏକ ସମନ୍ୱୟ । ଓଡ଼ିଆ ସାହିତ୍ୟ, ଓଡ଼ିଆଜାତି ଭୂମିରେ ପ୍ରଚଳିତ ଆଧ୍ୟାତ୍ମିକ ଭାବନା ଓ ମୂଲ୍ୟବୋଧ ନେଇ ଗଠିତ ହୋଇଥିବାରୁ ଏହା ସାହିତ୍ୟର ଏକ ମୂଳ ପ୍ରେରଣା ହୋଇ ରହି ଆସିଅଛି । ସେଥିପାଇଁ ସାହିତ୍ୟ ଓ ସଂସ୍କୃତି ମଧ୍ୟରେ ରହିଆସିଛି ନାଭିସୂତ୍ରର ବନ୍ଧନ ।

ସାରଳା ଦାସଙ୍କ ମହାଭାରତ, ଓଡ଼ିଆ ସାହିତ୍ୟର ଆଦିକାଳର ସୃଷ୍ଟି । ଏଥିରେ ଏପରି ବହୁ ଉପାଖ୍ୟାନ ଅଛି, ଯାହା ସଂସ୍କୃତ ମହାଭାରତରେ ମିଳିବ ନାହିଁ । ଉଦାହରଣ ସ୍ୱରୂପ ଖାଣ୍ଡବ-ବନ ଦହନ ବେଳେ ନବ-ଗୁଞ୍ଜରର ଆବିର୍ଭାବ । ଏ ପରିକଳ୍ପନାଟି ସାରଳା ମହା-ଭାରତର ସଂପୂର୍ଣ୍ଣ ନିଜସ୍ୱ ଓ ମୌଳିକ । ନବଗୁଞ୍ଜର କ'ଣ? ନଅଗୋଟି ବନ୍ୟଜନ୍ତୁର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗର ସମ୍ମି-ଶ୍ରଣରେ ଏହା ଗଠିତ । ଅଦୃଷ୍ଟପୂର୍ବ ଏକ ପ୍ରାଣୀ । ଏହା ହାତରେ ପୁଣି ପଦ୍ମଫୁଲ । ସେଥିପାଇଁ ଅର୍ଜୁନ ଏହାକୁ ହୁଏତ ଚିହ୍ନିଲେ ଶ୍ରୀକୃଷ୍ଣଙ୍କ କୌତୁକ ବେଶ ବୋଲି । କିନ୍ତୁ ଶ୍ରୀକୃଷ୍ଣଙ୍କ ଏପରି ନବଗୁଞ୍ଜର ପରିକଳ୍ପନା କାହିଁକି? ଏହା ଏକ ନୃତାତ୍ତ୍ୱିକ ପ୍ରଶ୍ନ । ଓଡ଼ିଶାର ଆରଣ୍ୟକ, ଶାବର ସମାଜରେ ଯେଉଁସବୁ ଉପଜାତି ବାସ କରୁଥିଲେ, ସେମାନଙ୍କ ବିଭିନ୍ନ ଗୋତ୍ର-ସଙ୍କେତ ବା Totemର ସମାହାର ନେଇ ନିର୍ମିତ ହୋଇଥିଲା ନବଗୁଞ୍ଜରର ପରି-କଳ୍ପନା । ଓଡ଼ିଶାରେ ସେତେବେଳେ ସେହିପରି ନୃତାତ୍ତ୍ୱିକ ପରିସ୍ଥିତି ଥିବାରୁ, ନବ-ଗୁଞ୍ଜରର ପରିକଳ୍ପନା ସମ୍ଭବ ହୋଇପାରିଲା । ସାରଳା-ମହାଭାରତରେ ଶ୍ରୀକୃଷ୍ଣଙ୍କ ଚିତ୍ରଣ ମଧ୍ୟ ଶ୍ଳାଘାପୂର୍ଣ୍ଣ ନୁହେଁ । ଏଥିରେ ଶ୍ରୀକୃଷ୍ଣ ଗୁପ୍ତ ସହଜିଆ ସାଧକ ଓ ରାଧା ସହଜ ସୁନ୍ଦରୀ ! କିନ୍ତୁ କେଉଁ ପରିସ୍ଥିତିରେ ଏହା ସମ୍ଭବ ହୋଇ ପାରିଲା ? ମାତ୍ର ଓଡ଼ିଶାରେ ସେତେ-ବେଳେ ସେ ପ୍ରକାର ଆଧ୍ୟାତ୍ମିକ ପରିସ୍ଥିତି ନ ଥିଲେ, ଓଡ଼ିଶାର ଜନସମାଜ ତାହାକୁ କଦାପି ଗ୍ରହଣ କରି ପାରି-ଥାନ୍ତା କିମ୍ବା ସାରଳା ଦାସ ଏପରି ଚିତ୍ରଣ ପାଇଁ କଦାପି ସାହସୀ ହୋଇ ନ ଥାନ୍ତେ । ଇତିହାସ ପ୍ରତି ସିଂହାବଲୋକନ କଲେ ଦେଖାଯିବ ତାହା ସହଜିଆ ବୌଦ୍ଧଧର୍ମର ବିଳୟର କାଳ । ଓଡ଼ିଶାକୁ ଏହାର ଗ୍ଳାନିରୁ ମୁକ୍ତ କରିବା ପାଇଁ ଆରମ୍ଭ ହୋଇଥିଲା ଅତନ୍ଦ୍ର ଆଧ୍ୟାତ୍ମିକ ପ୍ରଚେଷ୍ଟା । ଶ୍ରୀକୃଷ୍ଣଙ୍କ ସହଜିଆ ଚିତ୍ରଣରେ କେବଳ ତାହାର ପ୍ରତିଧ୍ୱନି ।

ପିଣ୍ଡ ବ୍ରହ୍ମାଣ୍ଡ ସାଧନା, ପଞ୍ଚଦଶ ଶତାବ୍ଦୀରେ ଆଧ୍ୟା-ତ୍ମିକ ଭାବନା ଓ ସଂସ୍କୃତିର ଥିଲା ମୁଖ୍ୟ ପ୍ରବୃତ୍ତି । ଏହାକୁ

ଜ୍ଞାନମିଶ୍ରା ଭକ୍ତି ବୋଲି କୁହାଯାଉଅଛି । ଯୋଗ ଓ ପ୍ରାଣାୟାମ ମଧ୍ୟରେ ଏହା ଆଚରିତ ହୋଇଥାଏ । ସମଗ୍ର ପଞ୍ଚସଖା ସାହିତ୍ୟ ଏହାର ଉଚ୍ଚାରଣରେ ଥିଲା ସୋଚ୍ଚାର । କାରଣ ସେତେବେଳେ ଏହାହିଁ ଥିଲା, ଓଡ଼ିଶାର ଆଧ୍ୟାତ୍ମିକ ସଂସ୍କୃତି ।

ଚୈତନ୍ୟ ଓଡ଼ିଶାରେ ଶୁଦ୍ଧଭକ୍ତିର ପ୍ରବର୍ତ୍ତକ ଥିଲେ ବୋଲି ଦାବୀ କରିବା, ଇତିହାସ ଦୃଷ୍ଟିରୁ ତଥ୍ୟ ସମର୍ଥିତ ନୁହେଁ । ଚୈତନ୍ୟଙ୍କ ପରବର୍ତ୍ତୀ କାଳରେ ହିଁ ଏହା ଓଡ଼ିଶାର ଆଧ୍ୟାତ୍ମିକ ଜୀବନକୁ ସ୍ପର୍ଶ କରିପାରିଛି । ଗୋଟିଏ ଶତାବ୍ଦୀରୁ କିଛି ଊର୍ଦ୍ଧ୍ୱକାଳ ଧରି ଓଡ଼ିଶାର ଆଧ୍ୟାତ୍ମିକ ସଂସ୍କୃତି ଏହାକୁ ପ୍ରତ୍ୟାଖ୍ୟାନ କରିଛି । ଆଳଂକାରିକ କବି-ତ୍ରୟୀଙ୍କ ମଧ୍ୟରେ ଶ୍ରେଷ୍ଠକବି ଦୀନକୃଷ୍ଣ ଦାସ "ରସ-କଲ୍ଲୋଳ" କାବ୍ୟରେ ଏହାର କୁଣ୍ଠିତ ବର୍ଣ୍ଣନା କରିଥିଲେ ସୁଦ୍ଧା ତାଙ୍କୁ ଶ୍ରୀକ୍ଷେତ୍ରରୁ ନିର୍ବାସିତ ହୋଇ ସମଗରା ପାଟର ଅପତରାରେ ମୃତ୍ୟୁବରଣ କରିବା ପାଇଁ ପଡ଼ିଛି । ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ତାଙ୍କ କାବ୍ୟରେ ରାଧାକୃଷ୍ଣ ଲୀଳା ବର୍ଣ୍ଣନା କରିଥିବା ହେତୁ ଓଡ଼ିଶାର ବୈଷ୍ଣବ ସମାଜରୁ ନିର୍ବାସିତ ହୋଇଥିଲେ । ଅଷ୍ଟାଦଶ ଊନବିଂଶ ଶତାବ୍ଦୀ ବେଳକୁ ଅଭିମନ୍ୟୁ ସାମନ୍ତସିଂହାରଙ୍କ "ବିଦଗ୍ଧ ଚିନ୍ତାମଣି" କାବ୍ୟରେ କେବଳ ଏହା ଗୃହୀତ ହୋଇ ପାରିଅଛି ।

ଊନବିଂଶ ଶତାବ୍ଦୀର ଶେଷ ପାଦ ବେଳକୁ ଆଧୁନିକ ଓଡ଼ିଆ-ସାହିତ୍ୟର ଉପକ୍ରମ କାଳରେ ସାହିତ୍ୟ ଓ ସଂସ୍କୃତି ମଧ୍ୟରେ ଘଟିଛି ବିଚ୍ଛେଦ । ରାଧାନାଥ-ମଧୁସୂଦନଙ୍କ କାବ୍ୟରେ ଓଡ଼ିଆ ସଂସ୍କୃତିର ଆଲେଖ୍ୟ ମିଳେ ନାହିଁ । ନାନ୍ଦନିକତା ଦୃଷ୍ଟିରୁ ଏମାନଙ୍କ କାବ୍ୟ ପୂର୍ବବର୍ତ୍ତୀ କବି-ମାନଙ୍କ ତୁଳନାରେ ଉନ୍ନତିତର ଓ ଏଥିରେ ଓଡ଼ିଆ ଜାତୀୟତାର ଉଦ୍‌ବୋଧନ ପ୍ରଚୁର ଥିଲେ ହେଁ ଏଥିରେ ଓଡ଼ିଆ ସଂସ୍କୃତିର ଉପାଦାନ ବିରଳ । ଗଙ୍ଗାଧର କିନ୍ତୁ ଇଂରାଜୀ ସାହିତ୍ୟ ଦ୍ୱାରା ପ୍ରଭାବିତ ହୋଇ ନ ଥିବାରୁ ତାଙ୍କ ରଚନାରେ ଓଡ଼ିଆ ସଂସ୍କୃତିର ପ୍ରଭାବ ଯେପରି ଗଭୀର, ସେହିପରି ଧାର୍ମିକ ।

ସତ୍ୟବାଦୀ ଗୋଷ୍ଠୀର ସାହିତ୍ୟ, ଓଡ଼ିଆ ସଂସ୍କୃତି, ଐତିହ୍ୟ ଓ ଜନଜୀବନ ସହିତ ଅଙ୍ଗାଙ୍ଗୀଭାବରେ ଜଡ଼ିତ । ପ୍ରକାରାନ୍ତରେ ଏ ସାହିତ୍ୟ, ଓଡ଼ିଆ ସଂସ୍କୃତି ଓ ଚେତନାର ଧାରକ ଓ ବାହକ । ରାଧାନାଥ ଯୁଗର କାବ୍ୟଧାରା ସହିତ ଏ ଗୋଷ୍ଠୀର କବିମାନଙ୍କର ସଂଘର୍ଷର ମୂଳଭିତ୍ତି ଏହିଠାରେ ।

ସବୁଜ-ଯୁଗର ଅଗ୍ରଗଣ୍ୟ କବି କାଳିନ୍ଦୀଚରଣଙ୍କ କବିତା ଓ "ମାଟିର ମଣିଷ" ପରି ଏକ କ୍ଲାସିକ୍‌ର ଉପ-ନ୍ୟାସକୁ ତୁଳନା କଲେ ଦେଖାଯିବ, ଏ ଯୁଗର କବିମାନସ ଥିଲା ଦ୍ୱିଧାହତ । କାଳିନ୍ଦୀଚରଣଙ୍କ ଉପନ୍ୟାସ ଓ ଗଳ୍ପରେ ଓଡ଼ିଆ ଜନଜୀବନ ଓ ସଂସ୍କୃତିର ପ୍ରତିଛବି ଗଭୀର ଥିଲେହେଁ, କବିତାରେ ଏହାର ଉଚ୍ଚାରଣ ଥିଲା କ୍ଷୀଣ । ସେହିପରି ବୈକୁଣ୍ଠନାଥଙ୍କ କବିତା ! ଅବଶ୍ୟ ସବୁଜ ଯୁଗର ଶେଷ ଆଡ଼କୁ ସବୁଜ ପରିବର୍ତ୍ତେ ଓହ୍ଲାଇ ଆସିଛନ୍ତି ବଜ୍ର-ବାଦଲ....ତାହା ମଧ୍ୟ ସେତେବେଳର ରାଜନୈତିକ ଅଭୀପ୍ସା ଓ ଚେତନାର ପ୍ରତିଧ୍ୱନି ।

ଏହାର ପରବର୍ତ୍ତୀ କାଳରେ ମାର୍କସିଜମ୍, ଫ୍ରଏଡିଜମ୍, ଇମ୍ପ୍ରେସନିଜମ୍, ରୋମାଣ୍ଟିସିଜମ୍, ସର୍-ରିଆଲିଜମ୍ ଏକ୍‌ଜିସ୍‌ଟେନସିଆଲିଜମ୍ ପ୍ରଭୃତି ବହୁ ଇଜିମ୍‌ର କଳରୋଳ ମଧ୍ୟରେ ଓଡ଼ିଆ ସାହିତ୍ୟରେ ଓଡ଼ିଆ ସଂସ୍କୃତିର ଅନ୍ତଃସ୍ୱର ହଜି ଯାଇଥିଲେହେଁ ଫକୀରମୋହନଙ୍କଠାରୁ କାହ୍ନୁଚରଣ, ଗୋପୀନାଥ ପ୍ରଭୃତିଙ୍କ ପର୍ଯ୍ୟନ୍ତ ବହୁ ଔପନ୍ୟା-ସିକ ଓଡ଼ିଆ ସାହିତ୍ୟରେ ଓଡ଼ିଆ ସଂସ୍କୃତିର ଅନ୍ତଃସ୍ୱରକୁ ବଞ୍ଚାଇ ରଖି ଆସିଅଛନ୍ତି ।

ଏହି ପୃଷ୍ଠଭୂମିରେ ସାଂପ୍ରତିକ ଓଡ଼ିଆ ସାହିତ୍ୟ ପ୍ରତି ଦୃଷ୍ଟିପାତ କଲେ ଦେଖାଯିବ ଓଡ଼ିଆ ଜନଜୀବନ ଓ ଚଳଣି ଆଉ ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ମଧ୍ୟରେ ଆବଦ୍ଧ ହୋଇ ରହି ନ ଥିବାରୁ ବହୁଳାଂଶରେ ଓଡ଼ିଆ ସାହିତ୍ୟ, ଓଡ଼ିଶାର ଜନଜୀବନ ଓ ସଂସ୍କୃତିଠାରୁ ବିଚ୍ଛିନ୍ନ ହୋଇପଡ଼ିଛି । ସାଂପ୍ରତିକ ଓଡ଼ିଆ ସାହିତ୍ୟ ବୃହତ୍ତର ପାଠକ ସମାଜରେ ପୂର୍ବପରି ଆଦୃତ ଓ ଅଭିନନ୍ଦିତ ହୋଇ ପାରୁ ନ ଥିବାର ମୂଳ କାରଣ ଏଇଠାରେ ।

ଆଜି ସମଗ୍ର ମନୁଷ୍ୟ ସମାଜ ଏକ ସାଂସ୍କୃତିକ ସଙ୍କଟ ମଧ୍ୟ ଦେଇ ଗତିକରି ଚାଲିଛି । ଓଡ଼ିଶା ମଧ୍ୟ ତାହାର ଅଲକ୍ଷିତରେ ଏହି ମହାଘ ଘୂର୍ଣ୍ଣୀବିନ୍ଦୁ ଭିତରକୁ ଟାଣିହୋଇ ଯାଇଛି । ଶିଳ୍ପୋନ୍ନତ, ବିକଶିତ ପାଶ୍ଚାତ୍ୟ ଦେଶମାନେ ଜୀବନର ନୂତନ ମୂଲ୍ୟବୋଧ ଅନ୍ୱେଷଣ କରୁଛନ୍ତି କୃଷ୍ଣଲିଳା, ହରେକୃଷ୍ଣ ସଂକୀର୍ତ୍ତନ, ପ୍ରାଣାୟାମ, ଜେନ୍, ତିବ୍‌ବତୀ, ବୌଦ୍ଧାଗର, ଏପରିକି ଗଞ୍ଜେଇ ଚିଲମ୍ ମଧ୍ୟରେ—ଯେପରି ପ୍ରାଚ୍ୟର ବିକାଶଶୀଳ, ପ୍ରାଚ୍ୟ ଦେଶ-ସବୁ ବୈଜ୍ଞାନିକ ସଂସ୍କୃତିର ସନ୍ଧାନ କରୁଛନ୍ତି ଚିକାଗୋ, ନ୍ୟୁୟର୍କ, ୱାସିଂଟନର ଲାବୋରେଟରୀ ବା କଳ-କାରଖାନାମାନଙ୍କରେ ।

ଏହି ଆକର୍ଷଣ ବିକର୍ଷଣର ପରିଣତିହିଁ ହେବ ଏକବିଂଶ ଶତାବ୍ଦୀର ସଂସ୍କୃତି । ଓଡ଼ିଆ ସଂସ୍କୃତି ତା' ମଧ୍ୟରେ କିପରି ଅନ୍ତଃରକ୍ଷା କରି ଅଥବା ରୂପାନ୍ତରିତ ହୋଇ ସାହିତ୍ୟରେ ତାହାକୁ ପ୍ରତିଫଳିତ କରିବ, ଭବିଷ୍ୟତହିଁ କେବଳ ତାହାର ଉତ୍ତର ଦେବ ।



# ଓଡ଼ିଶା ଇତିହାସରେ ନାଗବଂଶୀ ରାଜା ଶତ୍ରୁଭଞ୍ଜ

ଡା. ସତ୍ୟନାରାୟଣ ରାଜଗୁରୁ

ଓଡ଼ିଶାର ଇତିହାସରେ ଖାରବେଳଙ୍କ ପରି ନାଗବଂଶୀୟ ମହାରାଜ ଶତ୍ରୁଭଞ୍ଜ ବିନ୍ଧ୍ୟାଟବୀର ଶାସନକର୍ତ୍ତା ରୂପେ ଉତ୍ତର ଓଡ଼ିଶାର ଇତିହାସରେ ଚିର ସ୍ମରଣୀୟ ହୋଇ ରହିଛନ୍ତି । ଶିଳାଲିପି, ମୁଦ୍ରା ଓ ମୂର୍ତ୍ତି ଅଧ୍ୟୟନ କରି ଐତିହାସିକ ରାଜଗୁରୁ ଏହି ସନ୍ଦର୍ଭରେ ଶତ୍ରୁଭଞ୍ଜଙ୍କ ସଂପର୍କରେ ବିଶେଷ ତଥ୍ୟମାନ ପରିବେଷଣ କରିଛନ୍ତି ।

୧୯୬୫ ସାଲ ଡ଼ିସେମ୍ବର ମାସ, ୧୬ ତାରିଖ । ସେ ଦିନ ଖଣ୍ଡିଏ ଚିଠି ଡାକ ପିଅନ ମୋତେ ଆଣି ଦେଲା । ପତ୍ରଟି ଖୋଲି ଦେଖିଲି ତାହା କେଉଁଝର ଜିଲ୍ଲା କରଞ୍ଜିଆ ଉଚ୍ଚ-ପ୍ରାଥମିକ ସ୍କୁଲର ଅଧ୍ୟକ୍ଷ (ହେଡ଼ପଣ୍ଡିତ) ଶ୍ରୀ ରାମଚନ୍ଦ୍ର ମହାକୁଡ଼ ଲେଖିଛନ୍ତି । ଆଗରୁ ତାଙ୍କ ସଙ୍ଗେ ମୋର ପରିଚୟ ନ ଥିଲା । ତଥାପି ସେ ଚିଠିରେ ମୋତେ ସେ ଅନୁରୋଧ କରିଛନ୍ତି, ସେଠାକୁ ତଦନ୍ତ ଯିବାକୁ । କାରଣ କେଉଁଝରର ଚମ୍ପୁଆ ସବ୍‌ଡ଼ିଭିଜନ୍‌ରେ ଥିବା ଅସନପାଟ ନାମକ ଏକ ଆଦିବାସୀ ଗ୍ରାମରେ ମାଟିତଳୁ ଗୋଟିଏ ସୁନ୍ଦର ଶିବ ବିଗ୍ରହ ଥିବା ପ୍ରସ୍ତର ଫଳକ ଉଦ୍ଧାର କରାଯାଇଛି । ବିଗ୍ରହର ତଳ ଅଂଶରେ ୧୩ ପଂକ୍ତି ବିଶିଷ୍ଟ ଗୋଟିଏ ଦୀର୍ଘ ଲିପି ଖୋଦିତ ହୋଇଛି, ଯାହାକି କେହି ପଢ଼ିପାରୁ ନାହାନ୍ତି । ତେଣୁ ସେଠା ଲୋକଙ୍କ ଅନୁରୋଧରେ ସେ ପତ୍ରଟି ଲେଖିଥିଲେ । ଆଗରୁ ଏପରି କେତେ ଅପରିଚିତ ଲୋକଙ୍କଠାରୁ ପତ୍ର ପାଇ ମୁଁ ନିରାଶ ହୋଇ ଫେରିଥିବା ଘଟଣା ମୋର ମନେ ପଡ଼ିଲା । ତେଣୁ ଏହି ପତ୍ରର ଜବାବ ଦେବାକୁ ଯାଇ ମୁଁ ଲେଖିଲି– "ଆପଣ ଯେଉଁ ଶିଳାଲିପି କଥା ପତ୍ରରେ ଲେଖିଛନ୍ତି, ସେଥିର ଅବିକଳ ନକଲ ଗୋଟିଏ କାଗଜରେ ଲେଖି ପଠାନ୍ତୁ" । ମୁଁ ମନେ କରିଥିଲି ଯେ, ଲିପିରୁ ଛାପା ଉଠାଇବା କୌଶଳ ସେ ଜାଣି ନ ଥିବେ । ତେଣୁ ସେଥିରୁ କେତେକ ଅଂଶ ଅନ୍ତତଃ କପିକରି ପଠାଇଲେ ମୁଁ ଜାଣିବି, ସେ ଲିପିର ଖୋଦନ କାଳ କେଉଁ ଶତାବ୍ଦୀର ହେବ ସମ୍ଭବ ଓ ତାହା ପାଠଯୋଗ୍ୟ କି ନୁହେଁ ।

ଏ ଘଟଣାର ପ୍ରାୟ ୧୫ ଦିନ ପରେ ମୁଁ ତାଙ୍କଠାରୁ ଦ୍ୱିତୀୟ ପତ୍ରଟି ପାଇଲି ଓ ସେଥି ସଙ୍ଗେ ସେ ପଠାଇଥିବା ଲିପିର ଗୋଟିଏ ମୋଟାମୋଟି ନକଲ ମଧ୍ୟ ପାଇଲି ।

ଶ୍ରୀ ମହାକୁଡ଼ ବହୁ ପରିଶ୍ରମ କରି କାଳୀ ଲଗାଇ ଦୁଇଟି ଛାପା କାଗଜ (estampage) ମୋଠାକୁ ପଠାଇଲେ । ସେଥି ସାହାଯ୍ୟରେ ଯେଉଁ ପ୍ରାଥମିକ ପାଠ ମୁଁ ଶେଷ କରି ସେଥିରୁ ଜାଣି ପାରିଲି ଯେ କେବଳ ଓଡ଼ିଶା ନାହିଁକି ଭାରତ ଇତିହାସରେ ମଧ୍ୟ ପ୍ରାଧାନ୍ୟ ଲାଭ କରିବା ଐତିହାସିକ ବିବରଣୀ ଏଥିରୁ ମିଳିପାରିବ ।



ଓଡ଼ିଶା ଇତିହାସରେ ଖ୍ରୀ: ପୂ: ୧ମ ଶତାବ୍ଦୀରେ ମହାରାଜା ଖାରବେଳ ଯେପରି ଜଣେ ଭାରତ ବିଖ୍ୟାତ ବୀର ଥିଲେ ଏବଂ ତାଙ୍କ ହାତୀଗୁମ୍ଫା ଶିଳାଲେଖ ଯେପରି ଆମ ଇତିହାସରେ ଏକ ଅନ୍ଧକାର ଯୁଗର ଆଲୋକ-ବର୍ତ୍ତିକା ରୂପେ ଉଜ୍ଜ୍ୱଳ ହୋଇ ରହିଛି, ସେପରି ଖ୍ରୀ: ୩ୟ ବା ୪ର୍ଥ ଶତାବ୍ଦୀରେ ଭାରତର ପୂର୍ବାଞ୍ଚଳ ସମେତ ଓଡ଼ିଶା ଇତିହାସରେ ପ୍ରବର୍ତ୍ତିତ ଅନ୍ଧକାର ତଥା ସମସ୍ୟାଜଡ଼ିତ କୁହେଳିକା ଭେଦକରି ଏକ ନୂତନ ଆଲୋକ ଆଣିବାକୁ ଏହି ଅଜ୍ଞାତ ଆଦିବାସୀ ଅଞ୍ଚଳରୁ ପ୍ରାପ୍ତ ଶିଳାଲେଖଟି ସମର୍ଥ ହୋଇ ପାରିବ ବୋଲି ମୁଁ ମନେକରି । ଅବଶ୍ୟ ବୈଜ୍ଞାନିକ ପଦ୍ଧତିରେ ଏଥିର ସଠିକ ସମୟ ନିରୂପିତ ହେବା ଆବଶ୍ୟକ । ତେଣୁ ଏ ସମ୍ବନ୍ଧେ ସମ୍ୟକ ଆଲୋଚନା କରିବା ଏ ପ୍ରବନ୍ଧର ଲକ୍ଷ୍ୟ ।

## ଅସନ ଶିଳାଲେଖ ପାଠ *

"ସ ଜୟତି ନରେନ୍ଦ୍ରଚନ୍ଦ୍ର ଶ୍ରୀନାଗାନ୍ୱୟ ଶ୍ରିୟୋ ଯେନ
ସ୍ୱାମି ମହାବ୍ରହ୍ମସ୍ୟ ଚତୁର୍ଦ୍ଧି ଯୁଗାନ୍ତାଚଳ କୀର୍ତ୍ତି
କାମଜୟ ନୃପେନ ସୈବ ଦେବ ପୁତ୍ର ସମରେ
ଶତଶୂର ସଞ୍ଜେନ ପ୍ରତାପ ପ୍ରହିତ ଇଶମନ୍ତ–
ଧାରଣୈକ ଦକ୍ଷ–ସପ୍ତତୁରଙ୍ଗା ଧବୈବ ତେଜ–
ରାଶି–ମହାରାଜ ଶ୍ରୀମାଣଭଞ୍ଜା ତୁଜେନ ମହାଦେବ୍ୟା
ଦମୟନ୍ତ୍ୟା ପୁଣ୍ୟାତ୍ମାନେକ ସମର ସଂଘଟ୍ଟ–
ବିଜୟେନ ନାଗବଂଶ ବର୍ଦ୍ଧନେନ ପ୍ରଭାବୋପନ୍ନ–
ସର୍ବ ସାମନ୍ତାଧିପତିନା ବିନ୍ଧ୍ୟାଟବୀ ନାଥେନ
ସ୍ୱଭୁଜୋପାର୍ଜିତ କୀର୍ତ୍ତିଭାର ପାଟଳୀପୁତ୍ର, ଗୟା,
କୋମିଳ, ବର୍ଦ୍ଧବର୍ଦ୍ଧନ, ଗୌହାଟୀ, ଖଦ୍ରଂଶ,
ତାମ୍ରଲିପ୍ତୀ, ପୁଣ୍ଡ୍ରବର୍ଦ୍ଧନ, ଭଜୟ-ତୋସଳୀ,
ସୁଗବାଂ ଲକ୍ଷ ପ୍ରଦେନି ନାନା ଦକ୍ଷିଣଞ୍ଚଳ ସୁଗତା–
ଶ୍ରୟା ଦ୍ୟା ଜାୟାକାମୀ ବୃହନ୍ଧୁଧ୍ୱ ଆର୍ଯ୍ୟସୁଭକ
ଶୃଙ୍ଗାର ମଠ, ମୋକ୍ଷେଶ୍ୱର, ମଣିଭଦ୍ର-ମଠେ
ଗନୋଶ୍ୱ ମଠ ସ୍ଥାନେଶ୍ୱ ରତ୍ନ ସହସ୍ରାନେକ
ହିରଣ୍ୟ ଲକ୍ଷ ପ୍ରଦେନ ବ୍ରହ୍ମଗରୀ, ଚରକ,
ପରିବ୍ରାଜକ, ଭଟ୍ଟ, ଗୁର୍ଜ୍ଜିକା, ବର୍ଣ୍ଣାନ୍ତବାବ–
ସଂଘ, ବିହାର କାମଜେନ ପାଷଣ୍ଡ ଭିକ୍ଷୁଦେନ
ଭାରଥ, ପୁରାଣେତିହାସ, ବ୍ୟାକରଣୋପଶିକ୍ଷା, ନ୍ୟାୟ
କ୍ଷେନ ବିଜ୍ଞାନ ପ୍ରଣିକା ସଭ୍ରକର୍ମୀଭିକ୍ଷେନ
ମହାରାଜେନ ଶତ୍ରୁଭଞ୍ଜେନ ଦେବାୟତନଂ
କାରିତମିତି"–

ଲିପିତତ୍ତ୍ୱ ଓ ଭାଷାଗତ ଶୈଳୀରୁ ପ୍ରମାଣ ମିଳୁଛି ଯେ, ଏହା ନିଶ୍ଚିତଭାବେ ପ୍ରାଚୀନ-ଗୁପ୍ତବଂଶୀୟ ରାଜାମାନଙ୍କ ପ୍ରଚଳିତ ଲିପି ଓ ଲିଖନ ଭଙ୍ଗୀର ପ୍ରତୀକ । ସେଥିର ବିଶଦ୍ ଆଲୋଚନା କରିବା ବର୍ତ୍ତମାନ ଏହି କ୍ଷୁଦ୍ର ପ୍ରବନ୍ଧରେ ସମ୍ଭବ ନୁହେଁ । ତେଣୁ ସଂକ୍ଷେପରେ କେତୋଟି ଅତ୍ୟାବଶ୍ୟକ

* କେତେକ ଶବ୍ଦର ପାଠ ସଂଶୋଧିତ କରାଯାଇଛି ।



ପ୍ରସଙ୍ଗର ଅବତାରଣ କରି ଏହି ଶିଳାଲିପିର ମହତ୍ତ୍ୱ ପ୍ରତିପାଦନ କରାଯିବ ।

ଉପରୋକ୍ତ ଶିଳାଲେଖରେ ଉଲ୍ଲେଖ ଅଛି :—

"ସୈବ ଦେବପୁତ୍ର-ସମରେ ଶତଶୂର ସଞ୍ଜେନ"

ଅର୍ଥାତ୍ 'ଦେବପୁତ୍ରଙ୍କ' ସଙ୍ଗେ ଯୁଦ୍ଧ କରି ସେ (ରାଜା ଶତ୍ରୁଭଞ୍ଜ) 'ଶତଶୂର' ଉପାଧି ଲାଭ କରିଥିଲେ । ବର୍ତ୍ତମାନ ପ୍ରଶ୍ନ ହେଉଛି 'ଦେବପୁତ୍ର' କିଏ, ଯାହାଙ୍କୁ ଯୁଦ୍ଧରେ ପରାସ୍ତ କରି ସେ ରାଜା 'ଶତଶୂର' ସଂଜ୍ଞା ଲାଭ କରିଥିଲେ ?

ଭାରତ-ଇତିହାସରେ ପ୍ରାଚୀନ କୁଷାଣ ବଂଶୀୟ ରାଜାମାନେହିଁ 'ଦେବପୁତ୍ର' ସଂଜ୍ଞା ବ୍ୟବହାର କରୁଥିବା ପ୍ରସଙ୍ଗ ଉଲ୍ଲେଖ ହୋଇଅଛି । ଅନ୍ୟ କେଉଁ ରାଜବଂଶ ଖ୍ରୀ: ୪ର୍ଥ ଶତାବ୍ଦୀ ପରେ ଅର୍ଥାତ୍ ଭାରତରୁ କୁଷାଣମାନଙ୍କୁ ତଡ଼ି ଦିଆଗଲା ପରେ ଏ ସଂଜ୍ଞା ବ୍ୟବହାର କରି ନ ଥିଲେ । ଗୁପ୍ତବଂଶୀୟ ମହାରାଜା ସମୁଦ୍ରଗୁପ୍ତ ଭାରତରୁ କୁଷାଣମାନଙ୍କୁ ଉଚ୍ଛେଦ କରିଥିବା ପ୍ରସଙ୍ଗ ତାଙ୍କ ଅଭିଲେଖରେ ସୂଚିତ ହୋଇଅଛି । ସୁତରାଂ ଖ୍ରୀ ୪ର୍ଥ ଶତାବ୍ଦୀ ପରେ ଭାରତରେ କୁଷାଣମାନଙ୍କର ଆଧିପତ୍ୟ ସଂପୂର୍ଣ୍ଣ ରୂପେ ତିରୋହିତ ହୋଇଥିଲା । ଏହି ଐତିହାସିକ ତଥ୍ୟ ଉପରେ ନିର୍ଭର କରି ଶତ୍ରୁଭଞ୍ଜଙ୍କୁ ସମୁଦ୍ରଗୁପ୍ତଙ୍କ ସମସାମୟିକ ଜଣେ ପୂର୍ବଭାରତୀୟ ରାଜା ବୋଲି ନିଶ୍ଚିତଭାବେ କୁହାଯିବ । ସମ୍ଭବତଃ ମହାରାଜ ସମୁଦ୍ରଗୁପ୍ତ ଏକାକୀ ଭାରତର ବିଭିନ୍ନ ଅଞ୍ଚଳରୁ ବୈଦେଶିକ ପ୍ରବଳ ପରାକ୍ରମଶାଳୀ କୁଷାଣମାନଙ୍କୁ ପରାଜିତ କରିବା ସମ୍ଭବ ହୋଇ ନ ଥିବ । ତେଣୁ ସେ ଅନ୍ୟାନ୍ୟ କେତେକ ବନ୍ଧୁ ବା ଅନୁଗତ ରାଜାଙ୍କ ସାହାଯ୍ୟ ଗ୍ରହଣ କରି ଭାରତରେ ପ୍ରାଚୀନ ବୈଦିକ-ଧର୍ମର ପୁନଃପ୍ରତିଷ୍ଠା କରିଥିବେ । ପୂର୍ବ ଭାରତରେ ସେତେବେଳେ ବ୍ରାହ୍ମଣ୍ୟ ଧର୍ମ କ୍ଷୀଣ ହୋଇ ବୌଦ୍ଧ ଧର୍ମ ପ୍ରାଧାନ୍ୟ ଲାଭ କରିଥିଲା । ସେଥିର ନିରାକରଣ ନିମନ୍ତେ ସମୁଦ୍ରଗୁପ୍ତ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କରି କଳିଙ୍ଗ, ଦକ୍ଷିଣ କୋଶଳ, ମହାକାନ୍ତାର ସମେତ କେତେକ ରାଜ୍ୟରେ ବ୍ରାହ୍ମଣ ଧର୍ମ ପ୍ରତିଷ୍ଠା କରି ପାରିଥିଲେ । ସେହିପରି ପୂର୍ବ ଭାରତରେ ଶତ୍ରୁଭଞ୍ଜଙ୍କ ପରି ଜଣେ ପଣ୍ଡିତ ଓ ଧର୍ମପ୍ରାଣ ମହାରାଜା ପୂର୍ବ ଭାରତର ବିଭିନ୍ନ ଅଞ୍ଚଳକୁ ଯାଇ ସେଠାରେ ପ୍ରତିଷ୍ଠିତ ଧର୍ମାନୁଷ୍ଠାନମାନଙ୍କରେ ପ୍ରଚୁର ସଂଖ୍ୟାରେ ଗୋ-ଦାନ ଓ କାଞ୍ଚନ-ଦାନ କରିଥିଲେ । ମହାରାଜା ସମୁଦ୍ରଗୁପ୍ତ ଦକ୍ଷିଣ ଭାରତ ଅଭିଯାନ କରିବାକୁ ଗଲାବେଳେ ଯେପରି କୋଶଳ, ମହାକାନ୍ତାର, ଦେବରାଷ୍ଟ୍ର, ଏରଣପଲ୍ଲୀ, ମହେନ୍ଦ୍ର, କୋଟ୍ଟୁର, କୁସ୍ଥଳପୁର, ବେଙ୍ଗି ଓ କାଞ୍ଚିପୁରର ରାଜାମାନଙ୍କୁ ଜୟକରି ସେମାନଙ୍କୁ ପରେ ମୁକ୍ତ କରିଥିଲେ, ସେପରି ଶତ୍ରୁଭଞ୍ଜ ପୂର୍ବ ଭାରତରେ ନିମ୍ନ ଲିଖିତ ଅଞ୍ଚଳଗୁଡ଼ିକ ପରିଭ୍ରମଣ କରି ଯୁଦ୍ଧ ପରିବର୍ତ୍ତେ ସେଠାର ଧର୍ମାନୁଷ୍ଠାନଗୁଡ଼ିକର ସଂସ୍କାର କରି ଧର୍ମ ପ୍ରଚାରକ ତଥା ସାଧୁ-ସନ୍ଥ-ପଣ୍ଡିତମାନଙ୍କର ଥଇଥାନ କରିଥିଲେ, ଯେହେତୁ କୁଷାଣମାନଙ୍କ ଅତ୍ୟାଚାର ଫଳରେ ସେ ଅଞ୍ଚଳର ଧର୍ମାନୁଷ୍ଠାନଗୁଡ଼ିକ ବିପର୍ଯ୍ୟସ୍ତ ହୋଇଥିଲା । ତେଣୁ ସେ ପାଟଳୀପୁତ୍ର (ବିହାର

ରାଜଧାନୀ), ଗୟା, କୋମିଲା (ଆଧୁନିକ କୋମିଲା) ବର୍ଦ୍ଧମାନ (?), ଗୌହାଟୀ (ଆସାମ), ଖଡ୍ଗାଂଶ (?), ତାମ୍ରଲିପ୍ତି, ପୁଣ୍ଡ୍ରବର୍ଦ୍ଧନ, ଉଭୟ-ତୋଶାଳୀ, (ଓଡ଼ିଶାର ବାଲେଶ୍ୱରଠାରୁ ଗଞ୍ଜାମ ଜିଲ୍ଲା ପର୍ଯ୍ୟନ୍ତ ଉପକୂଳ ଅଞ୍ଚଳ) ପ୍ରଭୃତି ସ୍ଥାନରେ ଲକ୍ଷେ ସଂଖ୍ୟକ ଗୋଦାନ କରିଥିଲେ । ସମ୍ଭବତଃ କୁଷାଣମାନଙ୍କ ହେତୁ ସେ ଅଞ୍ଚଳରେ ଗୋ-ସଂପଦ ମଧ୍ୟ ନଷ୍ଟ ହୋଇ ଯାଇଥିଲା ; ତେଣୁ ବ୍ରାହ୍ମଣ୍ୟ ଧର୍ମର ପ୍ରବଚନ "ନମୋବ୍ରହ୍ମଣ୍ୟ ଦେବାୟ ଗୋ ବ୍ରାହ୍ମଣ ହିତାୟଚ" ଅନୁସରଣରେ ଏପରି ସଙ୍କଳ୍ପବଦ୍ଧ ଏକ ମହାଦାନ କରିବାକୁ ସେ ପ୍ରବୃତ୍ତ ହୋଇଥିଲେ । ଆଉ ମଧ୍ୟ ସେହି ଅଞ୍ଚଳର ତୀର୍ଥ ଓ ମଠଗୁଡ଼ିକରେ ଯଥା, ଶୃଙ୍ଗକାର ମଠ, ମୋକ୍ଷେଶ୍ୱର, ମଣିଭଦ୍ର ମଠ ପ୍ରଭୃତିରେ ରହିଥିବା ସହସ୍ର ସହସ୍ର ବ୍ରହ୍ମଚାରୀ, ଚରକ, ପରିବ୍ରାଜକ, ଭଟ୍ଟ-ଚାର୍ଣ୍ଣିକ, ବର୍ଣ୍ଣୀତକ, ଅବସଥ–ବିହାର–କାମୁକ ପାଷାଣ୍ଡ, ଭିକ୍ଷୁ ପ୍ରଭୃତିଙ୍କୁ ଲକ୍ଷେ ସ୍ୱର୍ଣ୍ଣ ଦାନ କରିଥିଲେ । ସେ ନିଜେ ମଧ୍ୟ ବହୁ ଶାସ୍ତ୍ରରେ ପାଣ୍ଡିତ୍ୟ ଲାଭ କରିଥିଲେ ।

ଏହି ବର୍ଣ୍ଣନାରେ କିଛି ଅତିଶୟୋକ୍ତି ହୁଏତ ରହି ଥାଇ ପାରେ । ତଥାପି ଶତ୍ରୁଭଞ୍ଜ ଯେ ବ୍ରାହ୍ମଣ ଧର୍ମର ପୁନଃ ପ୍ରତିଷ୍ଠା ନିମନ୍ତେ ଏପରି କାର୍ଯ୍ୟକଳାପ କରିଥିଲେ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଶତ୍ରୁଭଞ୍ଜଙ୍କ ପରିଚୟ ସମ୍ବନ୍ଧେ ଏହି ଲିପିରେ ଲେଖା ଯାଇଛି ଯେ, ସେ ନାଗ ବଂଶୀୟ ମହାରାଜା ମାଣ ଭଞ୍ଜଙ୍କ ପୁତ୍ର । ତାଙ୍କ ସାମ୍ରାଜ୍ୟର ନାମ 'ବିନ୍ଧ୍ୟାଟବୀ' । ତାଙ୍କର ଇଷ୍ଟ ଦେବତା ମହାରୁଦ୍ର; ବୋଧହୁଏ ନଟରାଜ ଶିବ ଯାହାଙ୍କର ବିଗ୍ରହ ଶଂସିତ ଲିପିର ଊର୍ଦ୍ଧ୍ୱ ଦେଶରେ ପ୍ରତିଫଳିତ ହୋଇଅଛି । ସେ ନିଜ ବୀରତ୍ୱ ବଳରେ ସମସ୍ତ ସାମନ୍ତା-ଧିପତିମାନଙ୍କୁ ଯୁଦ୍ଧରେ ପରାସ୍ତ କରି ପଦାନତ କରିଥିଲେ, ଯାହାକି ସମ୍ଭବ ହୋଇଥିଲା ମହାଦେବୀ ଦମୟନ୍ତୀଙ୍କ ପୁଣ୍ୟ ପ୍ରଭାବରୁ । ସେ 'ଶତପୁର' ସଂଜ୍ଞାଧାରଣ କରିଥିଲେ ।

ବର୍ତ୍ତମାନ ପ୍ରଶ୍ନ ହେଉଛି । ଯେଉଁ ଅସନପାଟ ଗ୍ରାମ (କେଉଁଝର ଜିଲ୍ଲାରୁ) ଶିଳାଲିପିଟି ଆବିଷ୍କୃତ ହୋଇଛି, ତାହା ସେ ଅଞ୍ଚଳରେ ପୂର୍ବ କାଳରୁ ଭୂ ଗର୍ଭରେ ଥିଲା, ଅଥବା ଅନ୍ୟ କେଉଁସ୍ଥାନରୁ ସେଠାକୁ ଅଣାଯାଇଥିଲା । ଆମର ଯେତେଦୂର ମନେ ହୁଏ, ସେହି ସ୍ଥାନଟି ଅଧିକ ଅନ୍ୱେଷଣ କଲେ ବିଶେଷ କିଛି ଗୁପ୍ତ ଯୁଗର ପ୍ରତ୍ନ ସଂପଦ ମିଳିପାରେ । କାରଣ କେଉଁଝର ଓ ମୟୂରଭଞ୍ଜ ଜିଲ୍ଲାରେ ବହୁ ପ୍ରାଚୀନ ଐତିହାସିକ ନିଦର୍ଶନ ରହିଛି, ଯାହାକି ଖ୍ରୀ : ୧ମ ଶତାବ୍ଦୀ ଓ ପରବର୍ତ୍ତୀ ଅନ୍ଧକାର-ଯୁଗର ଓଡ଼ିଶା–ଇତିହାସକୁ ଯଥେଷ୍ଟ ଉପାଦାନ ଯୋଗାଇ ପାରିବ । ଉଦାହରଣ ସ୍ୱରୂପ କେଉଁଝର ଢେଙ୍କିକୋଟ ନିକଟବର୍ତ୍ତୀ ସୀତାବିଞ୍ଜିରେ ଯେଉଁ ଶିଳାଲେଖ ଓ ପାହାଡ଼ ଗାତ୍ରରେ ଥିବା 'ରାବଣ ଛାୟା' ପ୍ରଭୃତି ଗହ୍ୱରରେ ପ୍ରାଚୀନ ବିଶାଭଞ୍ଜ ନାମକ ରାଜାଙ୍କ ପାରିଧି ଚିତ୍ର ଅଙ୍କିତ ହୋଇଛି, ତାହା ସେହି ଗୁପ୍ତଯୁଗ ଓ ପରବର୍ତ୍ତୀ ୫ମ, ୬ଷ୍ଠ ଶତାବ୍ଦୀର ସ୍ଥାପତ୍ୟ ସଙ୍ଗେ ସମାନ ବୋଲି ସ୍ଥିର କରାଯାଇଛି । ସ୍ଥାନରେ କହିବାକୁ ଗଲେ, ସୀତାବିଞ୍ଜି ପୂର୍ବେ ଗୋଟିଏ ପ୍ରାକୃତିକ ଗିରିଦୁର୍ଗ ଥିଲା । ସେଠାରେ 'ଭଞ୍ଜ' ସଂଜ୍ଞକ ରାଜାମାନେ ରାଜତ୍ୱ କରୁଥିଲେ । ସମ୍ଭବତଃ ସେଠାରେ ଅବସ୍ଥିତ ଭଞ୍ଜ ବଂଶୀୟ ରାଜାମାନେ ମୂଳତଃ ପ୍ରାଚୀନ ନାଗବଂଶର ଗୋଟିଏ ଶାଖା । ଭାରତରେ ନାଗମାନଙ୍କ ବିବରଣୀ ନିମ୍ନୋକ୍ତ ଘଟଣାରୁ ଜଣାଯାଇଛି । ସେମାନଙ୍କ ସଙ୍ଗେ ବାକାଟକ ରାଜବଂଶର ବୈବାହିକ ସଂପର୍କ ପ୍ରତିଷ୍ଠିତ ହୋଇ ତାହା ଖ୍ରୀ: ୩ୟଠାରୁ ୬ଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ଅବିଚ୍ଛିନ୍ନ ରହିଥିଲା । ସେହି ବଂଶରେ ବିନ୍ଧ୍ୟ ଶକ୍ତିଙ୍କ ପୁତ୍ର ପ୍ରବର ସେନ (୧ମ) ରାଜତ୍ୱ କରୁଥିଲେ । (J. R. A. S. B., Vol. XII, P. P. 4-4) ଖ୍ରୀ: ୪ର୍ଥ ଶତାବ୍ଦୀରେ ସମୁଦ୍ରଗୁପ୍ତ ନାଗଦଳଙ୍କୁ ଉତ୍ତର ଭାରତରେ ପରାସ୍ତ କରିଥିଲେ । ବିଶିଷ୍ଟ ଐତିହାସିକ ଜୟ-ସ୍ୱାଲଙ୍କ ମତରେ ସେ ହେଉଛନ୍ତି, ଶମ୍ଭୁର ନାଗବଂଶୀୟ ମହାରାଜା ମହେଶ୍ୱର ନାଗଙ୍କ ପୁତ୍ର । ଜୟସ୍ୱାଲ ଆଉମଧ୍ୟ ପ୍ରମାଣିତ କରିଅଛନ୍ତି ଯେ ଭାରଶିବ (ନାଗ) ବଂଶୀୟ ରାଜାମାନେ କାଶୀରେ ଦଶଟି ଅଶ୍ୱମେଧ ଯଜ୍ଞ କରି ଗଙ୍ଗା ତଟରେ 'ଦଶାଶ୍ୱମେଧଘାଟ' ପ୍ରତିଷ୍ଠା କରିଥିଲେ, କିନ୍ତୁ ମିରାଶି ଏଥିରେ ଖଣ୍ଡନକରି କହିଛନ୍ତି ଯେ, ଭାରଶିବ (ନାଗ)ମାନେ ଦକ୍ଷିଣ ଭାରତରେହିଁ ଅବସ୍ଥାନ କରୁଥିଲେ । ବିନ୍ଧ୍ୟାଞ୍ଚଳର ଦକ୍ଷିଣରେ ସେମାନଙ୍କ ସାମ୍ରାଜ୍ୟ ପ୍ରସାରିତ ହୋଇଥିଲା । ମଧ୍ୟ ଭାରତର ପଦ୍ମାବତୀଠାରେ ତାଙ୍କର ଗୋଟିଏ ରାଜଧାନୀ ଥିଲା ❋

ବର୍ତ୍ତମାନ ଅଶନପାଟ ଶିଳାଲେଖରେ ସ୍ପଷ୍ଟ ଉଲ୍ଲେଖ ହୋଇଛି ଶତ୍ରୁଭଞ୍ଜଙ୍କ ରାଜ୍ୟର ନାମ ଥିଲା 'ବିନ୍ଧ୍ୟାଟବୀ' । ଏହି ରାଜ୍ୟଟି ମହାକବି ବାଣଭଟ୍ଟଙ୍କ ରଚିତ 'ହର୍ଷ ଚରିତ' ନାମକ ସଂସ୍କୃତ କାବ୍ୟରେ ବର୍ଣ୍ଣିତ ହୋଇଅଛି । ବାଣଭଟ୍ଟ ଥିଲେ ପୁଷ୍ପଭୂତି ବଂଶୀୟ ମହାରାଜା ହର୍ଷବର୍ଦ୍ଧନଙ୍କ ସଭା ପଣ୍ଡିତ । ତେଣୁ ସେ ତାଙ୍କ ପୃଷ୍ଠପୋଷକ ମହାରାଜାଙ୍କ ଜୀବନର ଘଟଣାବଳୀ କାବ୍ୟାକାରରେ ଲେଖିଥିଲେ, ଯାହାକି ଏକ ସତ୍ୟ ସମ୍ବଳିତ ଐତିହାସିକ ଗ୍ରନ୍ଥରୂପେ ଗୃହୀତ ହୁଏ । ମହାରାଜା ହର୍ଷ-ବର୍ଦ୍ଧନ ଖ୍ରୀ: ୭ମ ଶତାବ୍ଦୀରେ ପୂର୍ବ ଭାରତର ମହାରାଜା ଶଶାଙ୍କ ରାଜଙ୍କୁ ଯୁଦ୍ଧରେ ପରାସ୍ତ କରିବା ସକାଶେ ବିନ୍ଧ୍ୟାଟବୀକୁ ଯାତ୍ରା କରିଥିଲେ । କାରଣ, ତାଙ୍କ ଭଗ୍ନୀ ମାଳବରୁ ଶଶାଙ୍କ ରାଜଙ୍କ ଦ୍ୱାରା ଅପହୃତା ହୋଇ ବିନ୍ଧ୍ୟାଟବୀରେ ଆତ୍ମଗୋପନ କରିବାକୁଯାଇ ସେଠାରେ ପଥଭ୍ରଷ୍ଟା ହୋଇଥିଲେ । ଏ ସମ୍ବାଦ ପାଇ ହର୍ଷ ସ୍ୱୀୟ ସୈନ୍ୟ ସାମନ୍ତଙ୍କସହ ବିନ୍ଧ୍ୟାଟବୀରେ ପ୍ରବିଷ୍ଟ ହେଲେ, କିନ୍ତୁ ସୁଦୀର୍ଘ ଅରଣ୍ୟ ମଧ୍ୟରେ ରାଜଶ୍ରୀଙ୍କୁ ସନ୍ଧାନକରି ପାଇବା ତାଙ୍କ ପକ୍ଷେ ସମ୍ଭବ ନ ଥିଲା । ସେତେବେଳେ ମନ୍ତ୍ରୀ କହିଲେ—"ମହାରାଜ ! ସେଠାରେ ଜଣେ ଆଦିବାସୀ ରାଜା ଅଛନ୍ତି । ବିନ୍ଧ୍ୟାଟବୀର ପ୍ରତ୍ୟେକ ଅଞ୍ଚଳ ତାଙ୍କୁ ଗୋଚର; ଏପରି କେଉଁ ବନ୍ୟ ପଶୁ ସେଠାରେ ନାହିଁ ଯାହାର ବାସସ୍ଥାନ ସେ କହିପାରିବେ ନାହିଁ । ତେଣୁ ତାଙ୍କୁ ପଚାରିଲେ ସେ ମହାରାଣୀ

❋ଏ ସମ୍ବନ୍ଧରେ ବିଶଦ୍ ବିବରଣୀ ଏ ଲେଖକଙ୍କର 'ନାଗ ଇତିହାସ' ନାମକ ପୁସ୍ତକକୁ ଦେଖିବାକୁ ମିଳିବ

ରାଜଶ୍ରୀଙ୍କୁ ଖୋଜି ଆଣି ପାରନ୍ତି । ଏହା ଶୁଣି ହର୍ଷବର୍ଦ୍ଧନ ବିନ୍ଧ୍ୟାଟବୀ ରାଜ୍ୟକୁ ଯାତ୍ରା କଲେ । ସେହି ରାଜ୍ୟଟି ଯଥେଷ୍ଟ ସମୃଦ୍ଧ ଓ ସୌଷ୍ଠବପୂର୍ଣ୍ଣ ଥିଲା । ବହୁ ଆଶ୍ରମ ଓ ଶସ୍ୟକ୍ଷେତ୍ର ସେଠାରେ ବିଦ୍ୟମାନ । ସେହି ବିନ୍ଧ୍ୟାଟବୀର ଆଦିବାସୀ ରାଜାଙ୍କୁ ଭେଟି ତାଙ୍କଠାରୁ ହର୍ଷ ଶୁଣିଲେ ଯେ ସେଠାରୁ ଅଳ୍ପ ଦୂରରେ ଏକ ବୌଦ୍ଧ ଗୁରୁଙ୍କ ଆଶ୍ରମରେ ଛାତ୍ରମାନେ ବିଦ୍ୟାଧ୍ୟୟନ କରନ୍ତି । ତାଙ୍କଠାରୁ ସଠିକ ସମ୍ବାଦ ମିଳି ପାରିବ । ଏହା ଶୁଣି ହର୍ଷ ନିର୍ଦ୍ଦିଷ୍ଟ ଗୁରୁକୁଳାଶ୍ରମରେ ପହଞ୍ଚିଲେ ଏବଂ ଜଣେ ଛାତ୍ରଙ୍କ ଠାରୁ ସେଠାରେ ଅବଗତ ହେଲେ, କେତେକ ଭଦ୍ର ନାରୀ ଭଦ୍ରମହିଳା ଘୋର ଅରଣ୍ୟ ମଧ୍ୟରେ ପଥ ହରାଇ ଅତି ଦୁଃଖାକୂଳିତ ଭାବେ ଅଗ୍ନିରେ ଝାସ ଦେବାକୁ ଆୟୋଜନ କରୁ ଅଛନ୍ତି । ଏହା ଶୁଣି ହର୍ଷ ଓ ତାଙ୍କ ସହଚରମାନେ କାଳବିଳମ୍ବ ନ କରି ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଲେ ଓ ମାଳବର ମହାରାଣୀ ରାଜଶ୍ରୀ ଓ ତାଙ୍କ ସହଚରୀମାନଙ୍କୁ ଆତ୍ମହତ୍ୟାରୁ ଉଦ୍ଧାର କଲେ । ମହାରାଜା ହର୍ଷବର୍ଦ୍ଧନ ତାଙ୍କ ଶତ୍ରୁ କର୍ଣ୍ଣ ସୁବର୍ଣ୍ଣର ଅଧୀଶ୍ୱର ଶଶାଙ୍କ ରାଜଙ୍କୁ ନିହତ କରି ସେହି ରାଜ୍ୟରେ ପ୍ରାଗ୍‌ଜ୍ୟୋତିଷାଧିପତି ଭାସର ବର୍ମାଙ୍କୁ ଅଭିଷିକ୍ତ କରିଥିଲେ । ଏହା ଖ୍ରୀ: ୭ମ ଶତାବ୍ଦୀର ଘଟଣା ।

ଉପରୋକ୍ତ ଆଖ୍ୟାନରୁ ସ୍ପଷ୍ଟ ଜଣା ଯାଉଛି ଯେ ବିନ୍ଧ୍ୟାଟବୀ ରାଜ୍ୟ କେବଳ ଅରଣ୍ୟ ସଙ୍କୁଳ ପ୍ରଦେଶ ନୁହେଁ, ସେଠାରେ ଶସ୍ୟ କେଦାର, ଫଳବୃକ୍ଷ ଆଶ୍ରମ ଓ ଗୁରୁକୁଳାଶ୍ରମ ପ୍ରଭୃତି ଥିଲା । ତେଣୁ ସାମୟିକଭାବେ ଖ୍ରୀ: ୭ମ ଶତାବ୍ଦୀରେ ସେ ଅଞ୍ଚଳ କେଉଁ ଜଣେ ଆଦିବାସୀଙ୍କ ହସ୍ତଗତ ହୋଇଥିଲେ ସୁଦ୍ଧା ତତ୍‌ପୂର୍ବରୁ 'ବିନ୍ଧ୍ୟାଟବୀ' ନିଶ୍ଚିତ ଭାବେ କେଉଁ ସଭ୍ୟ ଶିକ୍ଷିତ ରାଜାଙ୍କର ଶାସନାଧୀନ ଥିଲା । ତେଣୁ ତାହା ବିନ୍ଧ୍ୟାଚଳର ନିକଟସ୍ଥ ଘୋର ଅଟବୀ ସଙ୍କୁଳ ସ୍ଥାନ ବୋଲି କହିବା ଯୁକ୍ତିଯୁକ୍ତ ନୁହେଁ । ଅଶନପାଟ ଶିଳାଲେଖ ଯେବେ କେଉଁଠାରୁ ଉଠାଇ ଆଣି କେନ୍ଦୁଝର ଜିଲ୍ଲାର ଏହି ଅଖ୍ୟାତ ଆଦିବାସୀ ଅଧ୍ୟୁଷିତ ପଲ୍ଲୀରେ ସ୍ଥାପିତ କରାଯାଇ ନ ଥିବ, ତେବେ ଏ ଅଞ୍ଚଳଟି ନିଶ୍ଚିତ ଭାବେ ଖ୍ରୀ: ୪ର୍ଥ ଶତାବ୍ଦୀରେ 'ବିନ୍ଧ୍ୟାଟବୀ' ନାମରେ ଅଖ୍ୟାତ ହୋଇଥିଲା ଏବଂ ସେଠାରେ 'ଭଞ୍ଜ' ସଂଜ୍ଞାଧାରୀ ନାଗବଂଶୀୟ ରାଜାମାନେହିଁ ରାଜତ୍ୱ କରୁଥିଲେ ବୋଲି କହିବା ଯୁକ୍ତିଯୁକ୍ତ । ମୟୂରଭଞ୍ଜ ଓ କେନ୍ଦୁଝର ଠାରୁ ଆରମ୍ଭ କରି ଓଡ଼ିଶାର ଆଦିବାସୀ ବହୁଳ ଘୁମୁସର ପର୍ଯ୍ୟନ୍ତ ସମୁଦାୟ ଅଞ୍ଚଳରେ ପ୍ରାଚୀନ 'ଭଞ୍ଜ' ସଂଜ୍ଞକ ରାଜାମାନେ ରାଜତ୍ୱ କରୁଥିଲେ । କାଳର ଦୀର୍ଘତା ହେତୁ ସେମାନେ ତାଙ୍କ ମୂଳ ବଂଶର ନାମ (ନାଗ) ବିସ୍ମୃତ ହୋଇ 'ଭଞ୍ଜ' ସଂଜ୍ଞାକୁ ବଂଶର ନାମ ରୂପେ ବ୍ୟବହାର କଲେ ଏବଂ ବଶିଷ୍ଠଙ୍କ ଆଶ୍ରମରେ ପ୍ରତିପାଳିତ ମୟୂର ଅଣ୍ଡରୁ ଜାତ ବୋଲି କିମ୍ବଦନ୍ତୀ ସୃଷ୍ଟି କରିଥିଲେ । ଓଡ଼ିଶାର ଭୌମ ବଂଶୀୟ ରାଜାମାନେ ମଧ୍ୟ ତାଙ୍କ ନାମର ସଂଜ୍ଞାଟି ବଂଶ ରୂପେ ବ୍ୟବହାର କରି "କରଭୂତ" ଆଖ୍ୟା ଧାରଣ କରିଥିବା ପ୍ରସଙ୍ଗ କେତେକ ଅଭିଲେଖରୁ ପ୍ରକଟିତ ହୁଏ ।

ଇତିହାସରୁ ଆମ୍ଭେ ପ୍ରମାଣ ପାଇଛୁ ଯେ ବହୁ ପ୍ରାଚୀନ ରାଜବଂଶ ସମ୍ପୂର୍ଣ୍ଣରୂପେ ଲୁପ୍ତ ହୋଇ ତାଙ୍କ ରାଜ୍ୟରେ ଅନ୍ୟ ରାଜବଂଶ ଆଧିପତ୍ୟ ଲାଭ କରିଅଛନ୍ତି । ଏ ଦୃଷ୍ଟିରୁ ବିଚାର କଲେ ଜଣାଯିବ ଯେ ସମ୍ଭବତଃ ବିନ୍ଧ୍ୟାଟବୀରୁ ନାଗବଂଶ ଉଚ୍ଛେଦିତ ହୋଇ କେଉଁ ଆଦିବାସୀଙ୍କ ଅଧୀନରେ ସାମୟିକଭାବେ ସେ ରାଜ୍ୟଟି ରହିଥିଲା । ପରେ ପୈତୃକ ରାଜ୍ୟ ପାଇବାକୁ ଭଞ୍ଜ ସଂଜ୍ଞାଧାରୀ ରାଜବଂଶ ସେ ଅଞ୍ଚଳ ପୁଣି ଅଧିକାର କରି ସ୍ୱୀୟ ବଂଶ ସୁପ୍ରତିଷ୍ଠିତ କଲେ । ଅବଶ୍ୟ ଏହି ସମ୍ଭାବନା ଅଧିକ ଗବେଷଣାସାପେକ୍ଷ ; ତଥାପି ସମୂହ ଭାବରେ କହିବାକୁ ଗଲେ ମହାକବି ବାଣଭଟ୍ଟଙ୍କ ବର୍ଣ୍ଣିତ ବିନ୍ଧ୍ୟାଟବୀ ଯେ ଶଶାଙ୍କ-ଶାସିତ କର୍ଣ୍ଣ ସୁବର୍ଣ୍ଣ ରାଜ୍ୟର ନିକଟବର୍ତ୍ତୀ କୌଣସି ଅଞ୍ଚଳ, ଏଥିରେ ଆଦୌ ସନ୍ଦେହ ନାହିଁ । କାରଣ ଚୀନ୍ ପରିବ୍ରାଜକ ହୁଏନ୍‌ସାଂ । ଖ୍ରୀ: ୭ମ ଶତାବ୍ଦୀରେ ଏ ଅଞ୍ଚଳ ଦେଇ ଦକ୍ଷିଣକୁ ଗଲାବେଳେ ତାଙ୍କ ଭ୍ରମଣ ବୃତ୍ତାନ୍ତରେ କର୍ଣ୍ଣସୁବର୍ଣ୍ଣର ବର୍ଣ୍ଣନା କରି ଅଛନ୍ତି । ସେଥିର ଯେଉଁ ଭୌଗୋଳିକ ବିବରଣୀ ତାଙ୍କ ଲେଖାରୁ ମିଳିଛି, ସେଥିରୁ ମନେ ହୁଏ, ମୟୂରଭଞ୍ଜ ବା ସେଥିର ନିକଟବର୍ତ୍ତୀ କୌଣସି ଅଞ୍ଚଳରେ କର୍ଣ୍ଣ ସୁବର୍ଣ୍ଣ ରାଜ୍ୟଟି ପ୍ରତିଷ୍ଠା ଲାଭ କରିଥିଲା । ଏ ଦୃଷ୍ଟିରୁ ବିଚାର କଲେ 'ବିନ୍ଧ୍ୟାଟବୀ' ରାଜ୍ୟର ଅବସ୍ଥିତି କେନ୍ଦୁଝର ଜିଲ୍ଲା ଓ ସେଥିର ପାରିପାର୍ଶ୍ୱିକ ଅଞ୍ଚଳ ବୋଲି ନିର୍ଦ୍ଦେଶ କରିବା ଯୁକ୍ତି ଯୁକ୍ତ ।

ଅଶନପାଟ ଶିଳାଲେଖର ଦ୍ୱିତୀୟ ଆଲୋଚ୍ୟ ବିଷୟ ହେଉଛି, ଲିପିର ଊର୍ଦ୍ଧ୍ୱ ଦେଶରେ ଥିବା ଅଷ୍ଟଭୁଜ ନୃତ୍ୟରତ ଶିବଙ୍କ ବିଗ୍ରହ । ଶତ୍ରୁଭଞ୍ଜ ନିଜେ ଜଣେ ଶୈବ ଥିଲେ । କାରଣ ସେ ମହାରୁଦ୍ର (ଶିବ)ଙ୍କ ନାମ ଉକ୍ତ ଲିପିରେ ଉଲ୍ଲେଖ କରି ଅଛନ୍ତି । ଯେଉଁ ନଟରାଜ ଶିବଙ୍କ ସ୍ୱରୂପ ଏହି ଶିଳା ଫଳକରେ ଅଛି, ତାହା କେତେକ ପଣ୍ଡିତଙ୍କ ମତରେ ଖ୍ରୀ: ୬ଷ୍ଠ ଶତାବ୍ଦୀର ପୂର୍ବବର୍ତ୍ତୀ ନୁହେଁ । ତାଙ୍କ ମତାନୁସାରେ ୬ଷ୍ଠ ଶତାବ୍ଦୀ ପୂର୍ବରୁ ଭାରତରେ ନଟରାଜଙ୍କ ଏପରି ସ୍ୱରୂପ ଓ ଶିଳ୍ପ ଶୈଳୀ କେଉଁଠାରେ ପ୍ରଚଳିତ ହୋଇ ନ ଥିଲା କିନ୍ତୁ ଠିକ୍ ଏପରି ମୂର୍ତ୍ତି ଭୁବନେଶ୍ୱରର କେତେକ ପ୍ରାଚୀନ ମନ୍ଦିର ଗାତ୍ରରେ ଦେଖିବାକୁ ମିଳେ । ସେଥିମଧ୍ୟରେ ମାଉସୀମା (ରାମେଶ୍ୱର) ମନ୍ଦିର ସମ୍ମୁଖରେଥିବା ଶତ୍ରୁଘ୍ନେଶ୍ୱର ମନ୍ଦିରଟି ପ୍ରାଚୀନତମ (ପ୍ରାୟ ୬ଷ୍ଠ ଶତାବ୍ଦୀ) ବୋଲି ସ୍ଥିର କରାଯାଉଛି । ଏଠାରେ କହି ରଖିବା ଆବଶ୍ୟକ ଯେ ପ୍ରାଚୀନ କାଳରୁ ଭଞ୍ଜ ବଂଶୀୟ କେତେକ ରାଜା ନଟରାଜ ଶିବଙ୍କୁ ଇଷ୍ଟ ଦେବତା ରୂପେ ଜ୍ଞାନ କରି ନିମ୍ନୋକ୍ତ ବନ୍ଦନା ଶ୍ଳୋକ ତାମ୍ର ଶାସନ ଆରମ୍ଭରେ ଉଲ୍ଲେଖ କରୁଥିଲେ :—

"କ୍ଷେଣ୍ଣା ହେଳିବ ଯେ ଫଣା ପ୍ରବିଲ ସତ୍
ତ୍ୟଦ୍‌ଭାସ୍ୱରେନ୍ଦୁ ତ୍ୱିଷ
ପ୍ରାଲେୟାଚଳ ନୂର କୋଟୟ ଉଦ
ତ୍ୱିଂଶନ୍ତି ଯେଷ୍ୱନ୍ନତା ।

ନୃତ୍ୟାଟୋପ ବିଘଟିତା ଇବ ଭୁଜା
ରାଜନ୍ତି ଯେ ଶାମ୍ଭବା–
ସ୍ତେ ସର୍ବଘବିଘାତିନ ସୁରସରି–
ତୋୟୋର୍ମୟଃ ପାନ୍ତୁବୀ ।”

ଯେଉଁ ଶିବଙ୍କ ଜଟାରେ ମହାନାଗ ଫଣା ବିସ୍ତାର କରି ତତ୍ରସ୍ଥ ଚନ୍ଦ୍ରାଲୋକରେ ଉଜ୍ଜ୍ୱଳ ଦେଖା ଯାଉଛି ; ହିମାଳୟ ପର୍ବତରେ ଯାହାଙ୍କର ନୃତ୍ୟକାଳୀନ ଆଡ଼ମ୍ବରପୂର୍ଣ୍ଣ ଭୁଜମାନଙ୍କର ସଂଘଳନହେତୁ ଜଟାଜୁଟରୁ ନିଃସୃତ ସୁପବିତ୍ର ସ୍ୱର୍ଗୀୟ ଗଙ୍ଗାଜଳ ଉଚ୍ଛୁଳି ପଡ଼େ, ସେ ଆମ୍ଭଙ୍କୁ ରକ୍ଷା କରନ୍ତୁ ।

ଆଗରୁ କୁହାଯାଇଛି ଯେ, ଭାରତରେ ନାଗବଂଶୀୟ ରାଜାମାନେ ପ୍ରାଚୀନ ବ୍ରାହ୍ମଣ୍ୟ ଧର୍ମ ପୁନଃ ପ୍ରତିଷ୍ଠା କରି ଶୈବାରାଧନା କରୁଥିଲେ । ସେହି ପ୍ରାଚୀନ ବଂଶର ଶାଖାପ୍ରଶାଖା ଭାରତର ବିଭିନ୍ନ ଅଞ୍ଚଳରେ ରାଜତ୍ୱ କରୁଥିଲେ । ସେହିପରି ପରବର୍ତ୍ତୀ କାଳରେ ଗୁପ୍ତବଂଶୀୟ ରାଜାମାନେ ମଧ୍ୟ ବ୍ରାହ୍ମଣ୍ୟ ଧର୍ମର ସୁରକ୍ଷା ନିମନ୍ତେ କେତେକ ଯାଗ ଯଜ୍ଞ କରୁଥିଲେ । ତେଣୁ ନାଗ ଓ ଗୁପ୍ତମାନଙ୍କ ମଧ୍ୟରେ ବୈବାହିକ ସଂପର୍କ ସ୍ଥାପିତ ହୋଇଥିଲା ।

ପ୍ରଭାବତୀ ଗୁପ୍ତାଙ୍କର ପୁନା ତାମ୍ର ଶାସନରୁ ଏଥିର ସ୍ପଷ୍ଟ ପ୍ରମାଣ ମିଳିଛି । ସମୁଦ୍ରଗୁପ୍ତଙ୍କ ପୁତ୍ର ଦ୍ୱିତୀୟ ଚନ୍ଦ୍ରଗୁପ୍ତ କୁବେର ନାଗଙ୍କ କନ୍ୟାଙ୍କୁ ବିବାହ କରିଥିଲେ । ତାଙ୍କ ଗର୍ଭରୁ ପ୍ରଭାବତୀ ଗୁପ୍ତା ଜନ୍ମିଥିଲେ । ସେ ବାକାଟକ ବଂଶୀୟ ମହାରାଜ ରୁଦ୍ରସେନଙ୍କ ପାଣିଗ୍ରହଣ କରିଥିଲେ । (E. P. 3rd Vol. XV-P—39) ।

ଗୁପ୍ତ ଓ ନାଗମାନଙ୍କ ମଧ୍ୟରେ କେବେ କେବେ ଯୁଦ୍ଧ ମଧ୍ୟ ହେଉଥିଲା । କାରଣ ଉଭୟ ରାଜବଂଶର ଶାଖା ପ୍ରଶାଖା ବିଭିନ୍ନ ଅଞ୍ଚଳରେ ବିସ୍ତାରିତ ଭାବେ ଶକ୍ତି ସଂଚୟ କରିବାରେ ଲାଗିଥିଲେ । ସ୍କନ୍ଦଗୁପ୍ତଙ୍କ ଜୁନାଗଡ଼ ତାମ୍ର ଶାସନରେ ଲେଖା ଅଛି—

“ନରପତି ଭୁଜଗାନାଂ ମାନ ଦର୍ପୋଦ୍ ଫଣାନାମ୍ ।
ପ୍ରତିକୃତି ଗରୁଡ଼ାଜ୍ଞାଂ ନିର୍ବିଷୀଂଚାବ କର୍ତ୍ତା ।। ”

ଗୁପ୍ତ ରାଜାମାନଙ୍କ ସଂକେତ ଗରୁଡ଼ ଥିବାରୁ ନାଗମାନଙ୍କୁ ସେ ପରାହତ କରିଥିଲେ ବୋଲି ଏପରି ଗର୍ବ କରି ଲେଖି ଅଛନ୍ତି ।

ତଥାପି ଉଭୟ ରାଜବଂଶ ମଧ୍ୟରେ ଏକତା ଓ ସହଯୋଗ ମଧ୍ୟ ରହିଥିଲା । ନାଗବଂଶୀ ରାଜାମାନେ ଅର୍ଥାତ୍ ‘ଭାରଶିବ’ ଉପାଧିଧାରୀ ଶାଖା, ଖ୍ରୀ : ୩ୟ ଶତାବ୍ଦୀ ପର୍ଯ୍ୟନ୍ତ ନିରଙ୍କୁଶଭାବେ ଶାସନ ବିସ୍ତାର କରି କାଶୀର ଦଶାଶ୍ୱମେଧ-ଘାଟରେ ମହାଯଜ୍ଞ କରିଥିଲେ । ସେମାନଙ୍କ ପ୍ରଶସ୍ତିରେ ନିମ୍ନ ପ୍ରକାରେ ଲେଖା ଅଛି :—

“ଅଂସଭାର ସନ୍ନିବେଶିତ ଶିବଲିଙ୍ଗୋଦ୍ୱହନ ଶିବ ପରିତୁଷ୍ଟ ସମୁତ୍ପାଦିତ ରାଜବଂଶାନାମ୍, ପରାକ୍ରମାଧିଗତ, ଭାଗୀରଥ୍ୟାମଳ ଜଳ ମୂର୍ଦ୍ଧାଭିଷିକ୍ତାନାଂ, ଦଶାଶ୍ୱମେଧାବଭୃଥ ସ୍ନାନାନାଂ—ଭାରଶିବାନାମ୍........” *

ଏଥିସଙ୍ଗେ ପ୍ରଦର୍ଶିତ ଚିତ୍ରରୁ ନଟରାଜ ଶିବଙ୍କର ନୃତ୍ୟକାଳୀନଭଙ୍ଗୀ କିପରି ଥିଲା ତାହା ସ୍ପଷ୍ଟ ଜଣାପଡୁଛି । ଆଉ ମଧ୍ୟ ଏ ପ୍ରତିମାର ବାମ ଭାଗରେ ଆସୀନ ଓ ଯୋଡ଼ହସ୍ତରେ ଧ୍ୟାନରତ କୌଣସି ମାନବର ପ୍ରତିକୃତି ମଧ୍ୟ ପ୍ରଦର୍ଶିତ ହୋଇଥିବା ଦେଖାଯାଏ । ପଦ୍ମାସନରେ ସମାସୀନ ଭକ୍ତର ମସ୍ତକରେ ରାଜ ପଗଡ଼ି (ମୁକୁଟ) ଚିହ୍ନ ଥିବାରୁ ସମ୍ଭବତଃ ତାହା ସ୍ୱୟଂ ରାଜା ଶତ୍ରୁଭଞ୍ଜଙ୍କ ପ୍ରତିକୃତି ହୋଇ ପାରେ ବୋଲି କଳ୍ପନା କଲେ ବୋଧହୁଏ ଅସଙ୍ଗତ ହେବନାହିଁ ।

ଏହି ପ୍ରତିମାର ଠିକ୍ ତଳ ଭାଗରେ ୧୩ ପଂକ୍ତିର ଲିପିଟି ଖୋଦିତ ହୋଇଥିବାରୁ ମୂର୍ତ୍ତି ଓ ଲିପି ଉଭୟର ଖୋଦନ କାର୍ଯ୍ୟ ଏକ ସମୟର ବୋଲି କହିବା ସୁସଙ୍ଗତ । ଓଡ଼ିଶାରେ ମୟୂରଭଞ୍ଜ ସମେତ ସମୁଦ୍ର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରୁ ପ୍ରଚୁର ସଂଖ୍ୟାରେ କୁଷାଣ ତାମ୍ର ମୁଦ୍ରା ଭୂଗର୍ଭରୁ ମିଳିଛି । ସେହି ମୁଦ୍ରାଗୁଡ଼ିକ ‘ପୁରୀ କୁଷାଣ’ ମୁଦ୍ରା ନାମରେ ଅଭିହିତ ହୁଏ । ଆମ୍ଭ ମତରେ ତାହା ଖ୍ରୀ : ୩ୟ ଠାରୁ ୪ର୍ଥ ଶତାବ୍ଦୀ ମଧ୍ୟରେ ପ୍ରସ୍ତୁତ ହୋଇଥିବ । କାରଣ ସେଥିରୁ କେତେକ ମୁଦ୍ରାରେ ‘ଟଙ୍କା’ ଏହି ଦୁଇଟି ଅକ୍ଷର ବ୍ରାହ୍ମୀ ଅକ୍ଷରରେ ଲେଖାଥିବା ଦେଖାଯାଏ । ସୁତରାଂ ଅକ୍ଷର ତତ୍ତ୍ୱ ଅନୁସାରେ ତାହା ଗୁପ୍ତ ଯୁଗର ପୂର୍ବରୁ ବା ୪ର୍ଥ ଶତାବ୍ଦୀରେ ଏ ଅଞ୍ଚଳରେ ବ୍ୟବହୃତ ହେଉଥିବା ସମ୍ଭବ ପରି ଜଣାଯାଏ । ଓଡ଼ିଶାରେ କୁଷାଣ ରାଜତ୍ୱର ଏହା ଗୋଟିଏ ମୁଖ୍ୟ ନିଦର୍ଶନ । ସେହି କୁଷାଣ ବା ‘ଦେବପୁତ୍ର’ମାନଙ୍କୁ ଯୁଦ୍ଧରେ ପରାସ୍ତ କରି ଯେଉଁ ଶତ୍ରୁଭଞ୍ଜ ଏହି ନଟରାଜ ଶିବଙ୍କ ଆରାଧନା ନିମନ୍ତେ ଗୋଟିଏ ପ୍ରାସାଦ ନିର୍ମାଣ କରିଥିଲେ, ତାହା ନିଶ୍ଚିତ ଭାବେ ଆଜକୁ ଅନ୍ୟୂନ ୧୬୦୦ ବର୍ଷ ପୂର୍ବର କୀର୍ତ୍ତି । ଏଣୁ ଖ୍ରୀଷ୍ଟପୂର୍ବ ୧ମ ଶତାବ୍ଦୀରେ କଳିଙ୍ଗର ମହାରାଜ ଖାରବେଳ ଯେପରି ଓଡ଼ିଶା ଇତିହାସରେ ସ୍ମରଣୀୟ ହୋଇଅଛନ୍ତି, ସେପରି ନାଗବଂଶୀୟ ମହାରାଜ ଶତ୍ରୁଭଞ୍ଜ ବିନ୍ଧ୍ୟାଟବୀର ଶାସନକର୍ତ୍ତା ରୂପେ ଉତ୍ତର ଓଡ଼ିଶାର ଇତିହାସରେ ଚିର ସ୍ମରଣୀୟ ହୋଇ ରହିବେ ।

ଏଠାରେ କହିବା ଆବଶ୍ୟକ ଯେ, ଓଡ଼ିଶାର ସାଂସ୍କୃତିକ ବିଭାଗୀୟ ସେକ୍ରେଟେରୀ ରୂପେ କାମ କରୁଥିଲା ବେଳେ ସ୍ୱର୍ଗୀୟ ଅନିରୁଦ୍ଧ ଦାସ, ଆଇ. ଏ. ଏସ୍., ଏହି ଶିଳାଲିପିଟି ଓଡ଼ିଶା ଷ୍ଟେଟ୍ ମ୍ୟୁଜିୟମକୁ ଆଣି ସେଥିର ଫଟୋ ଚିତ୍ର ସହ ଗୋଟିଏ ପ୍ରବନ୍ଧ ଓଡ଼ିଶା ଐତିହାସିକ ଗବେଷଣା ପତ୍ରିକାରେ ପ୍ରକାଶ କରି ଅଛନ୍ତି । କିନ୍ତୁ ଏ ସଂବନ୍ଧେ ଅଧିକ ଆଲୋଚନା ହେବା ଏବଂ କେଉଁଝରର ନାଗବଂଶୀୟ ରାଜାମାନଙ୍କ ପ୍ରତ୍ନସଂପଦ ଆବିଷ୍କୃତ ହେବା ଅତ୍ୟନ୍ତ ଆବଶ୍ୟକ ।



* Fleet, gupta Inscriptions, P. P. 236 & 245



କପିଳେଶ୍ୱର ହାଇସ୍କୁଲ ନିର୍ମାଣ ନିମନ୍ତେ ପୂର୍ତ୍ତ ଓ ନଗର-ଉନ୍ନୟନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ଶିଳାନ୍ୟାସ କରୁଛନ୍ତି ।

ଓଡ଼ିଶାର ରାଜ୍ୟପାଳଙ୍କ ଭୁବନେଶ୍ୱର କୃଷି ପ୍ରଦର୍ଶନୀ ପରିଦର୍ଶନ ।





କଟକଠାରେ ବାର୍ଷିକ ପୁଲିସ କ୍ରୀଡ଼ା ପ୍ରତିଯୋଗିତାରେ ରାଜ୍ୟପାଳ ଜଣେ କୃତୀ ପ୍ରତିଯୋଗୀଙ୍କୁ ସିଲ୍ଡ ପ୍ରଦାନ କରୁଛନ୍ତି ।

# ବେଲଘରର ଆଦିମାନବ କୁଟିଆ କନ୍ଧ

ଶ୍ରୀ କିଶୋର ଚନ୍ଦ୍ର ବେହେରା

କୁଟିଆ ସଂପ୍ରଦାୟ କେବଳ ଫୁଲବାଣୀ ଜିଲ୍ଲାରେ କାହିଁକି ସମଗ୍ର ଦେଶରେ ଅନ୍ୟତମ ଆଦିମ ଅଧିବାସୀ ରୂପେ ପରିଗଣିତ ହୋଇଥାଆନ୍ତି । କିନ୍ତୁ ଅଭାବ ଅନାଟନ ରୋଗ ଦୁଃଖର ଶୀକାର ହୋଇ ଏ ଜାତି କ୍ରମଶଃ ବିଲୁପ୍ତ ହେବାକୁ ଯାଉଛି । କେନ୍ଦ୍ରୀୟ ସହାୟତାରେ କାର୍ଯ୍ୟକାରୀ ହେଉଥିବା ଏହି କୁଟିଆ କନ୍ଧ ଉନ୍ନୟନ ଯୋଜନା ଏ ଆଦିମ ସଂପ୍ରଦାୟକୁ ସୁରକ୍ଷା କରିପାରିବ ବୋଲି ଆଶା କରାଯାଏ ।

ଧନ ସଂପଦ, କୋଠାବାଡ଼ି ଅଥବା ସଭ୍ୟ ଜଗତର ସୁଖସ୍ୱାଚ୍ଛନ୍ଦ୍ୟ ମୋହକୁ ଏ ଯୁଗରେ କିଏ ବା ଏଡ଼ାଇ ପାରିଛି ? ଗାଁଗହଳରୁ ଆରମ୍ଭକରି ସହରଯାଏଁ କି ଧନୀ କି ଗରିବ, କି ଶିକ୍ଷିତ କି ଅଶିକ୍ଷିତ—ସମସ୍ତେ ଏ ସବୁକୁ କରାୟତ କରିବାପାଇଁ ଯେପରି ବ୍ୟାକୁଳ, ସେହିପରି ଅହରହ ଉଦ୍ୟମରତ । କିନ୍ତୁ ଏ ଯୁଗରେ ବି ଏଭଳି ଲୋକ ଅଛନ୍ତି ଯେଉଁମାନେ କି ଏସବୁ ପ୍ରତି ପୁରାପୁରି ଅନାସକ୍ତ । ଧନସଂପଦ, କୋଠାବାଡ଼ିର ମୋହ ଏମାନଙ୍କୁ ପାଗଳ କରିନି କି ଏସବୁକୁ ପାଇବାପାଇଁ ସଭ୍ୟ ଜଗତର ଲୋକଙ୍କ ଭଳି ଆଦୌ ବ୍ୟାକୁଳ ନୁହନ୍ତି । ଆଧୁନିକ ସଭ୍ୟତା ତଥା ସଭ୍ୟ ଜଗତରୁ ବହୁ ଦୂରରେ ନିବିଡ଼ ଜଙ୍ଗଲ ଭିତରେ ବସବାସକରି ଆସୁଛନ୍ତି ଯୁଗଯୁଗ ଧରି । ସରଳ ନିରାଡ଼ମ୍ବର ଆକାଂକ୍ଷାଶୂନ୍ୟ ଜୀବନଯାତ୍ରା । ଏମାନେହିଁ ହେଉଛନ୍ତି—ବେଲଘରର ଆଦିମାନବ 'କୁଟିଆ କନ୍ଧ' ।

ଫୁଲବାଣୀ ଜିଲ୍ଲା ବାଲିଗୁଡ଼ା ସବଡିଭିଜନର ତୁମୁଡ଼ିବନ୍ଧ ବ୍ଲକ । ବାଲିଗୁଡ଼ା ଟାଉନଠାରୁ କୋରାପୁଟ ରାସ୍ତାରେ ଗଲାବେଳେ ଜଙ୍ଗଲ ଭିତରେ ପଡ଼େ ଛୋଟ ବସ୍ତିଟିଏ—ତୁମୁଡ଼ିବନ୍ଧ । ଏହାହିଁ ହେଉଛି ତୁମୁଡ଼ିବନ୍ଧ ବ୍ଲକର ସଦର ମହକୁମା । ବାଲିଗୁଡ଼ାଠାରୁ ଦୂରତ୍ୱ ୪୦ କିଲୋମିଟର । ଏଠାରୁ ପୂର୍ବପଟେ ଘନ ଜଙ୍ଗଲ ଭିତରେ ଅଙ୍କାବଙ୍କା ଉଚ୍ଚାନୀଚା ରାସ୍ତାରେ ବହୁ ଗଭୀର ପାର୍ବତ୍ୟ ଝରଣା ସାଙ୍ଗକୁ ଉତ୍ତୁଙ୍ଗ ପାହାଡ଼ ପର୍ବତ ଅତିକ୍ରମ କଲାପରେ ବେଲଘରଠାରେ ପହଞ୍ଚିବାକୁ ହୋଇଥାଏ । ତୁମୁଡ଼ିବନ୍ଧଠାରୁ ଦୂରତ୍ୱ ମାତ୍ର ୨୫ କିଲୋମିଟର । କିନ୍ତୁ ସେହି ନିସ୍ତବ୍ଧ ଘନ ଜଙ୍ଗଲ ଭିତରେ ପାହାଡ଼ ପର୍ବତ ଅତିକ୍ରମକରି ଯିବାବେଳେ ମନେହୁଏ—ସତେ ଯେପରି ଏ ଦୂରତ୍ୱ ଅସରନ୍ତି ଓ ଏ ଯାତ୍ରା ଏକ ନୂତନ ଜଗତକୁ । ଏ ରାସ୍ତାରେ ଜିପ୍ ବ୍ୟତୀତ ଅନ୍ୟ କୌଣସି ଯାନବାହାନ ଯିବାର ପ୍ରଶ୍ନହିଁ ନାହିଁ । ଅଭିଜ୍ଞ ଗାଡ଼ିଚାଳକ ନ ହେଲେ ଏ ରାସ୍ତାରେ ଯିବା ଯେପରି ବିପଦ, ଚାଳକ ଟିକିଏ ଅସାବଧାନ ହେଲେ ଦୁର୍ଘଟଣା ମଧ୍ୟ ସୁନିଶ୍ଚିତ ।

ଚିରସବୁଜ ବୃକ୍ଷଲତା ପରିପୂର୍ଣ୍ଣ ପର୍ବତମାଳା ଭିତରେ ଏହି ବେଲଘର । ସମୁଦ୍ର ପତନଠାରୁ ୨,୫୦୦ଫୁଟ ଉଚ୍ଚରେ । ଏହାର ପାର୍ଶ୍ୱ ଦେଇ ପ୍ରବାହିତ ହେଉଛି ଚିରସ୍ରୋତା ଉତେଇ ନଈ । ତୁମୁଡ଼ିବନ୍ଧ ବ୍ଲକର ୫ଟି ପଞ୍ଚାୟତ ବେଲଘରଥାନା ପରିସରଭୁକ୍ତ । କ୍ଷେତ୍ରଫଳ ପ୍ରାୟ ୭୪୬ ବର୍ଗ କିଲୋମିଟର । କିନ୍ତୁ ଏହାର ଶତକଡ଼ା ୮୦ଭାଗ ଅଞ୍ଚଳ ଜଙ୍ଗଲରେ ପରିପୂର୍ଣ୍ଣ । ସେହି ଜଙ୍ଗଲ-ଭିତରେ କାଁଭାଁ ବସ୍ତିଟିଏ । ଫଳରେ ବେଲଘର ଥାନାର ଲୋକସଂଖ୍ୟା ବର୍ଗ କିଲୋମିଟର ପ୍ରତି ମାତ୍ର ୧୮ । ଏ ସମସ୍ତ ଜଙ୍ଗଲ ଶାଳ, ପିଆଶାଳ, ଅସନ, ଧଉଁରା, କୁମ୍ଭି,

ଆମ୍ବ, ଜାମୁ ଆଦି ବିଭିନ୍ନ ଜାତିର ବିଶାଳ ବିଶାଳ ବୃକ୍ଷରେ ଭରପୂର । ଏସବୁ ସାଙ୍ଗକୁ ବାଉଁଶ, ସବାଇ ଘାସ, ଫୁଲଝାଡୁ ବି ପ୍ରଚୁର ପରିମାଣରେ ଏ ଅଞ୍ଚଳରେ ମିଳିଥାଏ । ବେଲଘରର ଏ ଘନ ଜଙ୍ଗଲ ହାତୀ, ବାଘ, ବଣ ମଇଁଷି, ବାରାହା, ହରିଣ, ସମ୍ବର, ବଣ କୁକୁଡ଼ା, ଠେକୁଆ, ମୟୂର, ବଣିଆ କୁକୁର ଆଦି ବହୁ ଜାତିର ବନ୍ୟ ଜୀବଜନ୍ତୁଙ୍କୁ ଆଶ୍ରୟ ଦେଇ ଆସିଛି ।

ପ୍ରକୃତିର ଏହି ମନୋରମ ପରିବେଶ ମଧ୍ୟରେ କୁଟିଆମାନଙ୍କ ଜୀବନଯାତ୍ରା ଗଢ଼ିଉଠିଛି ଯୁଗଯୁଗଧରି । ପ୍ରକୃତିର ସନ୍ତାନ ଏମାନେ–ସରଳ ନିରାଡ଼ମ୍ବର ଜୀବନ । ଆଧୁନିକ ସଭ୍ୟ ଜଗତଠୁ ବହୁ ଦୂରରେ । କିନ୍ତୁ ଏମାନଙ୍କ ମନୋବଳ, ନିର୍ଭୀକତା, ସହିଷ୍ଣୁତା ତଥା ସ୍ୱାଭିମାନ ସଭ୍ୟ ଜଗତରେ ବି ବିରଳ ।

## ସାମାଜିକ ଜୀବନ

କୁଟିଆମାନେ ନିଜକୁ କୁଇଙ୍ଗାରୂପେ ପରିଚୟ ଦେଇଥାନ୍ତି । କୁଇଙ୍ଗା ଅର୍ଥ ଶୀର୍ଷ ବା ଉଚ୍ଚ, ଅର୍ଥାତ୍ ଏମାନେ ନିଜ ସଂପ୍ରଦାୟକୁ ଅନ୍ୟମାନଙ୍କ ତୁଳନାରେ ଶୀର୍ଷସ୍ଥାନ ଦେଇଥାନ୍ତି । ଫୁଲବାଣୀ ଜିଲ୍ଲାର ଅନ୍ୟାନ୍ୟ କନ୍ଧ ସଂପ୍ରଦାୟଙ୍କ ପରି କୁଟିଆମାନଙ୍କ ମାତୃଭାଷା 'କୁଇ' ହେଲେ ବି ଏମାନଙ୍କ ଭାଷାରେ କେତେକ ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ । କୁଟିଆ ରମଣୀମାନେ ମୁହଁରେ ଚିତା କାଟନ୍ତି । ଏମାନେ କିନ୍ତୁ ଅଳଙ୍କାର ପ୍ରିୟ । ଆଲମ୍ୟୁନିୟମ, କଂସା, ପିତଳ ତିଆରି ହାତ, କାନ, ନାକ ଓ ବେକର ଅଳଙ୍କାର ସାଙ୍ଗକୁ ରଙ୍ଗବେରଙ୍ଗର ବିଭିନ୍ନ କାଚମାଳି କୁଟିଆ ରମଣୀର ଶୋଭାବର୍ଦ୍ଧନ କରିଥାଏ । କାହାରି କାହାରି ନାକ ଓ କାନରେ ସୁନା ଅଳଙ୍କାର ବି ଦେଖିବାକୁ ମିଳେ । ପୁରୁଷ ଲୋକଙ୍କ ପରିଧାନ ଛୋଟ କଲପୁନି । ସ୍ତ୍ରୀ ଲୋକଙ୍କ ପରିଧାନ ଛୋଟ ଗାମୁଛାଟିଏ ଅଣ୍ଟାରେ ଗୁଡ଼ିଆ ହୋଇଥାଏ ।

କୁଟିଆ ପରିବାର କହିଲେ ସ୍ୱାମୀ,ସ୍ତ୍ରୀ ଏବଂ ଅବିବାହିତ ପୁଅଝିଅ । ପରିବାରର ଲୋକସଂଖ୍ୟା ହାରାହାରି ୪ରୁ ୫ । ଝିଅ ବିବାହ ପରେ ସ୍ୱାମୀ ଘରକୁ ଚାଲିଯାଏ । ପୁଅ ବିବାହ ପରେ ବାପଠାରୁ ପୃଥକ୍ ହୋଇ ନିଜର ଅଲଗା ଘର ସଂସାର ଆରମ୍ଭ କରେ । ସ୍ୱାମୀ ସ୍ତ୍ରୀ ଉଭୟେ କଠୋର ପରିଶ୍ରମ କରି ପରିବାର ଚଳାନ୍ତି । ସାଧାରଣତଃ ସ୍ତ୍ରୀମାନେ ଧାନକୁଟା, ଚଷାବଢ଼ା ସାଙ୍ଗକୁ ସପ, ଝଟେଇ, ଫୁଲଝାଡୁ, ପତ୍ରରେ ଖଲି ଦଉଣୀ (plates and cups ) ଆଦି ତିଆରି କରନ୍ତି । ଭାତ ଯଦିଓ ଏମାନଙ୍କ ପ୍ରଧାନ ଖାଦ୍ୟ, ତଥାପି ମାଣ୍ଡିଆ ଜାଉ ଏମାନଙ୍କର ଅତି ପ୍ରିୟ । ଜମିରୁ ଧାନଫସଲ ଯାହା କିଛି ପାଆନ୍ତି, ବର୍ଷର ୩ ।୪ ମାସ କୌଣସି ମତେ ଚଳିଯାଏ । ଅବଶିଷ୍ଟ ୮ ।୯ ମାସ ଆମ୍ବ, ପଣସ, ତିମିରି, ମହୁଲ ଓ ବଣର ଅନ୍ୟାନ୍ୟ ଫଳମୂଳ ଉପରେ ନିର୍ଭରକରି ଗୁଜୁରାଣ ମେଣ୍ଟାନ୍ତି । ଏମାନେ ମଧ୍ୟ ଅତ୍ୟଧିକ ମାଂସପ୍ରିୟ । ଗୋରୁଗାଈ, ପୋଢ଼, ଘୁଷୁରୀ ସମେତ ବଣର ସବୁ ଜାତିର ପଶୁପକ୍ଷୀଙ୍କ ମାଂସ ଖାଇଥାନ୍ତି । ଏପରିକି ଅଜଗର ସାପର ମାଂସ ମଧ୍ୟ ଖାଇବାକୁ ଘୃଣା ପ୍ରକାଶ କରନ୍ତି ନାହିଁ । କୁଟିଆମାନଙ୍କ ସବୁଠୁ ବଳି ପ୍ରିୟ ହେଲା--ମହୁଲ ଓ ସଲପ ମଦ । ଏମାନେ ନିଜ ନିଜ ଘରେ ମହୁଲରୁ ମଦ ତିଆରି କରନ୍ତି । ଯେ କୌଣସି ସାମାଜିକ ପର୍ବ-ପର୍ବାଣୀ ଓ ଜାନିଯାତ୍ରାରେ ମୁଖ୍ୟ ହେଲା–ମଦ । ଏଭଳି ଉତ୍ସବ ଦିନମାନଙ୍କରେ କୁଟିଆମାନେ କାମଧନ୍ଦା ଭୁଲି ଆବାଳବୃଦ୍ଧବନିତା ଏକତ୍ରିତ ହୋଇ ମଦନିଶାରେ ବିଭୋରହୋଇ ନାଚଗୀତ ଆନନ୍ଦଉଲ୍ଲାସରେ ସମୟ ଅତିବାହିତ କରନ୍ତି ।

## ଧର୍ମ ବିଶ୍ୱାସ

ପ୍ରତ୍ୟେକ କୁଟିଆ କନ୍ଧ ତାର ସାମାଜିକ ପରମ୍ପରା, ରୀତିନୀତିକୁ ନେଇ ଗର୍ବ ଅନୁଭବ କରେ ଏବଂ ସେସବୁକୁ ଯଥାରୀତି ନିଷ୍ଠାରସହ ପାଳନକରେ । ଏହାଛଡ଼ା ଏମାନେ ବିଭିନ୍ନ ଦେବାଦେବୀଙ୍କୁ ବି ପୂଜା ଅର୍ଚ୍ଚନା କରନ୍ତି । ଏହି ଦେବାଦେବୀଙ୍କ ମଧ୍ୟରେ 'ତାନାପେନୁ' (ମାଟି ଦେବତୀ) ହେଉଛି ମୁଖ୍ୟ ଦେବୀ । କୁଟିଆମାନଙ୍କ ଦୃଢ଼ ବିଶ୍ୱାସ ଯେ ତାନାପେନୁକୁ ସନ୍ତୁଷ୍ଟ କରିପାରିଲେ ଦୈନନ୍ଦିନ ଜୀବନରେ ଯାବତୀୟ ଆପଦବିପଦ, ରୋଗଦୁଃଖ ଆପେ ଆପେ ହଟିଯିବ । ଭଲ ବର୍ଷା ହେବ, ଭଲ ଫସଲ ହେବ, ହାତୀ ବାଘ ଉପଦ୍ରବ ଦେଖା ଦେବ ନାହିଁ କିମ୍ବା ବସନ୍ତ, ଜ୍ୱର ଆଦି ରୋଗର ପ୍ରକୋପ ପଡ଼ିବ ନାହିଁ । ଏ ଅଞ୍ଚଳରେ ପ୍ରତିବର୍ଷ ବହୁସଂଖ୍ୟକ ଗୋରୁଗାଈ, ଛେଳିମେଣ୍ଢା ଏପରି କି ମଣିଷ ମଧ୍ୟ ବାଘର ଶୀକାର ହୋଇଥାନ୍ତି । ବାଘ ଉପଦ୍ରବ ସାଙ୍ଗକୁ ବଣୁଆ ହାତୀପଲ କୁଟିଆମାନଙ୍କ ଧାନଫସଲର ପ୍ରତିବର୍ଷ କ୍ଷତି ଘଟାଇଥାନ୍ତି । ବାଘ ଓ ହାତୀମାନଙ୍କ ଏଭଳି ଉପଦ୍ରବରୁ ରକ୍ଷା ପାଇବା ପାଇଁ କୁଟିଆମାନେ ତାନାପେନୁକୁ ପ୍ରତିବର୍ଷ ପୂଜାଅର୍ଚ୍ଚନା କରିଥାନ୍ତି । ପୂର୍ବେ ଏହି ମାଟିଦେବୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ମଣିଷ ବଳି ଦେଉଥିଲେ । ଏହାହିଁ ମେରିଆ ପ୍ରଥା ନାମରେ ପରିଚିତ । ଏହି ଜଘନ୍ୟ ପ୍ରଥା ଫୁଲବାଣୀ ଜିଲ୍ଲାର କନ୍ଧମାଳ ସବ୍‌ଡିଭିଜନର କନ୍ଧ ସମ୍ପ୍ରଦାୟଙ୍କ ମଧ୍ୟରେ ବି ପ୍ରଚଳିତ ଥିଲା । ବ୍ରିଟିଶ ଶାସନ ଅମଳରେ ମଣିଷ ବଳି ପ୍ରଥାକୁ ସମ୍ପୂର୍ଣ୍ଣରୂପେ ଲୋପ କରାଗଲା । ମଣିଷ ବଳି ପରିବର୍ତ୍ତେ ମାଟିଦେବୀଙ୍କୁ ପୋଢ଼, ଘୁଷୁରୀ, ଛେଳି ଇତ୍ୟାଦି ବଳି ଦିଆଯାଉଛି । ଏ ପ୍ରଥା ଉଭୟ କନ୍ଧମାଳର କନ୍ଧ ଏବଂ ବେଲଘରର କୁଟିଆମାନଙ୍କ ମଧ୍ୟରେ ଏ ପର୍ଯ୍ୟନ୍ତ ପ୍ରଚଳିତ ଅଛି ।

ଦ୍ୱିତୀୟରେ କୁଟିଆମାନଙ୍କ ଭୂତପ୍ରେତଙ୍କ ଉପରେ ଗଭୀର ବିଶ୍ୱାସ ରହିଛି । ସେମାନଙ୍କର ବିଶ୍ୱାସ, ପରିବାରର ପୂର୍ବପୁରୁଷଙ୍କ ପ୍ରେତାତ୍ମାଗଣ ପରିବାର ଲୋକଙ୍କ କାର୍ଯ୍ୟ-କଳାପ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥାନ୍ତି । ଏମାନଙ୍କୁ ବିଭିନ୍ନ ସମୟରେ ଭୋଗରାଗ ଅର୍ପଣ କରି ସନ୍ତୁଷ୍ଟ ନ କଲେ ପରିବାରର ଅନିଷ୍ଟ ଘଟିବା ସୁନିଶ୍ଚିତ । ତେଣୁ ବିଭିନ୍ନ

ସାମାଜିକ ପର୍ବପର୍ବାଣୀ ଓ ଯାନିଯାତ୍ରାବେଳେ ଅନ୍ୟାନ୍ୟ ଦେବାଦେବୀଙ୍କ ସାଙ୍ଗକୁ ଏହି ପ୍ରେତାତ୍ମାଙ୍କ ସନ୍ତୋଷ ବିଧାନ ନିମନ୍ତେ ଭୋଗରାଗ ଓ ମଦଆଦି ଅର୍ପଣ କରି-ଥାନ୍ତି । ଏଭଳି ଯାନିଯାତ୍ରାବେଳେ ଆଖପାଖ ଗାଁର ସମସ୍ତେ ଏକାଠି ହୋଇ ମଦ, ମାଂସ, ଭୋଜିଭାତ, ନାଚଗୀତରେ ଦିନ ପରେ ଦିନ କଟାଇ ଦିଅନ୍ତି । ଏମାନଙ୍କର ଅତୀତ ପ୍ରତି ଶୋଚନା ନ ଥାଏ କି ଭବିଷ୍ୟତ ପ୍ରତି ଭ୍ରୂକ୍ଷେପ ନାହିଁ । ଏମାନେ ହେଲେ ବର୍ତ୍ତମାନ–ସର୍ବସ୍ୱ ।

"The past is beyond recovery
those days are gone,
The Future, you are not sure of
The given moment is Now"

ଏହାହିଁ ହେଉଛି କୁଟିଆମାନଙ୍କର ଜୀବନ ଦର୍ଶନ ।

## କୁଟିଆ କନ୍ଧ ଉନ୍ନୟନ ସଂସ୍ଥା

କୁଟିଆମାନେ ଯେପରି ନିଷ୍କପଟ ସେପରି ସରଳ ବିଶ୍ୱାସୀ । କିନ୍ତୁ ଏହି ସରଳତାହିଁ ଆଜି ସେମାନଙ୍କ ଦୁଃଖ ଦୁର୍ଦ୍ଦଶା, ଅଭାବ ଅନାଟନର ମୂଳ କାରଣ । ବାହାର ଅଞ୍ଚଳର ଲାଭଖୋର ବ୍ୟବସାୟୀ କୁଟିଆମାନଙ୍କ ସରଳତାର ସୁଯୋଗ ନେଇ ବିଭିନ୍ନ ଉପାୟରେ ସେମାନଙ୍କୁ ବର୍ଷ ବର୍ଷ ଧରି ଶୋଷଣ କରି ଆସୁଛନ୍ତି । କୁଟିଆମାନେ ସାଧାରଣତଃ ସାମାଜିକ ପର୍ବପର୍ବାଣୀ, ବିବାହ ଓ ଶୁଦ୍ଧି କାର୍ଯ୍ୟରେ ମଦ, ମାଂସ, ଭୋଜିଭାତରେ ଖର୍ଚ୍ଚାନ୍ତ ହୋଇ ଅଭାବ ଅନାଟନରେ ପଡ଼ି ବ୍ୟବସାୟୀ କିମ୍ବା ଦଲାଲମାନଙ୍କ ଦ୍ୱାରସ୍ଥ ହୁଅନ୍ତି କରଜ ପାଇଁ । ଅନ୍ୟ ପକ୍ଷରେ ବ୍ୟବସାୟୀ ମଧ୍ୟ ଏଭଳି ସୁଯୋଗକୁ ଅପେକ୍ଷା କରିଥାଏ । କୁଟିଆକୁ ଅଳ୍ପ କିଛି ଟଙ୍କା ଋଣ ଦେଇ ତାର ଆଗାମୀ ବର୍ଷର ଧାନ, ମାଣ୍ଡିଆ, ବିରି ଇତ୍ୟାଦି ଫସଲ ଆଗତୁରା କିଣିନିଏ । ତେଣୁ ଫସଲ ଅମଳ ହେବାପରେ ପରେ ସମୁଦାୟ ଆମଦାନୀ ଗ୍ଭଲିଯାଏ ବ୍ୟବସାୟୀ ପାଖକୁ ସୁଧ ମୂଳ ବାବଦକୁ । କିନ୍ତୁ ଏହା ସତ୍ତ୍ୱେ ସମୁଦାୟ କରଜ ଟଙ୍କା ପରିଶୋଧ ହୋଇ ପାରେନା । ବ୍ୟବସାୟୀର ମାୟା ଜାଲରୁ ସରଳ ବିଶ୍ୱାସୀ କୁଟିଆ କେବେ ଖସିପାରେନା । କରଜ ଟଙ୍କା ଚକ୍ରବୃଦ୍ଧି ହାରରେ ଉତ୍ତରୋତ୍ତର ବଢ଼ିଗ୍ଭଲେ । ଫଳରେ କୁଟିଆ ପରିବାର ପୁରୁଷାନୁକ୍ରମେ ପିତା, ପରିତାଙ୍କ ଋଣ ପରିଶୋଧ କରୁଥାଏ । ଅଭାବ ଅନାଟନରେ ବି କୁଟିଆ ସତ୍ୟଭ୍ରଷ୍ଟ ହୁଏନା । ଥରେ ଯାହା ସେ ଜବାବ ଦିଏ ତାହା ପାଳନ କରେ । ଏହାହିଁ କୁଟିଆମାନଙ୍କ ଚାରିତ୍ରିକ ବୈଶିଷ୍ଟ୍ୟ ।

## ଅର୍ଥନୈତିକ ପରିସ୍ଥିତ

ନିକଟରେ ହୋଇଥିବା ଏକ ସର୍ଭେରୁ ଜଣାପଡ଼ିଛି ଯେ କୁଟିଆ ପରିବାରର ହାରାହାରି ବାର୍ଷିକ ଆୟ ଟ ୩୬୮ ଙ୍କା ଓ ବ୍ୟୟ ଟ ୪୫୦ ଙ୍କା । ମୁଣ୍ଡପିଛା ଆୟ ପ୍ରାୟ ଟ୮୨ଙ୍କା । ଏହି ଆୟର ଶତକଡ଼ା ୫୩ ଭାଗ କୃଷିରୁ । ୨୫ ଭାଗ ଜଙ୍ଗଲଜାତ ସାମଗ୍ରୀରୁ ଓ ଅବଶିଷ୍ଟ ୨୨ ଭାଗ ଗୃହପାଳିତ ପଶୁପକ୍ଷୀରୁ ହୋଇଥାଏ । ଏପର୍ଯ୍ୟନ୍ତ କୌଣସି କୁଟିଆ ସରକାରୀ ଅଥବା ବେସରକାରୀ ସଂସ୍ଥାରେ ନିଯୁକ୍ତି ପାଇନାହିଁ । ଏମାନଙ୍କ ମଧ୍ୟରେ ସାକ୍ଷର ସଂଖ୍ୟା ଶତକଡ଼ା ମାତ୍ର ୨ଭାଗ । କିଛି ବର୍ଷ ପୂର୍ବେ କୁଟିଆ ପିଲାମାନେ ସ୍କୁଲ କଥା ଶୁଣିଲା ମାତ୍ରେ ବଣ ଜଙ୍ଗଲରେ ଲୁଚୁଥିଲେ । ଏପରିକି ଅନେକ ପିଲା ସ୍କୁଲ ଭୟରେ ଆତ୍ମହତ୍ୟା କରିଥିବାର ବି ଦୃଷ୍ଟାନ୍ତ ରହିଛି । ବର୍ତ୍ତମାନ ଏ ପରିସ୍ଥିତିରେ ଉନ୍ନତି ଦେଖାଦେଲାଣି । ଗ୍ରାମ ମଙ୍ଗଳ ବିଭାଗଦ୍ୱାରା ବେଲଘରଠାରେ ଖୋଲାଯାଇଥିବା ହାଇସ୍କୁଲରେ ବହୁ କୁଟିଆ ପୁଅ ଝିଅ ଅଧ୍ୟୟନ କରୁଛନ୍ତି ।



## ବିକାଶ କାର୍ଯ୍ୟକ୍ରମ

ଏହି ଆଦିମାନବ କୁଟିଆମାନଙ୍କ ଚିରାଚରିତ ପରଂପରା ଓ ସଂସ୍କୃତିରେ ଆଞ୍ଚ ନ ଆଣି ସେମାନଙ୍କ ସାମାଜିକ ତଥା ଅର୍ଥନୈତିକ ବିକାଶ ନିମନ୍ତେ କୁଟିଆ କନ୍ଧ ଉନ୍ନୟନ ସଂସ୍ଥା ନାମକ ଏକ ସ୍ୱତନ୍ତ୍ର କାର୍ଯ୍ୟକ୍ରମ କେନ୍ଦ୍ରୀୟ ସହାୟତାରେ ୧୯୭୮-୭୯ ମସିହାରୁ ବେଲଘର ଓ ଗୁମା ଗ୍ରାମପଞ୍ଚାୟତରେ କାର୍ଯ୍ୟକାରୀ କରାଯାଉଛି । ଏହାଦ୍ୱାରା ଏହି ପଞ୍ଚାୟତ ଦ୍ୱୟର ୬୪ଟି ଗ୍ରାମରେ ବସବାସ କରୁଥିବା ପ୍ରାୟ ୩,୧୬୯ କୁଟିଆ ଅଧିବାସୀ ଉପକୃତ ହୋଇ ପାରିବେ । ଏହି କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରି ନିର୍ଦ୍ଧାରିତ ସମୟ ସୀମା–୫ ବର୍ଷ ମଧ୍ୟରେ ସଂପୂର୍ଣ୍ଣ କରିବା ପାଇଁ ଫୁଲବାଣୀ ଜିଲାପାଳଙ୍କ ଅଧ୍ୟକ୍ଷତାରେ ଏକ ୯–ଜଣିଆ ପରିଚ୍ଳନା ସଂସ୍ଥା ଗଠିତ ହୋଇଛି । ଏହି କାର୍ଯ୍ୟକ୍ରମର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଜଣେ ସ୍ୱତନ୍ତ୍ର ଅଫିସରଙ୍କୁ ବେଲଘର-ଠାରେ ଅବସ୍ଥାପିତ କରାଯାଇଛି ।

ଏହି ଯୋଜନାର ମୂଳ ଲକ୍ଷ୍ୟ ହେଲା :

(୧) ଭୂମିହୀନ ପ୍ରତ୍ୟେକ ଜୁଟିଆ ପରିବାରକୁ ୨ ଏକର ଆବାଦ ଯୋଗ୍ୟ ଜମି ସାଙ୍ଗକୁ ହଳ, ଲଙ୍ଗଳ, କୃଷି ଉପକରଣ, ସାର ଇତ୍ୟାଦି ଯୋଗାଇ ଦେଇ ସେମାନଙ୍କୁ କୃଷି କାର୍ଯ୍ୟରେ ଥଇଥାନ କରିବା । ଏହା ଫଳରେ ପୋଡୁଚାଷରୁ ସେମାନଙ୍କୁ ନିବର୍ତ୍ତାଯାଇ ପାରିବ ଓ ମୂଲ୍ୟବାନ ଜଙ୍ଗଲ ସଂପଦର ସୁରକ୍ଷା କରା ଯାଇପାରିବ ।

(୨) ଜୁଟିଆମାନଙ୍କୁ କୁକୁଡ଼ା, ଛେଳି, ମେଣ୍ଢା, ଘୁଷୁରି ଆଦି ଯୋଗାଇ ଦେଇ ଲାଭଜନକ ଧନ୍ଦାରେ ଲଗି କରାଯିବ ।

(୩) ବେଲଘର ଅଞ୍ଚଳ ମହୁ, ଟସର, ଫଳ ଇତ୍ୟାଦି ଚାଷ ପାଇଁ ବିଶେଷ ଅନୁକୂଳ ହୋଇଥିବାରୁ ଜୁଟିଆମାନଙ୍କୁ ଏ ଦିଗରେ ଉତ୍ସାହିତ କରାଯିବ ।

(୪) ଜୁଟିଆ ଅଞ୍ଚଳରେ ସ୍ୱାସ୍ଥ୍ୟ ଓ ଚିକିତ୍ସା କାର୍ଯ୍ୟକ୍ରମର ବ୍ୟାପକ ପ୍ରସାର କରାଯିବ ।

(୫) ଶିକ୍ଷାର ପ୍ରସାର ।

(୬) ସମବାୟ ସଙ୍ଗଠନର ପ୍ରସାର ଘଟାଇ ଜୁଟିଆମାନଙ୍କୁ ଋଣଭାରରୁ ଏବଂ ସୁଧଖୋର ବ୍ୟବସାୟୀଙ୍କ ଶୋଷଣରୁ ମୁକ୍ତ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ ସୁଲଭ ମୂଲ୍ୟରେ ଯୋଗାଇ ଦିଆଯିବ ।

(୭) ଜୁଟିଆମାନଙ୍କୁ କୃଷି, ଫଳଚାଷ, ପଶୁପାଳନ, କ୍ଷୁଦ୍ର ଶିଳ୍ପ ଇତ୍ୟାଦି ଧନ୍ଦାରେ ତାଲିମ ଦେଇ ସେମାନଙ୍କୁ ଉତ୍ସାହିତ କରାଯିବ ।

(୮) ବେଲଘର ଅଞ୍ଚଳରେ ରାସ୍ତାଘାଟର ଉନ୍ନତି ଘଟାଇ ଯାତାୟତ ସୁବିଧାର ପ୍ରସାର କରାଯିବ ।

(୯) ମଦ୍ୟପାନ ଜନିତ କୁଅଭ୍ୟାସରୁ ସେମାନଙ୍କୁ ନିବର୍ତ୍ତାଇବା ନିମନ୍ତେ ଉଦ୍ୟମ କରାଯିବ ।

ଏହି କାର୍ଯ୍ୟକ୍ରମର ସଫଳ ରୂପାୟନ ନିମନ୍ତେ ନିମ୍ନମତେ ସର୍ବମୋଟ ୭୮ ଲକ୍ଷ ଟଙ୍କାର ବ୍ୟୟବରାଦ ରହିଛି :

| | | | |
|---|---|---|---|
| ୧ । | ଫଳ ଚାଷ, ମୃତ୍ତିକା ସଂରକ୍ଷଣ, ପଶୁପାଳନ ତଥା ଅନ୍ୟାନ୍ୟ ଆନୁସଙ୍ଗିକ କାର୍ଯ୍ୟକ୍ରମ ସମେତ କୃଷିର ବିକାଶ: | ୩୦ | ଲକ୍ଷ |
| ୨ । | ଜଳସେଚନ କାର୍ଯ୍ୟକ୍ରମ .. | ୫ | ଲକ୍ଷ |
| ୩ । | ଶିକ୍ଷାର ପ୍ରସାର .. | ୧୦ | ଲକ୍ଷ |
| ୪ । | ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମ .. | ୭·୬୬ | ଲକ୍ଷ |
| ୫ । | ସମବାୟ .. | ୫ | ଲକ୍ଷ |
| ୬ । | ରାସ୍ତାଘାଟର ପ୍ରସାର .. | ୧୦ | ଲକ୍ଷ |
| ୭ । | କୁଟୀର ଶିଳ୍ପର ପ୍ରସାର .. | ୨ | ଲକ୍ଷ |
| ୮ । | କର୍ମଚାରୀଙ୍କ ଦରମା .. | ୭ | ଲକ୍ଷ |
| ୯ । | କୋଠାବାଡ଼ି ଓ ବାସଗୃହ .. | ୧ | ଲକ୍ଷ |

ଜୁଟିଆ ସଂପ୍ରଦାୟ କେବଳ ଫୁଲବାଣୀ ଜିଲାରେ କାହିଁକି ସମଗ୍ର ଦେଶରେ ଅନ୍ୟତମ ଆଦିମ ଅଧିବାସୀ ରୂପେ ପରିଗଣିତ ହୋଇଥାନ୍ତି । କିନ୍ତୁ ଅଭାବ ଅନାଟନ ରୋଗ ଦୁଃଖର ଶୀକାର ହୋଇ ଏ ଜାତି କ୍ରମଶଃ ବିଲୁପ୍ତ ହେବାକୁ ଯାଉଛି । କେନ୍ଦ୍ରୀୟ ସହାୟତାରେ କାର୍ଯ୍ୟକାରୀ ହେଉଥିବା ଏହି ଜୁଟିଆ ଉନ୍ନୟନ କାର୍ଯ୍ୟକ୍ରମ ଜରିଆରେ ଏହି ଆଦିମ ସଂପ୍ରଦାୟର ସୁରକ୍ଷା ହୋଇ ପାରିବ ବୋଲି ଆଶା କରାଯାଏ ।

ସୌଜନ୍ୟ: ସୂଚନା ଓ ଲୋକସମ୍ପର୍କ ଜିଲା ଅଧିକାରୀ, ଫୁଲବାଣୀ



## ପୁରୀଠାରେ କୁଷ୍ଠରୋଗୀଙ୍କ ପାଇଁ ଚିକିତ୍ସା ୱାର୍ଡ ଉଦ୍‌ଘାଟନ

ପୁରୀ ସଂକ୍ରାମକ ରୋଗ ଡାକ୍ତରଖାନାରେ କୁଷ୍ଠ ରୋଗୀଙ୍କ ଚିକିତ୍ସା ପାଇଁ ଏକ ୱାର୍ଡ ଗତ ଡିସେମ୍ବର ୧୪ ତାରିଖ ଦିନ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ହରିହର କରଣ ଉଦ୍‌ଘାଟନ କରିଛନ୍ତି । ୧ ଲକ୍ଷ ୭୫ ହଜାର ଟଙ୍କା ବ୍ୟୟରେ ନିର୍ମିତ ଏହି ୱାର୍ଡରେ ୨୦ ଟି ଶଯ୍ୟା ଯୋଗାଇ ଦିଆଯାଇଛି । ସଂପ୍ରତି ଏକ ଚିକିତ୍ସା ୱାର୍ଡ କାଳେଶ୍ୱରଠାରେ ମଧ୍ୟ ପ୍ରତିଷ୍ଠା କରାଯାଇଛି ଏବଂ ଷଷ୍ଠ ଯୋଜନା କାଳରେ ଅନୁରୂପ ଚିକିତ୍ସା ବ୍ୟବସ୍ଥା ବଲାଙ୍ଗୀର, କଟକ, ଢେଙ୍କାନାଳ, ନବରଙ୍ଗପୁର, ସମ୍ବଲପୁର ଓ ପାରଳା-ଖେମୁଣ୍ଡିଠାରେ କରାଯିବାକୁ ଧାର୍ଯ୍ୟ ହୋଇଛି ବୋଲି ସ୍ୱାସ୍ଥ୍ୟ ରାଷ୍ଟ୍ରମନ୍ତ୍ରୀ ପ୍ରକାଶ କରିଥିଲେ ।

# ପୁଷ୍ପୁନି ବା ଛେରଛେରା ପର୍ବ

ଶ୍ରୀ ଗୋପାଳଗୋବିନ୍ଦ ବକ୍ଶୀ

> ପୌଷ ପୂର୍ଣ୍ଣିମାରେ କୃଷକର ଘର ହସୁଥାଏ । ଲକ୍ଷ୍ମୀ ଆସି ଭଣ୍ଡାରରେ ଝିଲି ଝିଲି ହସୁଥାନ୍ତି । ଏହି ହସର ସ୍ରୋତରେ ସମସ୍ତ କୃଷି ପରିବାର ଅବଗାହନ କରନ୍ତି । ବର୍ଷକର କ୍ଳାନ୍ତି ଅପନୋଦ ପରେ ସେ ଅଫୁରନ୍ତ ଆନନ୍ଦରେ ମାତି ଏହି ପର୍ବ ପାଳନ କରେ ।

ଭାଦ୍ରବ ମାସରେ ପାଳିତ ହେଉଥିବା 'ନବାନ୍ନ ଭକ୍ଷଣ' ବା ନୂଆଖାଇ ପର୍ବ ସଦୃଶ ପୌଷ ପୂର୍ଣ୍ଣିମା ଦିନ ପଶ୍ଚିମ ଓଡ଼ିଶାରେ ଅନ୍ୟ ଏକ ମୁଖ୍ୟପର୍ବ ପାଳିତ ହୁଏ, ତାହା ପୁଷ୍ପୁନି ପର୍ବ ବା ଛେରଛେରା ପର୍ବ । ଏହି ପର୍ବଦ୍ୱୟ ପଶ୍ଚିମ ଓଡ଼ିଶାର ମୁଖ୍ୟପର୍ବ ଓ ଜାତିନୀତି ନିର୍ବିଶେଷରେ ବିଶେଷ ଆଦୃତଲାଭ କରିଅଛି । ଅନ୍ୟାନ୍ୟ ଗୌଣପର୍ବ ଯଥା କାଦୋଯାତ୍ରା, ସେମି ଯାତ୍ରା ଓ ମହୁଲ୍ ନୂଆ ଆଦି ସାଧାରଣ ଆଦିବାସୀ ସମାଜ ମଧ୍ୟରେ ସୀମାବଦ୍ଧ । ଏହି ପର୍ବ ସମୂହ ମଧ୍ୟ ଏକ ଏକ ସାମୂହିକ ପର୍ବ ଓ ଏଥିରେ ଗାଁର ଗଣ୍ଡା (ଚୌକିଦାର), ଝାଙ୍କର (ଧରଣି ପୂଜାରୀ), ଗୌନ୍ତିଆ, ନରିଆ (ସରକାରୀ ଅମଲଙ୍କ ହାଲ୍ ବୁଝିବା ନିମନ୍ତେ ନିଯୁକ୍ତ ବ୍ୟକ୍ତି), ଦିଆରି (କାଳିସୀ) ଓ ଅନ୍ୟାନ୍ୟ ଦେବୀ ପୂଜକ ତଥା ମୁଖ୍ୟ ସ୍ଥାନୀୟ ବ୍ୟକ୍ତି ବିଶେଷ ଅଂଶ ଗ୍ରହଣ କରିଥାନ୍ତି ।

ଏଠାରେ ପ୍ରସଙ୍ଗକ୍ରମେ ଗୋଟିଏ ବିଷୟ ଉତ୍‌ଥାପନ କରାଯାଇପାରେ ଯେ, ଓଡ଼ିଆ ଗୀତ କବିତାରେ ଯେପରି ବହୁ ବାରମାସୀ ଗୀତର ପ୍ରଚଳନ ରହିଛି, ସେହିପରି ପଶ୍ଚିମ ଓଡ଼ିଶାର ଲୋକଗୀତ ଗୁଡ଼ିକରେ ଅନେକ ବାରମାସୀ ଗୀତ ପରିଲକ୍ଷିତ ହୁଏ । ଆସାମୀ ସାହିତ୍ୟର ବାରମାହୀ ସଦୃଶ ଏହି ସମସ୍ତ ମାସର ବର୍ଣ୍ଣନା 'ମାର୍ଗଶୀର' ମାସରୁ ଆରମ୍ଭ ହୋଇଥାଏ ଓ ସମସ୍ତ ମାସ ତୁଳନାରେ ପୌଷର ମହିମା ବେଶି ରହିଥାଏ । ଏହି କ୍ରମରେ ପୁଷ୍ପୁନି ଓ ଛେରଛେରା ପର୍ବ ସମ୍ବନ୍ଧରେ ବହୁ ଚିତ୍ର ପଦର ହୋଇଥାଏ ।

ଲୋକଗୀତଗୁଡ଼ିକ ପ୍ରଧାନତଃ କୃଷକ ସଂପ୍ରଦାୟ, ଶ୍ରମଜୀବୀ ଓ ସାଧାରଣ ସ୍ତରର ଲୋକ ସମାଜକୁ ଆଶ୍ରୟକରି ବିକାଶ ଲାଭ କରିଥାଏ । ଏଣୁ ଏହି ଶ୍ରେଣୀୟ ଜନଜୀବନ ସହିତ ଏଗୁଡ଼ିକ ପ୍ରାୟ ଓତଃପ୍ରୋତଃ ଭାବେ ଜଡ଼ିତ । କୃଷୀ ବର୍ଷକର ଶ୍ରମ ଅମଳ କରେ ପୌଷ ମାସର ଶେଷ ଭାଗକୁ । ପୌଷ ପୂର୍ଣ୍ଣିମା ଆଡ଼କୁ ସେ କ୍ଷେତରେ "ଶୈରୋଦିଏ (ମୋଟିମାତା ବା ସେହି ଜମିର ଦେବତାଙ୍କୁ ପୂଜାବଳୀ ଦିଏ) ଓ ଖଳା ଛାଡ଼େ । ଏହି ଦିବସରେ ଦୀର୍ଘ ଏକବର୍ଷ ଧରି ମୁଣ୍ଡଝାଳ ତୁଣ୍ଡରେ ମାରି ଶ୍ରମ ଦାନକରି ଆସୁଥିବା "ହଳିଆ" ମାନେ ଅପୂର୍ବ ମୁକ୍ତି ଆନନ୍ଦରେ ବିଭୋର ହୁଅନ୍ତି । ଗୋଟିଏ ସାହୁକାର ନିକଟରେ କାମ କରିବା ମିଆଦ ତାଙ୍କର ପୂର୍ଣ୍ଣ ହୋଇଯାଏ, ସେମାନେ ପୁଣି କିଛିଦିନ ସ୍ୱାଧୀନ ଭାବରେ ବିଚରଣ କରି ନୂତନ ଭାବରେ କର୍ମ ନିଯୁକ୍ତି ପାଆନ୍ତି । ଏହି ଦୃଷ୍ଟିରୁ ଏହି ମାସ କୃଷି ସମ୍ବତ୍ସରର ଅନ୍ତିମ ମାସ ଓ ଏହି ପୂର୍ଣ୍ଣିମାରେ ପାଳିତ ହେଉଥିବା ପର୍ବ ଏକ ଶସ୍ୟ ସଂରକ୍ଷଣ ପର୍ବ ତଥା ମୁକ୍ତି ପର୍ବ । ମାର୍ଗଶୀର ପରେ ପୌଷମାସ ଓ ଏହି ମାସର ଅନ୍ତିମ ଏହି ଖଣ୍ଡ ମଣ୍ଡଳର ଜନସମାଜଙ୍କ ପାଇଁ ଏକ ମହତ୍ୱପୂର୍ଣ୍ଣ ଓ ପ୍ରଫୁଲ୍ଲମୟ ଦିବସ । ତେଣୁ ଲୋକଗୀତରେ କୁହାଯାଇଛି,"—

> "କାର୍ତ୍ତିକ୍ ଗଲେ ମଗ୍‌ଶିର ଆଉ ମଗ୍‌ଶିର ଗଲେ ପୁଷ
> ଘର ପୂରିଛେ ନୂଆହେଇ ଗହକି ହେମା ଆସ....
> ତାଲି ଦେରେ ନନୀ ଢ଼ଲିଆ ଖୁସା..
> "ଦୁଇହାତେ ଭିଡ଼ି ଦେସି" ମାରିଦେତ ମୁଲ୍‌କୀ ହିଁସା
>
> (ଢ଼ାବ୍‌ଗୀତ)

ପୁଷ୍ପୁନି ବା ପୌଷ ପୂର୍ଣ୍ଣିମା ତେଣୁ କେବଳ ଏକ ପର୍ବ ନୁହେଁ ଏହା ପ୍ରଧାନତଃ ପଶ୍ଚିମ ଓଡ଼ିଶାର ସାଧାରଣ ଶ୍ରମଜୀବୀ ଓ ହଳିଆ ସମାଜର ମୁକ୍ତି ଦିବସ, ଭାରତୀୟ ସ୍ୱାଧୀନତା ଦିବସ ସଙ୍ଗେ ଏହା ତୁଳନୀୟ ।

ପୌଷ ପୂର୍ଣ୍ଣିମା ଦିନ ନବିଓ ଉଚ୍ଚଜାତିଙ୍କ ମଧ୍ୟରେ ନାନା ପ୍ରକାର ପିଠାପଣା ଓ ଭୋଜିଭାତ ମାଧ୍ୟମରେ

ମଧ୍ୟ ପାଳିତ ହୋଇଥାଏ, ତଥାପି ଏହା ମୁଖ୍ୟତଃ ସାଧାରଣ ଜନ ହୃଦୟକୁ ଆଶ୍ରୟ କରିଥାଏ । ଏହି ଦିନ ଛୋଟ ପିଲାଠୁଁ ଆରମ୍ଭକରି ବଡ଼ ପର୍ଯ୍ୟନ୍ତ ସମସ୍ତ ବନ୍ଧନହୀନ ଶ୍ରମଜୀବୀ ତଥା ମୂଲିଆମାନେ ହାତରେ ଗୋଟିଏ ଲେଖାଏଁ ବାଡ଼ିଧରି ଗ୍ରାମସ୍ଥ ପ୍ରତ୍ୟେକ ଘରକୁ ଯାଇ ମାଟିରେ ବାଡ଼ିକୁ ପିଟି ଗୀତ ଗାଇ ଗାଇ "ଛେରଛେରା" (ପର୍ବକାଳୀନଭିକ୍ଷା) ମାଗିଥାନ୍ତି । ଲବ୍ଧ ସାମଗ୍ରିକୁ ସମୂହକରି ନିକଟସ୍ଥ ରମଣୀୟ ସ୍ଥାନକୁ ବଣଭୋଜି କରିବାକୁ ଯାଆନ୍ତି । ଏହି ବ୍ୟବହୃତ ବାଡ଼ି "ଛେରଛେରା" ବାଡ଼ି ପ୍ରଚଳିତ ଗୀତ "ଛେରଛେରା ଗୀତ" ଓ ପର୍ବଟି ଛେରଛେରା ପର୍ବ ନାମରେ ବିଖ୍ୟାତ । ସମଗ୍ର ଦିନ ତଥା ପରଦିନ (ବାସି ପର୍ବ ହିସାବରେ) ବହୁ ଆନନ୍ଦ ଓ ଉଲ୍ଲାସ ମଧ୍ୟରେ ପାଳିତ ହୁଏ । ଅପରାହ୍ନରେ ଓ ରାତ୍ରିରେ ଗ୍ରାମର କ୍ରୀଡ଼ାବିତ୍ ଓ ଖେଳାଳୀମାନଙ୍କ ଦ୍ୱାରା ଗ୍ରାମ୍ୟକ୍ରୀଡ଼ା ମାନ ପ୍ରଦର୍ଶିତ ହୋଇଥାଏ (ଯଥା– ଗୁଡୁ, ଲଉଗୁଡୁ, ଚକଳିସୁର, ଡ଼ଣାସୁର ଇତ୍ୟାଦି) ଓ ନାଚଗୀତର ବ୍ୟବସ୍ଥା ମଧ୍ୟ ହୋଇଥାଏ (ଡ଼ାଲ୍‌ନାଚ, ଘୁମୁରାନାଚ, ଶବରଶବରୀ ଲୀଳା ଓ ବିଭିନ୍ନ ସୁଆଙ୍ଗ) ସାହୁକାରମାନଙ୍କ ଘରେ ଏକବର୍ଷ ବ୍ୟାପି ସଂପର୍କ ସ୍ଥାପନ କରିଥିବା "ହଳିଆ" ମାନେ ଏହିଦିନ ମମତାକୁ ଏଡ଼ାଇ ଦେଇ ଚାଲିଯାନ୍ତି । ସେହି ମମତାକୁ ସିକ୍ତ ଦିନ ଗୁଡ଼ିକ ବହୁତ ପଡ଼େ, ସାହୁକାରମାନେ ଏଣୁ ଏହି ଦିନ ସେମାନଙ୍କୁ ଯଥୋଚିତ ଆଦର ଯତ୍ନରେ କିଛି କିଛି ଜିନିଷ ଦେଇ ବିଦାୟ ଦିଅନ୍ତି । ମୁକ୍ତିର ଆନନ୍ଦ ଓ ମମତାର ସମାପ୍ତି ମଧ୍ୟରେ ଉଭୟ ସାହୁକାର ଓ ହଳିଆଙ୍କ ହୃଦୟରେ ଜାଗି ଉଠେ ଏକ ଅଭିନବ ଭାବାନ୍ତର । ଏହାପୁଣି ପଶ୍ଚିମ ଓଡ଼ିଶାର ଲୋକ ସମାଜର ନବବର୍ଷ ।

ଏହି ବିଖ୍ୟାତ ଛେରଛେରା ପର୍ବରେ ବ୍ୟବହୃତ ଲୋକଗୀତ "ଛେରଛେରା ଗୀତ" ଉପରେ ସଂକ୍ଷେପରେ ଆଲୋଚନା କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଲୋକଗୀତରେ ଏହି ଏ ପର୍ବ ସମ୍ବନ୍ଧରେ କିପରି ଦୃଷ୍ଟାନ୍ତ ମିଳେ ତା'ର ସମ୍ୟକ୍ ବିଶଦବିସ୍ତର କରିବା ଏହି ପ୍ରବନ୍ଧର ଲକ୍ଷ୍ୟ ।

ପ୍ରଥମରୁ ସୂଚୀତ କରାଇ ଦିଆଯାଇଛି ଯେ ଏହା ଏକ "ମାଗୁଣି ଗୀତ" । ଏହାର ପ୍ରତି ପଦାବ୍ୟରେ "ଛେରଛେରଛେରା....ବୋଲି ଉଚ୍ଚାରିତ ହୋଇଥାଏ, ଯେପରି,"–

"ଛେରଛେରଛେରା............

ଭ ଘର ବୁଢ଼ୀ କାହିଁଗଲ, ଲିଆଖାଇ ଖାଇ ଛେରେଇ ହେଲ..............."

ଏହି ପଦଟି "ଦୁର୍ଯ୍ୟୋଧନ ପ୍ରତି ଭୀମର ସିଂହନାଦ-ଧ୍ୱନି ପରି କାମ କରେ, ଏଠାରେ ପରବାସ୍ଥକର ସାମାନ୍ୟ



ମର୍ଯ୍ୟାଦାହାନିର ଆଶଙ୍କା ଥିବାରୁ ସେ ଅବିଳମ୍ବେ ଗୃହ ଭିତରୁ ବାହାରକୁ ନିର୍ଗତ ହୁଅନ୍ତି, ଏହି ଗୀତ ମାଧ୍ୟମରେ ଗାୟକ ନିଜର ଆଗମନର ଅଭିପ୍ରାୟ ଜଣାଇଥାନ୍ତି"–

ଛେରବୁଢ଼ୀ ଛେରଛେରା....
ମୁହିଁ ଯାଇଥିଲି ତଲ୍‌ପରା
ତଲ୍‌ପରା ଥୁଁ ଆଏଲିନ....
ତମର ଘରକେ ଚ କ୍‌ଲିଁ ନ....
ନାଇଁ ହଅ ଆଇ ବିରବିରା
ଦେଦେ ମୋର ଛେର ଛେରା....

ଛେରଛେରଛେରା......।"

ଏଠାରେ ବ୍ୟବହୃତ ସମସ୍ତ ପଦ ମଧ୍ୟରେ ଅର୍ଥଗତ ସାମ୍ୟତା ପରିଲକ୍ଷିତ ହୁଏନାହିଁ । କେତେକ ପଦ ଥଟ୍ଟା ମଜା ହାସ୍ୟରସକୁ କେନ୍ଦ୍ରକରି ଉଚ୍ଚାରିତ ହୋଇଥିବା ବେଳେ, କେତେକ ଶୃଙ୍ଗାର ରସ, ଭକ୍ତିରସ, ଦୈନ୍ୟତା, ପର୍ବର ମାହାତ୍ମ୍ୟ ଓ ଏହି ପର୍ବର ପ୍ରସିଦ୍ଧ ପିଠା "ମଣ୍ଡା" କୁ କେନ୍ଦ୍ରକରି ପ୍ରଚଳିତ । ଅଧିକାଂଶ କ୍ଷେତ୍ରରେ ପୁଣି ଏକାଧିକ ଲୋକ ଦଳବଦ୍ଧ ହୋଇ ଢ଼ୋଲ୍, ଘୁମୁରା ଆଦି ଲୋକ ବାଦ୍ୟ ଧରି ସେହି ବାଦ୍ୟର ଆନୁସଙ୍ଗିତ ଲୋକଗୀତ ଗାଇ ବୁଲିଥାନ୍ତି । ଏହି ସମୟରେ ଆହୁରି ଅନେକ ଲୋକ ଗୀତ ମଧ୍ୟ ଗାୟନ କରାଯାଇଥାଏ, ମାତ୍ର ପ୍ରତ୍ୟେକ ଗୀତରେ ଏହି ପର୍ବର ମହିମା ଓ ବୈଶିଷ୍ଟ୍ୟ ପ୍ରକାଶ ପାଇଥାଏ ।

"ଏହି ମହାନ ଦିବସଟି ଅଫୁରନ୍ତ ଆନନ୍ଦ ଓ ଉଲ୍ଲାସର ଦିନ । ତେଣୁ ଅତୀତର ସମସ୍ତ ଭେଦଭାବ ଗ୍ଲାନି ଓ ଦୁଃସମୟର ସ୍ମୃତିକୁ ତିଳେ ତିଳେ ପଳେ ପଳେ ବିସର୍ଜନ ଦେଇ ସମସ୍ତେ ସମୟର ସଦୁପଯୋଗ କରିବା ଉଚିତ । ବର୍ଷକରେ ଥରେ ଆସିଥିବା ଏହି ଦିବସଟି ପୁଣି ଗତାନୁଗତିକ ସବୁଦିନ ଭଳି ନୁହେଁ, ବର୍ତ୍ତମାନର ଆନନ୍ଦର ସମୟ ଆଉ ମାତ୍ର ପାଞ୍ଚ ସାତ ଦିନପରେ ଚାଲିଯିବ, ପୁଣି ଏକ ସାହୁକାର ପାଖକୁ ଯାଇ ମୁଣ୍ଡ ଗୁଞ୍ଜିବାକୁ ପଡ଼ିବ.... ବାହୁ ବିକିବାକୁ ପଡ଼ିବ ତେଣୁ ବିଭୁଦତ୍ତ ସୁସମୟକୁ ପରସ୍ପର ଗାର୍ଡ -ସହଯୋଗୀତାରେ ଉପଭୋଗ କରିବା ଉଚିତ ।" ଏହାହିଁ "ଛେରଛେରା ଗୀତ'ର ଗୁରୁ ଗମ୍ଭୀର ଅନ୍ତଃସ୍ୱର ଓ ମର୍ମବାଣୀ,"–

"ଛେର ଛେର ଛେରା....
ପରଭ ଘରେଁ ବଛରେ ଗଲ....
ଆଏକ୍ କା କରି ଭୁଷା ଫୁଲ....
ବନ୍ଧ୍ ଡିଲେ ଫୁଟ୍‌ଲଫୁଲ୍
ଗୀତ ଗାଇ ଗାଇ ନାଚ୍‌ମା ଚାଲ....
ଆସଛେରେ ପୁଷର ପୁନି....
ଦୁଇ ଦିନ୍‌ର ଲଗି ରଜାରାନି....
ଛେର ଛେର ଛେରା........"

ଏହି ଦିବସ 'ମୁକ୍ତି'ର ଦିବସ । ମୁକ୍ତ ଆକାଶରେ ବିହଙ୍ଗ ସ୍ୱାଧୀନ ଭାବରେ ଘୁରିବୁଲେ, ସମୟର ସୁଯୋଗ କ୍ରମେ ସମସ୍ତଙ୍କୁ "ପଦିଏ" କହିବାର ଅଧିକାର ତା'ର ଥାଏ । ଏହି ଦିନ ଛୋଟ ବଡ଼, ଉଚ୍ଚ ନୀଚ, ମାନ୍ୟ ଗଣ୍ୟର ତାରତମ୍ୟ ନଥାଏ, ପ୍ରତ୍ୟେକ ଘରକୁ ଯାଇ ସେ ତାଙ୍କ ଉଦ୍ଦେଶ୍ୟରେ ଗୀତ ଗାଇଥାଏ....ଏହିଦିନ ଗୋଟିଏ ଯୁବକ ତା'ର ମନୋହାରିଣୀ ଛଇଳାକୁ ମନ ତୃପ୍ତି କରି କିଛି କହିପାରେ କାରଣ ଏହି ଦିବସର ବାଦ୍ୟଭଙ୍ଗୀ ସାମାଜିକ ଶୃଙ୍ଖଳା ବିହୀନ । ଗୀତର ଅଧିକାଂଶ ସ୍ଥଳରେ ଅଜା ଆଈ ଓ ସାଙ୍ଗ ବା ସଙ୍ଗାତ (ଭାଉଜର ଭଉଣୀ) ଙ୍କୁ ସମ୍ବୋଧନ କରାଯାଇଥାଏ କାରଣ ଏଇମାନେହିଁ ଥଟାମଜା, ଟାହିଟାପରା ଓ ହସଖୁସି କରିବାରେ ତଥା ହାସ୍ୟରସ ସୃଷ୍ଟି କରିବାରେ ଓ ଶରୀରରେ ପୁଲକ ଜାଗ୍ରତ କରିବାରେ ଏକ ଏକ ଶ୍ରେଷ୍ଠ ମାଧ୍ୟମ । ତେଣୁ ଏକ ପ୍ରଚଳିତ ଉକ୍ତିହେଲା "ଅଜା ଆଈର ସିନେ ନାତି, ରଜାରାନିର ସିନେହାତୀ, ସାଙ୍ଗରଦେଲ ବାରଡି....ଆମରଡାରଲାଗି ମୋର ଛାତି" ବାଡ଼ି ମାଧ୍ୟମରେ ସୃଷ୍ଟି ମୃଦୁ ଧ୍ୱନୀସହ ଏହି ଗୀତର ଅପୂର୍ବ ରସ ମାଧୁରୀ ସେହି ସମୟ ପାଇଁ ପଲ୍ଲୀର ସ୍ୱାଭାବିକ ରମଣୀୟ ପରିବେଶକୁ ଆହୁରି ମଧୁମୟ କରେ,"—

"ଛେରବୁଢ଼ୀ ଛେରଛେରା....
ପଦେ କହିଦେଲେ ବିରକଲ....
ହେଦେ ବୁଢ଼ୀ ଆଏଲନ....
ହାଏଣ୍ ଜୁଣ୍ ଜୁଣ କଲନ....
ଦେମି ଦେମି ବଏଲନ....
ଏ ଆଣ ଆଣ ଗୋ....
ତତେ ଶୁବିଦେଲା କାଇ ଗୋ....
ଗୁର ଭଖରା ଖାଇ ଗୋ....
ଶୁନି ଧାଏଁଲିଁ ମୁହିଁ ଗୋ...."

ଚକୁଳିଆ ପଣ୍ଡାମାନଙ୍କ ପରି ଏମାନେ (ଛେର ଛେରା ପାଳନକାରୀ) ନିଜର ଭିକ୍ଷା ଆଦାୟ କଲେ ନାନା ପ୍ରକାର ନୀତି ବାଣୀ ଉଦ୍ଧାର କରନ୍ତି, ଏହି କ୍ରମରେ ସେମାନେ ଉତ୍‌ଥାପନ କରନ୍ତି ଏହି ସଂସାରର ଅନୀକତା, ଧନ ଜନ ଓ ଯୌବନର କ୍ଷଣିକତା ତଥା ଜୀବାତ୍ମାର ଅସାରତା ଓ ଆକୁଳତା ବିଷୟକୁ । ସେ ପୁଣି ଆହ୍ୱାନ କରେ ଏହି ଆନନ୍ଦ ସ୍ରୋତରେ ଭାସିଯାଇ ଜୀବନକୁ ମଧୁସିକ୍ତ ଓ ସାର୍ଥକ କରିବାକୁ"—

"..........,
ପଏସା ଥିଲେ ହାତ୍‌କେ,
ଯାହା ଦେଇଥିବୁ ବାଟ୍‌କେ
ଖାଇ ପିଇ କରି ବଚ୍‌ଲେ ଧନ
ମରି ହଜି କରି ରହିଲେ ଜନ
× × × ×
ଦେଇଥିଲେ ଆଇ ପାଏବୁ ବନେ
ଗଁଠଲ ବେଚ୍‌ଲ ପିନ୍ଧିବୁ କାନେ
ଆଜିର ଜୀବନ୍ କାଲ୍‌କେ ନାଇଁ
କଅଁରା ନେଲେ ଫିରବା କାହିଁ
ବଛରେ ଗଲେ ଆଏଲ ଦିନେ
କେତେ ଲୁକିଥିସୁ କବାଟ୍ କନେ
ଅଜାର ସଙ୍ଗେ ବାହାର ଆଇ
ନାଡି ଦେମା ଖାଏ ଧେଇକି ଧେଇ ।"

ମାଗୁଣି ସମୟରେ ଏମାନେ ଦ୍ରବ୍ୟର ଏକ ଦୀର୍ଘ ତାଲିକା ଉପସ୍ଥାପିତ କରିଥାନ୍ତି, ଭୋଜି କରିବା ସମୟରେ ସେମାନେ ଯେପରି ଅସୁବିଧାର ସମ୍ମୁଖୀନ ନ ହୁଅନ୍ତି ସେଥିପାଇଁ ଏହି ସବୁର ଉଲ୍ଲେଖକରି ଆଗରୁ ଦାତାଙ୍କୁ ସତର୍କ କରାଇ ଦେଇଥାନ୍ତି । କାରଣ ଏହି ଦିବସରେ ହିଁ ତାଙ୍କର ଏପରି ଅଧିକାର ରହିଛି । ସେମାନେ ଘରକୁ ଘର ଗାଇବୁଲନ୍ତି,"—

ବନ୍ଦ୍ ତଲର୍ କଲ ଜିଆଁ
ଧାନ ନାଇଁ ଦିଆଁ ଚଉଳ ଦିଆଁ

(ହରିଜନ ଭାଷାର ଛାପ ପଡ଼ିଛି)

ଭାଜ୍‌ଲ ମୁଗ ଦଲ୍‌ଲ ବିରି
ଛେର ଛେରା ଦିଅ ଧରମ୍ କାରୀ
ବରି ବାଏଗଣ୍ ପାଚଲ୍ ଘିଁଟା
ଚିପୁଟି ବାନ୍ଧି ହଲଦୀ କୁଟା
ମୁଲ ଭାଜି ମୁନ୍‌ଗା ତୁଲି
ସେମିଦୁରା ଦେଲେ ଯିମୁ ଗଲି......"

ଏହି ଗୀତ ମାଧ୍ୟମରେ ବିଭିନ୍ନ ବ୍ୟବସାୟୀ ସମାଜକୁ ଚିହ୍ନିତ କରାଯାଇଥାଏ ଓ ସେଥିସହ କେତେକ ସମାଜର ଦୁର୍ଣ୍ଣାବନ୍ଦୀ ମଧ୍ୟ ପ୍ରକାଶ ପାଇଥାଏ । ପଶ୍ଚିମ ଓଡ଼ିଶାର ଅନ୍ୟ ଏକ ବେପାରୀ ଜାତି—"ବଞ୍ଜାରା" ବା ନାଏକ । ଏହାକୁ ଏ ଅଞ୍ଚଳରେ "ଲବାଙ୍ଗ୍" ବୋଲି ମଧ୍ୟ କହିଥାନ୍ତି । ଶୁଖୁଆ, ଚିଙ୍ଗୁଡ଼ି, ମରୀଚ ଓ ଲୁଣ ଏମାନଙ୍କର ପ୍ରଧାନ ବ୍ୟବସାୟ । ତେଣୁ ଲୋକେ ବା ପିଲାଏ ଏମାନଙ୍କ ଘରକୁ ଗଲେ କହିଥାନ୍ତି,"—

କାଏଁ କରି ମୁଁହୁଁ କରସୁଏଡ଼େ
ଦେ ଲବାଙ୍ଗେନ୍ ଶୁଖୁଆ ଫଡ଼େ....
ନୁନ୍ ଗିଧେ ଆର ଚିଙ୍ଗରି ଶୁଳେ
ଧରେଇ ଦେବୁ କଲେ କଲେ....।|

ଗଉଡ଼ ସଂପ୍ରଦାୟ ଦୁଧ ବ୍ୟବସାୟ କରନ୍ତି, ତାଙ୍କ ଘରେ ତେଣୁ ଦୁଧ ସୁଲଭ । ତେଣୁ "ଗଉଡ଼" ଘରକୁ ଗଲେ ଦୁଧ ମାଗିଥାନ୍ତି,"—

"ଛେର ଗଲରେନ୍ ଛେର ଛେରା
ଡମର ଘରେ ଶୋଷ୍କଲା
ଦୁହିଁକରି ଦେବୁ ଗୁରସ୍ ଶୁଲେ
ଯୋର କରିଥିବା ଝଗିଆ ଦେଲେ
ଛେର ଛେର ଛେରା...."

କେଉଟମାନେ ମୁଢ଼ି ବ୍ୟବସାୟ କରନ୍ତି ତେଣୁ ତାଙ୍କ ଘରକୁ ଗଲେ କହନ୍ତି,"—

"ତର ଘନାର ଡପର୍ଲ ଭୁଜା..
ଖାଏଲେ ବାଇ ଲଗ୍‌ସି ମଜା....
ଦେ କେଉଟେନ୍ ଭୁଜା ଅଡ଼େ
ରାନ୍ଧି ଖାଇ ଯିମୁ କହାର ଆଡ଼େ
(ନଦୀପଠା)

ସ୍ୱଭାବତଃ ବ୍ରାହ୍ମଣମାନଙ୍କୁ କୃପଣ ବୋଲି ସମାଲୋଚନା କରାଯାଇଥାଏ ଓ ତାଙ୍କ ଘରେ ଘୃତ ସୁଲଭ ଏଣୁ ବ୍ରାହ୍ମଣମାନଙ୍କ ଘରକୁ ଗଲେ ଲୋକେ କହନ୍ତି," —

"ଗୁସେଇଁ ବୁଢ଼ା ବଢ଼ା କୁଟି
ଲୁକି ଗଲେନ ଉଗୁଆ ଖୁଟି
ଗୁସେଇ ଦଦା ଛେର ଛେରା
ଡମର ଘରେ ଭୋକ କଲା
ଏ ପିଲେ ରେ ଫିରଲି ଦିଅ
ଗୁସେଇ ଦଦା ଦେବା ଘିଅ....ଛେର ଛେର ଛେରା ।"

ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ଏଠାରେ ବ୍ୟବହୃତ ବହୁ ପଦରେ କେବଳ "ଯୁବତୀ"ମାନଙ୍କୁ ବା "ସ୍ତିରି"ମାନଙ୍କୁ ହିଁ ସମ୍ବୋଧନ କରାଯାଇଥାଏ ଓ ଏଥିରେ ଉପେନ୍ଦ୍ର ଭଞ୍ଜଙ୍କ 'ବଜାର ବୋଲି' ପରି ଦ୍ୱିବିଧ ଅର୍ଥ ନିହିତ ଥାଏ । ଆନନ୍ଦ ଓ ଉଲ୍ଲାସ ମଧ୍ୟରେ ଯୁବକମାନେ ଚାହାନ୍ତି ଯୁବତୀଙ୍କର ସହଯୋଗ, ପୁରୁଷ ଚାହେଁ ସ୍ତିରିର ସହଯୋଗ, ଏହାକୁ ମିଳିକରି ଜନ୍ଧ ସଂପ୍ରଦାୟର ଧଙ୍ଗ୍‌ରା ଧଙ୍ଗରୀ ଢାକନାଚରେ (ଢାକ ନାଚ ବହୁ ପ୍ରକାର ସେ ସଂପର୍କରେ ପରେ ଏକ ସ୍ୱତନ୍ତ୍ର ପ୍ରବନ୍ଧରେ ଆଲୋଚନା କରାଯିବ) ଯୁବକ ଯୁବତୀ ମାନେ ମିଳିମିଶି ନୃତ୍ୟ କରିଥାନ୍ତି, ଏଣୁ ଛେରଛେରା ଗୀତର୍ ଏହି ଦିଗ ନିନ୍ଦନୀୟ ନୁହେଁ, ଶ୍ଳେଷାର୍ଥ ଗର୍ଭିକ ପଦରେ ଏହି ଗୀତ ଗୁଡ଼ିକରେ ସାହିତ୍ୟିକ ମୂଲ୍ୟ ସୁରକ୍ଷିତ ହୋଇଥିବାରୁ ବରଂ ବନ୍ଦନୀୟ । ଭାବକୁ ରସାଳ କରିବା ପାଇଁ ଏହାର ଶବ୍ଦ ସଂଯୋଜନା ମଧ୍ୟ ଅତି ଚମତ୍କାର ହୋଇଥାଏ । ନିମ୍ନ ପଦଟିରେ ବାହ୍ୟ ଅର୍ଥରେ ଏକ ଯୁବକ ଜଣେଇବା ଯୁବତୀକୁ "ଛେର ଛେରା" ମାଗୁଛି ଅନ୍ୟ ଅର୍ଥରେ ସେ 'ମନମଧୁ' ମାଗୁଛି ପ୍ରେମ ନିବେଦନ କରୁଛି, ଏ ଦୃଷ୍ଟିରୁ ଏହି ଆଦିରସାତ୍ମକ,"—

ଛେର ନନୀ ଛେରଛେରା....
ମାଗି ଆଏଲି ତରପରା..
ଚମକି ପଡ଼ଲି ମଜୁର କଁଠି
ଆଏକ୍ କାଏଲ୍ ବଲି ମାରଲୁ ପଟି

ରାଏସ୍ ପୁରର୍ ଛାନ୍ଲ ମଢ଼ା
ଖାଏଲି ଗୁରଦୁ ଧଏଲ ଝାଡ଼ା
କେତେ ନୁକିଥିସୁ ଟାଟିର କୁନେ
ବଛରେ ଗଲେ ଏଖେଇ ଦିନେ....ଇତ୍ୟାଦି

ଏହି ପର୍ବକୁ ମୁଖ୍ୟତଃ 'ମଣ୍ଡାପିଠା' ମାଧ୍ୟମରେ ଉପଭୋଗ କରାଯାଇଥାଏ । ଏଣୁ ଏହି ଦିବସରେ ମଣ୍ଡାପିଠାର ପ୍ରଚଳନ ବେଶି, ପ୍ରତ୍ୟେକଙ୍କ ଘରେ ଏହି ତିଆରି ହୁଏ ଓ ସମସ୍ତ ସଂପର୍କୀୟଙ୍କୁ ବଣ୍ଟାଯାଇଥାଏ (ଖ୍ରୀଷ୍ଟିଆନ୍ ସଂପ୍ରଦାୟରେ ଯେମିତି ଖ୍ରୀଷ୍ଟମାସ କେକର ପ୍ରଚଳନ) ପୌଷଆଡ଼କୁ ରାଶି ଅମଳ ସରିଯାଇ ଥିବାରୁ କୃଷକମାନେ ଏହି ରାଶିରେ ସୁମିଷ୍ଟ ପୁର ତିଆରି କରି ମଣ୍ଡାରେ ରାଶିପୁର ଦେଇ ତିଆରି କରନ୍ତି । "ରାଏସ୍ ପୁରଥି ଛାନ୍ଲ ମଢ଼ା" ରୁ ଏହା ସୂଚୀତ ହୁଏ । ଇଷ୍ଟଦେବଙ୍କ ପାଖରେ ଏହାକୁ ଭୋଗ ଦେଇ ଆନନ୍ଦରେ ଗ୍ରହଣ କରେ । ବହୁ 'ଲୋକଗୀତ'ରେ ଏହି ପୁଷ୍‌ପୁନି ମଢ଼ା ବିଷୟ ଉଲ୍ଲେଖ ଅଛି । ଏଠାରେ ଦୀର୍ଘତା ଭୟରୁ ଦୃଷ୍ଟାନ୍ତର ସଂଖ୍ୟାକୁ ହ୍ରାସ କରାଗଲା । ଲୋକଗୀତ ଡାଲ ଖାଇରେ,"—

ଡାଲଖାଇରେ,

ମଗ୍‌ଶିରର୍ ହୁଲହୁଲି କାଏଁରେ ଗଲିଁ ଦୁଲ୍‌ଦୁଲି....
ହୁଲ୍‌ହୁଲେଇ ଆନ୍‌ଲ ଶୀତ ପୁଷର ପାଲି
ପୁଷର ପାଲି କାଏଁରେ ପୁଷର ପୁନି
ଛେର୍ ଛେରା ମାଗିଗଲେ ହେସୁ ହୁର୍‌ଗୁନୀ
ରାଏସ୍ ପୁରର୍ ମଢ଼ା, ଗଜା ଧଙ୍ଗରା......
ବରଷେକେ ଦିନେ ଧନ ମନ୍ କରିଥା ଧିରା......
ମରିଗଲେ ସରିଗଲା, ଡାଲଖାଇ...............
ଉସରଘରା ଉସରଘରା କାଏଁ ଡାଲ୍‌ଖାଇରେ......

ସାମାନ୍ୟ କେତେ 'ପଦକୁ ଛାଡ଼ିଦେଲେ ଏହି "ପୁଷ୍‌ପୁନି ମଢ଼ା"ରେ ଉଲ୍ଲେଖ ଥିବା ସମସ୍ତ ପଦଆଦି ରସାତ୍ମକ ଓ ସ୍ଥାନେ ସ୍ଥାନେ ଉତ୍କଟ ଅଶ୍ଳୀଳତା ଫୁଟିଥାଏ । ପ୍ରତ୍ୟେକ ପଦ ଏହି ଦୃଷ୍ଟିରୁ ଦ୍ୱିଅର୍ଥ ବୋଧକ, ଯୁବତୀର ଦୁଇଟି ସ୍ତନର ଗଠନଗତ ସାମ୍ୟ 'ମଣ୍ଡା' ସହିତ 'ସମାନ ଥିବାରୁ ଏପରି ଉପମା ପ୍ରୟୋଗ ଯଥାଯଥ ହୋଇଥାଏ ମଧ୍ୟ ଟାକ୍ ଗୀତରେ,"—

"ବଡ଼ 'ଦଭଲର ହମ୍ କଲସି ସାନ ଦଭଲର ଧଜା
ପୁଷର ପୁନି ଦିନେ ଧନ ରାଏକ୍ ମଢ଼ା ମତେ ଦେଜା....
ଟାଟି ଛିଟ ସଙ୍ଗାତେ ବୁଣବି ଠକା
ତିନ୍‌ହାର୍ ନାଇଁ କି ଜନାର ନାଇଁ ବଲୁଚ ବାବୁର ଜକା....

ଗୋଟିଏ ପଦରେ ଉଲ୍ଲେଖ ଅଛି ଯେ "ଗୋ ରୂପସୀ ତୁ କେବଳ ବାହାର ମଣ୍ଡା ଚଖେଇ ଦେଇ ମତେ ପ୍ରବଞ୍ଚନା କରୁ । ମାତ୍ର ତୋର ସେହି ଅଙ୍ଗବାସ ଭିତରେ ଲୁକାୟିତ ହୋଇଥିବା ମଣ୍ଡା ବା ଉଚ୍ଚ ଘଞ୍ଚ ଦୃଢ ଦ୍ୱୟକୁ ଲୋଭ କରୁ । ଯେଉଁ ମଣ୍ଡା କି ଅତି ସରସ ଓ କୁମ୍ଭ କଳସ ପରି ଶୋଭା ପାଉଛି ମୋତେ ସେହି ମଣ୍ଡା ଦେ" ସେହି ପଦଟି,"—

> ବାହାର ମଡ଼ା ଦେଲୁ ଧନ ଭିତର ମଡ଼ା ନାହିଁ
> ଆଙ୍ଗିର ବାଗିର୍ ଗାହକି ଦିନେ ପଟି ମାଉଲୁ ତୁଇ
> ତାବିକରି ରଖିଦେଲୁ ମଡ଼ାକେ ଲୁଚାଇ
> ଦେ ଦେ ମର ମଡ଼ା
> କୁମ୍ଭ କଲସ ଯୁଡ଼ା
> ବନେଇଦେମି ନାକ୍‌କେ ଗୁନା ଲଗିଥିବା ଝରା.... ।"

'ସମ୍ବଲପୁରୀ ଭାଷା' ବୋଲି ଅନେକ ଏହାକୁ ଅଶ୍ଳୀଳତାର ଦୋଷଦେଇ ନାକ ଟେକନ୍ତି । ମାତ୍ର ଏହା ଠିକ୍ ନୁହେଁ । ଏହି ଆବେଦନ ଚିରନ୍ତନ । ପୁଣି ଭାରତୀୟ ବାଙ୍ମୟରେ ଶୃଙ୍ଗାର ବା ଆଦିରସକୁ କାବ୍ୟରେ ମୁଖ୍ୟ ସ୍ଥାନ ଦିଆଯାଇଛି । ପ୍ରାଚୀନ ଓ ମଧ୍ୟଯୁଗୀୟ ବହୁ କୃତୀରେ ଏହାକୁ ଆହୁରି ସାର୍ଥକ ବର୍ଣ୍ଣନା ରହିଛି, ଯେଉଁ ଦେଶର ସାହିତ୍ୟର ପରଂପରାରେ 'ସଂଭୋଗ କାଳୀନ' ଭାବତୀୟ ଚିତ୍ରର ବର୍ଣ୍ଣନା ରହିଛି ସେହି ଦେଶର ଲୋକଗୀତରେ ଏପରି ସାମାନ୍ୟ ରସଗର୍ଭକ ପଦକୁ ସମାଲୋଚନା କରନ୍ତି, ସେମାନେ ଯଥାର୍ଥରେ ଚିହ୍ନଗ୍ରାହକ ନୁହନ୍ତି । କଉଡା ବେଶ୍ୟାର ସ୍ତନକୁ ଲକ୍ଷ୍ୟକରି ଋଷ୍ୟଶୃଙ୍ଗପରି ମହାଯତି ମଧ୍ୟ ଏପରି କହିଥିବାର ରାମାୟଣରେ ଉଲ୍ଲେଖ ଅଛି ।

ପୌଷ ପୂର୍ଣ୍ଣିମାରେ କୃଷକର ଘର ହସୁଥାଏ । ଲକ୍ଷ୍ମୀ ଆସି ଭଣ୍ଡାରରେ ଖିଲି ଖିଲି ହସୁଥାନ୍ତି । ଏହି ହସର ସୁଅରେ ସମଗ୍ର କୃଷୀ ପରିବାରର ଅବଗାହନ କରନ୍ତି । ବର୍ଷକର କଷ୍ଟ ଅମଳ ପରେ ସେ ଅଫୁରନ୍ତ ଆନନ୍ଦରେ ମାତି ଏଇ ପର୍ବ ପାଳନ କରି ଗାଇ ଉଠେ,"—

> "ଜାଇଫୁଲରେ,
> ମଗଶିର ଗଲେ ପୁଷ
> ମାହାଲକ୍ଷ୍ମୀ ମାଆ ଭଣାରେ ବସ
> ମୁଁଘ ଉପରେ ଗାଏ ହସ.... ।

ଆଧୁନିକ ସଭ୍ୟ ଯୁଗର ଚାପରେ ଏହି ସମସ୍ତ ଲୋକାଗ୍ରର ଆଉ ଆଗପରି ପ୍ରବଳ ଭାବରେ ଦେଖାଯାଉ ନାହିଁ । କାରଣ ଏଇ ଦୁନିଆରେ 'ବଲ୍ ଡ୍ୟାନ୍‌ସ୍' ସଭ୍ୟର ସଂକେତ, ନଗ୍ନତା ଶିକ୍ଷିତର ପରିମାପକ ଓ ପଲ୍ଲୀର ମନୋରମ ଶାଳୀନତାରେ ଆବଦ୍ଧ ଲୋକନୃତ୍ୟାଦି ଅଶିକ୍ଷିତ ଓ ବର୍ବର ସମାଜର ପରିଚୟ । ଏଣୁ ଏ ସମସ୍ତ ଉପରେ ଗବେଷଣା କଲାବେଳେ ଗବେଷକମାନଙ୍କୁ ଅଧିକାଂଶ କ୍ଷେତ୍ରରେ ପ୍ରୁରୁଖା ବୃଦ୍ଧମାନଙ୍କର ଆଶ୍ରୟ ନେବାକୁ ପଡୁଛି । ଛେର୍ ଛେରା ଗୀତ ଏଭଳି ଏକ ଲୋକପ୍ରିୟ ଲୋକଗୀତ ତଥା ଏହା ସୁଶ୍ରାବ୍ୟ, ସୁଲଳିତ ଓ ଭାବବ୍ୟଞ୍ଜକ ହୋଇଥିବାରୁ ବହୁ ଲୋକଗୀତରେ ଏହାର ପ୍ରଭାବ ପଡ଼ିଛି ।

ଦୁଃଖର ବିଷୟ ଯେଉଁ ବେତାର ଲେଖକମାନେ ନିଜର ମୌଳିକତା ନଥାଇ ବେତାର କେନ୍ଦ୍ରରେ ସ୍ୱୀକୃତି ପାଇଛନ୍ତି ସେହି ଏହି ସମସ୍ତ ଲୋକଗୀତକୁ ଅବିକଳ ଲେଖିଦେଇ ନିଜର ନାମ ଭଣିତା କରୁଛନ୍ତି ବା ସେହି ଗୀତ ଉପରେ ନିଜର ପିତୃତ୍ୱ ଦାବୀ କରୁଛନ୍ତି । ଏହି ସଂସ୍କୃତି ହତ୍ୟା ଅପରାଧ କ୍ଷମଣୀୟ ନୁହେଁ । ବାରଶ ବଢ଼େଇଙ୍କ ଦ୍ୱାରା କୋଣାର୍କ ମନ୍ଦିର ନିର୍ମିତ ହୋଇଥିଲା ଏମାନଙ୍କ ନାମ ଆମ ନିକଟରେ ଅଜ୍ଞାତ, ଆଜିର ଟୋକାଏ ଯଦି କହନ୍ତି "ଆମେ କୋଣାର୍କ ମନ୍ଦିର ନିର୍ମାଣ କରିଛୁ ବୋଲି" ତେବେ ଏହା ହାସ୍ୟାସ୍ପଦ ନୁହେଁ କି ? ଲୋକଗୀତକୁ ପୁରାପୁରି ଲେଖିଦେଇ ନିଜର ମାଲିକାନା ଜାହିର୍ କରିବା ଏପରି ନିର୍ବୋଧତା । ଲୋକଗୀତର ଭାବ, ସ୍ୱର ଓ ଆଙ୍ଗିକ ଗଠନକୁ ଅନୁସରଣ କରି ନୂଆ ଗୀତ ସୃଷ୍ଟି କରାଯାଇପାରିବ । ସେମାନେ ଯଦି ନାମ ପ୍ରଚାର କରିବାରେ ବ୍ୟଗ୍ର ତେବେ 'ଲେଖକ' ବା ଗୀତ ରଚନା ସ୍ଥାନରେ "ପୁରାତନ ରଚନାକୁ ବେତାର ରୂପ ଦେଇଛନ୍ତି" କହି ପାରନ୍ତେ । ଜାତୀୟ ସଂପତ୍ତିର ସୁରକ୍ଷା ନିମନ୍ତେ ଜଗନ୍ନାଥ ଏମାନଙ୍କୁ ସଦ୍‌ବୁଦ୍ଧି ଦିଅନ୍ତୁ, ସେମାନେ ଲୋକ ସଂପତ୍ତିକୁ ବ୍ୟକ୍ତିଗତ ସଂପତ୍ତି ନକରି ନିଜେ ଅର୍ଜନ କରନ୍ତୁ ଓ ସର୍ଜନ କରି ଖାଆନ୍ତୁ ।

(ବି : ଦ୍ର : ) ଉଦ୍ଧୃତାଂଶ ଗୀତଗୁଡ଼ିକ ସ୍ୱର୍ଗତ ବାୟାର ମନ ମାଝୀ, ଶ୍ରୀ ଈଶ୍ୱର ମାଝୀ, କୃଷ୍ଣ ମାଝୀ, ଉଜଲ ସିଂ ମାଝୀ ଓ ଜାନାମଣି କୁମାର ଆଦିଙ୍କ ଠାରୁ ସଂଗୃହୀତ)

---

ମାର୍ଫତ—ଡ଼ଃ ବୈଷ୍ଣବ ଚରଣ ସାମଲ
ସ୍ନାତକୋତ୍ତର ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀ ବିହାର



THE ECONOMIC TIMES

THE HINDUSTAN TIMES

PATRIOT

INDIAN EXPRESS

THE TIMES OF INDIA

ସମ୍ବାଦପତ୍ରଙ୍କ ଦୃଷ୍ଟିରେ ଓଡ଼ିଶା

## ଓଡ଼ିଶାରେ ବ୍ୟାପକ ଶିଳ୍ପ ବିକାଶ

ରାଜ୍ୟର ବିଭିନ୍ନ ଅଞ୍ଚଳରେ ଯେଉଁ ବ୍ୟାପକ ଶିଳ୍ପ କାର୍ଯ୍ୟକ୍ରମ ଚାଲିଛି ତାହା କୌଣସି ପର୍ଯ୍ୟଟକଙ୍କ ଦୃଷ୍ଟି ଏଡ଼ାଇ ଦେଇ ପାରିବ ନାହିଁ । ରେଳପଥରେ କିମ୍ବା ସଡ଼କ ପଥରେ ଯାତ୍ରା କଲେ ଏହାର ପ୍ରତ୍ୟକ୍ଷ ପ୍ରମାଣ ମିଳିବ, ଯେହେତୁ ଅଧିକାଂଶ ନୂତନ ଶିଳ୍ପାନୁଷ୍ଠାନଗୁଡ଼ିକ ମୁଖ୍ୟ ରେଳପଥ କିମ୍ବା ଜାତୀୟ ରାଜପଥ ପାର୍ଶ୍ୱରେ ଅବସ୍ଥିତ ଏବଂ ଉଭୟ ରେଳପଥ ଓ ସଡ଼କପଥ ଉଣା ଅଧିକେ ସମାନ୍ତରାଳଭାବରେ ଗତି କରୁଛି ।

ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ପରିକଳ୍ପନାଗୁଡ଼ିକର ଯଥାଯଥ ତଥା ଦ୍ରୁତ ରୂପାୟନ ନିମନ୍ତେ ସରକାର ପ୍ରଶାସନିକ କଳକୁ ସକ୍ରିୟ କରିବା ସଙ୍ଗେ ସଙ୍ଗେ ରାଜ୍ୟ ଶିଳ୍ପାୟନ କ୍ଷେତ୍ରରେ ସଂପ୍ରତି ସୃଷ୍ଟି ହୋଇଥିବା ଅନୁକୂଳ ବାତାବରଣ ଅକ୍ଷୁଣ୍ଣ ରଖିବା ସକାଶେ କେତେକ ନୂତନ ସଂସ୍ଥା ଗଠନ କରିଛନ୍ତି ।

ଓଡ଼ିଶା ଶିଳ୍ପ ଭିତ୍ତିଭୂମି ଉନ୍ନୟନ କର୍ପୋରେସନ ହେଉଛି ଏ ଧରଣର ଏକ ବିଧିବଦ୍ଧ ସଂସ୍ଥା । ଶିଳ୍ପ ପ୍ରତିଷ୍ଠା ପାଇଁ ଆବଶ୍ୟକ ଜମି ପ୍ରସ୍ତୁତ, କାରଖାନା ଗୃହ ନିର୍ମାଣ ଏବଂ ଆନୁଷଙ୍ଗିକ ସୁବିଧାସୁଯୋଗ ଯୋଗାଇ ଦେବା ଦାୟିତ୍ୱ ଏହି ସଂସ୍ଥା ଉପରେ ନ୍ୟସ୍ତ କରାଯାଇଛି । × × ଓଡ଼ିଶା ଶିଳ୍ପ ଉନ୍ନୟନ ଓ ଅର୍ଥ ବିନିଯୋଗ କର୍ପୋରେସନ ଲିମିଟେଡ୍ ବୃହତ୍ ଏବଂ ମଧ୍ୟମ ଧରଣର ଶିଳ୍ପ ନିମନ୍ତେ ଭିତ୍ତିଭୂମି ଯୋଗାଉଥିବାବେଳେ ଓଡ଼ିଶା କ୍ଷୁଦ୍ରଶିଳ୍ପ କର୍ପୋରେସନ୍ ଛୋଟ ଧରଣର ଶିଳ୍ପ ସକାଶେ ଆବଶ୍ୟକ ସୁବିଧା ପୂରଣ କରୁଥିଲେ ।

ନୂତନ ଶିଳ୍ପନୀତି ରୂପାୟନ କରିବା ଦିଗରେ ସର୍ବୋଚ୍ଚ ଦାୟିତ୍ୱ ବହନ କରିଥିବା ଇପିକଲ ସଂସ୍ଥା ନିର୍ଦ୍ଧାରଣ କରିଛନ୍ତି ଯେ ସମସ୍ତ ଶିଳ୍ପୋଦ୍ୟୋଗୀ ଶିଳ୍ପ ପ୍ରତିଷ୍ଠା ପାଇଁ ଆବେଦନ କରିବାର ୨୧ ଦିନ ମଧ୍ୟରେ ରାଜ୍ୟ ସରକାରଙ୍କ ପକ୍ଷରୁ ସମସ୍ତ ପ୍ରକାର ସହାୟତା ଯୋଗାଇ ଦିଆଯିବ ।

ଏହି ସଂସ୍ଥା ଓଡ଼ିଶା ମଧ୍ୟରେ ଶିଳ୍ପ ବିକାଶ ନିମନ୍ତେ ୫୦ଟି କେନ୍ଦ୍ର ଚିହ୍ନଟ କରିଛନ୍ତି । ଏହି ମଧ୍ୟରୁ ୨୭ଟି କେନ୍ଦ୍ର ଗଢ଼ି ଉଠିଲାଣି । ଏହି ମଧ୍ୟରୁ ଅଧିକାଂଶ ଆଗୁଆ ଜିଲ୍ଲା କଟକ ଓ ପୁରୀରେ ଅବସ୍ଥିତ ।

[ଟାଇମ୍‌ସ ଅଫ୍ ଇଣ୍ଡିଆ—୧୬-୧୧-୧୯୮୧]

## ପ୍ରଗତିର ସ୍ପଷ୍ଟ ଚିତ୍ର

ସରକାରୀ ତଥ୍ୟକୁ ବାଦ୍ ଦେଲେ ଓଡ଼ିଶା ଯେ ଦ୍ରୁତ ଶିଳ୍ପାୟନ କ୍ଷେତ୍ରରେ ଅଗ୍ରସର ହେବାକୁ ଲାଗିଛି, ଏହା ନିଃସନ୍ଦେହ । କେବଳ ସାମ୍ନାରେ ଭୁବନେଶ୍ୱର, କଟକ ଓ ମଞ୍ଚେଶ୍ୱରଠାରେ ଗଢ଼ି ଉଠୁଥିବା ଶିଳ୍ପାଞ୍ଚଳ ପରିଦର୍ଶନ କରି ଏହା ଜାଣି ପାରନ୍ତି । ଶିଳ୍ପୋଦ୍ୟୋଗୀ ଓ ଶିଳ୍ପପତିମାନେ ସେମାନଙ୍କର ଶିଳ୍ପ କାରଖାନା ପ୍ରତିଷ୍ଠା କରିବା ଦିଗରେ କୌଣସି ଶିଳ୍ପାଞ୍ଚଳଜନିତ ସୁବିଧା ସୁଯୋଗ ଲାଭ କରୁଛନ୍ତି ।

ଭାଇସ୍ ଆଡ଼ମିରାଲ ଏସ୍. ଏନ୍. ଶର୍ମାଙ୍କର ଗୋଟିଏ ଘଟଣା ଏଠାରେ ଉଲ୍ଲେଖ କରାଯାଉଛି । ଶ୍ରୀ ଶର୍ମା ଇଲେକ୍ଟ୍ରୋଡ୍ ଉତ୍ପାଦନ କରିବା ନିମନ୍ତେ ଓଡ଼ିଶା ରାଜ୍ୟ ଅର୍ଥ କର୍ପୋରେସନ୍, ଶିଳ୍ପ ଭିତ୍ତିଭୂମି ଉନ୍ନୟନ କର୍ପୋରେସନ୍, ଷ୍ଟେଟ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ ଓ ଶିଳ୍ପ ଉନ୍ନୟନ ଓ ବିନିଯୋଗ କର୍ପୋରେସନ୍ ସମେତ ରାଜ୍ୟ ଏଜେନ୍‌ସିଗୁଡ଼ିକର ସହାୟତାକ୍ରମେ ଗୋଟିଏ ଶିଳ୍ପ ସ୍ଥାପନ କରିଛନ୍ତି ।

୨୮ ଲକ୍ଷ ଟଙ୍କା ବ୍ୟୟରେ ନିର୍ମିତ ଏହି ଯୁନିଟ୍ ଶିଳ୍ପରୁ ଖୁବ୍ ନିକଟରେ ବ୍ୟବସାୟଭିତ୍ତିକ ଉତ୍ପାଦନ ଆରମ୍ଭ ହେବ । ଏହି ଶିଳ୍ପରୁ ପୂର୍ଣ୍ଣମାତ୍ରାରେ ଉତ୍ପାଦନ ଆରମ୍ଭ ହେଲେ ୪୫ ଜଣ ଲୋକଙ୍କୁ ନିଯୁକ୍ତି ମିଳିବ ।

(ଇକୋନମିକ୍ସ ଟାଇମ୍ସ୍-କଲିକତା ୧୭।୧୧।୧୯୮୧)

## ଦ୍ରୁତ ପ୍ରଗତିର ଚିହ୍ନ

ଦେଶର ବଡ଼ ବଡ଼ ହୋଟେଲ ମାଲିକମାନେ ଓଡ଼ିଶା ପ୍ରତି ବିଶେଷ ଆକୃଷ୍ଟ ହୋଇଛନ୍ତି । ଓବେରୟ୍, ଦି ଗ୍ରାଣ୍ଡ ଗ୍ରୁପ୍, ଏସିଆଡ୍, ଆଇ. ଟି. ସି. ଓ ଭାରତ ପର୍ଯ୍ୟଟନ ଉନ୍ନୟନ କର୍ପୋରେସନ୍ ରାଜ୍ୟରେ ପଞ୍ଚ-ତାରକା ବିଶିଷ୍ଟ ହୋଟେଲ ନିର୍ମାଣ କରିବାକୁ ଚୁକ୍ତି କରିଛନ୍ତି । ଏହି ହୋଟେଲଗୁଡ଼ିକ ପୁରୀ, କୋଣାର୍କ ଓ ଭୁବନେଶ୍ୱରଠାରେ ଗଢ଼ି ଉଠିବ ।

ବର୍ତ୍ତମାନ ପାଇଁ ସେମାନେ ହୋଟେଲଗୁଡ଼ିକରେ ନିଜନିଜରେ ୧୦୦ରୁ ୫୦୦ କୋଠରି ପର୍ଯ୍ୟନ୍ତ ବ୍ୟବସ୍ଥା କରିବେ । ପ୍ରତ୍ୟେକ ହୋଟେଲ ପାଇଁ ୮ କୋଟି ଟଙ୍କା ଖର୍ଚ୍ଚ ହେବବୋଲି ହିସାବ କରାଯାଇଛି ।

[ଇକୋନୋମିକ ଟାଇମ୍ସ ୧୮-୧୧-୧୯୮୧]

## ନିର୍ଦ୍ଧାରିତ ଲକ୍ଷ୍ୟ ଠାରୁ ଅଧିକ ଶିଳ୍ପ ପ୍ରତିଷ୍ଠା କରାଗଲାଣି

ଗତବର୍ଷ ଜୁନ୍ ମାସରେ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ମନ୍ତ୍ରୀମଣ୍ଡଳ ଓଡ଼ିଶାରେ କ୍ଷମତାକୁ ଆସିବା ପରେ ରାଜ୍ୟରେ ଦ୍ରୁତ ଶିଳ୍ପ ବିକାଶ ଲାଗି ୧,୦୦୦ କୋଟି ଟଙ୍କା ବ୍ୟୟରେ ୧୦୦୦ ଦିନରେ ୧୦୦୦ଟି ଶିଳ୍ପ ପ୍ରତିଷ୍ଠା କରିବା ପାଇଁ ଘୋଷଣା କରିଥିଲେ ।

ରାଜ୍ୟ ସରକାର ଦାୟିତ୍ୱ ଗ୍ରହଣ କରିବାର ହଜାରେ ଦିନ ପୂର୍ଣ୍ଣ ହେବାକୁ ଅଦ୍ୟାବଧି ବାକି ଅଛି । ସରକାର ଯେଉଁ ସମୟ ସୀମା ଧାର୍ଯ୍ୟ କରିଥିଲେ, ତାହାର ମାତ୍ର ଅର୍ଦ୍ଧେକ ଭାଗ ପୂରଣ ହୋଇଛି ଏବଂ ସରକାର ଯେଉଁ ଲକ୍ଷ୍ୟ ଧାର୍ଯ୍ୟ କରିଥିଲେ, ତାହାଠାରୁ ଯଥେଷ୍ଟ ଅଧିକ ପରିମାଣରେ ପୂରଣ ହୋଇଛି ।

ପରିସଂଖ୍ୟାନରୁ ଜଣାଯାଇଛି ଯେ ୧୮ କୋଟି ଟଙ୍କା ବ୍ୟୟ ଅଟକଳରେ ଗଢ଼ି ଉଠିଥିବା ପ୍ରାୟ ୨,୬୦୦ଟି କ୍ଷୁଦ୍ର ଶିଳ୍ପ ସଂସ୍ଥା କେବଳ ୧୫,୦୦୦ରୁ ଅଧିକ ଲୋକଙ୍କୁ କର୍ମସଂସ୍ଥାନ ଯୋଗାଇ ପାରିଛି । ୧,୦୦୦ କୋଟି ଟଙ୍କା ବ୍ୟୟରେ ଗଢ଼ି ଉଠିଥିବା ପ୍ରାୟ ୬୦୦ଟି ମଧ୍ୟମ ତଥା ବୃହତ୍ ଶିଳ୍ପାନୁଷ୍ଠାନ ଚିହ୍ନଟ କରାଯାଇ ପାରିଛି । ସେଥି ମଧ୍ୟରୁ ୫୨ଟି ଅର୍ଥାତ୍ ୧୭ଟି ବୃହତ୍ ଓ ୩୫ଟି ମଧ୍ୟମ ଶିଳ୍ପାନୁଷ୍ଠାନର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହେବା ଉପରେ । ଏହି କାରଖାନାଗୁଡ଼ିକର କାର୍ଯ୍ୟ ସମ୍ପୂର୍ଣ୍ଣ ହେବା ପରେ ଅନ୍ତିମ ଭାବେ ୭୫ ହଜାର ଲୋକଙ୍କ ପାଇଁ କର୍ମସଂସ୍ଥାନ କରାଯାଇ ପାରିବ ।

( ପାଟ୍ରିଅଟ୍ : ନଭେମ୍ବର ୧୭, ୧୯୮୧ )

### ପ୍ରୋସେସିଂ ୟୁନିଟ୍‌ର ସଫଳତା

ହସ୍ତତନ୍ତ ବସ୍ତ୍ରକୁ ରଙ୍ଗୀନ କରିବା ପାଇଁ କଟକ ଜିଲ୍ଲାର ଜଗତପୁରଠାରେ ପ୍ରତିଷ୍ଠିତ ପ୍ରୋସେସିଂ ୟୁନିଟ୍‌ରେ ରଙ୍ଗ କରିବାକୁ ୪ ଲକ୍ଷ ୫୪ ହଜାର ମିଟର ବସ୍ତ୍ର ସଂଗ୍ରହ କରାଯାଇଥିଲା ଏବଂ ସେଥି ମଧ୍ୟରୁ ୧ ଲକ୍ଷ ମିଟର ବସ୍ତ୍ରକୁ ରଙ୍ଗ କରାଯାଇଥିଲା । ଏଥିପାଇଁ ୫୫ ହଜାର ଟଙ୍କା ପ୍ରୋସେସିଂ ଖର୍ଚ୍ଚ ବାବଦକୁ ଗ୍ରହଣ କରାଯାଇଛି ।




ଧରାଡିଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉଦ୍‌ବୋଧନ ଦେଉଛନ୍ତି ।



ଲୋକସଭା ସଦସ୍ୟା ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକଙ୍କଦ୍ୱାରା ୧୩ । ୧ । ୮୨ ରେ ବୁର୍ଲାରେ ପୁଷ୍ପ ପ୍ରଦର୍ଶନୀ ଉଦ୍‌ଘାଟନ ।



କଳାହାଣ୍ଡି ଜିଲ୍ଲା ଜୁନାଗଡ଼ଠାରେ ମୁଖ୍ୟମନ୍ତ୍ରୀଙ୍କଦ୍ୱାରା ବିଦ୍ୟୁତ୍‌ଚାଳିତ ସେଚକୂପ ଉଦ୍‌ଘାଟନ ।

# ପ୍ରଗତି ସମ୍ବାଦ

## ଓଡ଼ିଶା ଅର୍ଥ ଲଗାଣ ନିଗମର

# ରୌପ୍ୟ ଜୟନ୍ତୀ ଉତ୍ସବ

ସୁଚିନ୍ତିତ ଯୋଜନା ଅନୁଯାୟୀ ନୂତନ ଶିଳ୍ପନୀତି କାର୍ଯ୍ୟକାରୀ କରିବା, ଉପଯୁକ୍ତ ଅର୍ଥ ଲଗାଣ ବ୍ୟବସ୍ଥା ଏବଂ ବିପୁଳ ପ୍ରାକୃତିକ ସଂପଦର ଉପଯୋଗ କରିବା ଦ୍ୱାରା ରାଜ୍ୟରେ ବ୍ୟାପକ ଶିଳ୍ପ ପ୍ରସାର ସମ୍ଭବପର ହେଉଛି ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ମତବ୍ୟକ୍ତ କରିଛନ୍ତି ।

ଡିସେମ୍ବର ୨୦ ତାରିଖ ସ୍ଥାନୀୟ ସୂଚନା ଭବନଠାରେ ଆୟୋଜିତ ରାଜ୍ୟ ଅର୍ଥ ଲଗାଣ ନିଗମର ରୌପ୍ୟ ଜୟନ୍ତୀ ଉତ୍ସବରେ ଉଦ୍‌ବୋଧନ ଦେଇ ମୁଖ୍ୟମନ୍ତ୍ରୀ କହିଲେ ଯେ ଅତୀତରେ ଏପରି ପଦକ୍ଷେପ ନିଆଯାଇ ନ ଥିବାରୁ ଶିଳ୍ପ ବିକାଶ ବ୍ୟାହତ ହେବା ସଙ୍ଗେ ସଙ୍ଗେ ଦେଶର ଶିଳ୍ପ ମାନଚିତ୍ରରେ ଓଡ଼ିଶା ସ୍ଥାନ ପାଇ ନ ଥିଲା । ବିଗତ ଦଶନ୍ଧିରେ କୌଣସି ଉଲ୍ଲେଖନୀୟ ଶିଳ୍ପ କାରଖାନା ପ୍ରତିଷ୍ଠିତ ହୋଇ-ନ ଥିଲା ବୋଲି ଦର୍ଶାଇ ମୁଖ୍ୟମନ୍ତ୍ରୀ କହିଲେ ଯେ ତତ୍‌କାଳୀନ ଶିଳ୍ପନୀତି କେବଳ କାଗଜପତ୍ରରେ ସୀମାବଦ୍ଧ ରହିଥିଲା ଏବଂ ଘୋଷିତ ପ୍ରୋତ୍ସାହନସବୁ କାର୍ଯ୍ୟକାରୀ ହୋଇପାରି-ନ ଥିଲା । ଫଳରେ ପୁଞ୍ଜି ବିନିଯୋଗ ହ୍ରାସ ପାଇବା ସଙ୍ଗେ ସଙ୍ଗେ ସ୍ଥାନୀୟ ଶିଳ୍ପୋଦ୍ୟୋଗୀମାନେ ବହୁ ଅସୁବିଧାର ସମ୍ମୁଖୀନ ହୋଇ ହତୋତ୍ସାହରେ ଶିଳ୍ପ ପ୍ରତିଷ୍ଠା କରିପାରି-ନ ଥିଲେ ।

ବର୍ତ୍ତମାନ ସରକାରଙ୍କ ଶିଳ୍ପନୀତି ଓ ଆକର୍ଷଣୀୟ ପ୍ରୋତ୍ସାହନ ସମେତ ବିଭିନ୍ନ ସୁବିଧା ସୁଯୋଗ ଦ୍ରୁତ ଶିଳ୍ପାୟନ ଦିଗରେ ବିଶେଷ ସହାୟକ ହେଉଛି ବୋଲି ଉଲ୍ଲେଖ କରି ମୁଖ୍ୟମନ୍ତ୍ରୀ କହିଲେ ଯେ କେତେକ ସ୍ଥାନରେ ଶିଳ୍ପ କାରଖାନାପାଇଁ ଆବଶ୍ୟକୀୟ ଭିତ୍ତିଭୂମି ପ୍ରତିଷ୍ଠା କରିବା ଗୁରୁତ୍ୱପୂର୍ଣ୍ଣ । ତେଣୁ ସରକାର ଶିଳ୍ପ ଭିତ୍ତିଭୂମି ଉନ୍ନୟନ ନିଗମ ଗଠନ କରିବା ସଙ୍ଗେ ସଙ୍ଗେ ଶିକ୍ଷିତ ବେକାରଙ୍କୁ କର୍ମ ନିଯୁକ୍ତିପାଇଁ ଗୋଟିଏ ଇଲେକ୍‌ଟ୍ରୋନିକ୍ ଉନ୍ନୟନ ନିଗମ ଗଠନ କରିଛନ୍ତି । ଏହା ବ୍ୟତୀତ ବୃହତ୍ ଓ ମଧ୍ୟମ ଶିଳ୍ପ ସ୍ଥାପନ ଦିଗରେ ଉପୁଜୁଥିବା ସମସ୍ୟାଗୁଡ଼ିକର ସମାଧାନପାଇଁ ଉଚ୍ଚସ୍ତରୀୟ 'ନୋଡାଲ୍' କମିଟି ଏବଂ ଶିଳ୍ପ ସମନ୍ୱୟ ବ୍ୟୁରୋ ଗଠନ କରାଯାଇଛି ବୋଲି ସେ କହିଥିଲେ । ମୁଖ୍ୟମନ୍ତ୍ରୀ କହିଲେ ଯେ ରାଜ୍ୟ ଅର୍ଥଲଗାଣ ନିଗମ, ଶିଳ୍ପ ଉନ୍ନୟନ ନିଗମ, ଇପିକଲ୍ ଏବଂ କ୍ଷୁଦ୍ର ଶିଳ୍ପ ନିଗମ [illegible] ସଂସ୍ଥାଗୁଡ଼ିକର କାର୍ଯ୍ୟକଳାପ ପୂର୍ବାପେକ୍ଷା ଯଥେଷ୍ଟ [illegible] ପାଇଛି । ଏହା ଫଳରେ ମାତ୍ର ଗୋଟିଏ ବର୍ଷ ମଧ୍ୟରେ ୨୦୦ କୋଟି ଟଙ୍କା ବିନିଯୋଗରେ ୧୪ଟି ବୃହତ୍ ଶିଳ୍ପ, ୩୫ଟି ମଧ୍ୟମ ଶିଳ୍ପ ଏବଂ ୩ଟି ସୂତାକଳ ପ୍ରତିଷ୍ଠିତ ହୋଇପାରିଛି । ଏହା ବ୍ୟତୀତ ୮୦୦କୋଟି ଟଙ୍କା ବିନିଯୋଗରେ ପ୍ରାୟ ୪୦ଟି ବୃହତ୍, ୧୧୮ଟି ମଧ୍ୟମ [illegible] ସମବାୟ ଶିଳ୍ପ ସଂସ୍ଥା ସ୍ଥାପନ [illegible] ଉଦ୍ୟମ [illegible] ତନ୍ମଧ୍ୟରେ ୨ଟି ବୃହତ୍ କାଗଜ କଳ, [illegible] ଆଇରନ୍ କାରଖାନା, ଗୋଟିଏ ପଲିଷ୍ଟର ସୂତାକଳ [illegible] ଗ୍ରସ୍ କ୍ରୋମ କାରଖାନା, ୧୦ ଟି [illegible] କଳ, ଦୁଇ [illegible] କାରଖାନା, ପ୍ରଥମ ଚଳଚ୍ଚିତ୍ର ଷ୍ଟୁଡିଓ, ପ୍ରଥମ ଟେକ୍ [illegible] ପ୍ରସେସିଂ ପ୍ଲାଣ୍ଟ ଏବଂ ବହୁ ସଂଖ୍ୟକ ଅତ୍ୟାଧୁନିକ ହୋଟେଲ ତଥା ବେଳାଭୂମି ନିବାସ ଅନ୍ତର୍ଭୁକ୍ତ । ଗତ [illegible] ବର୍ଷ ମଧ୍ୟରେ ୨,୫୦୦ ଟି କ୍ଷୁଦ୍ର ଶିଳ୍ପ ସଂସ୍ଥା ପ୍ରତି[illegible] ହୋଇଥିବା ପ୍ରଶଂସନୀୟ ବୋଲି ସେ କହିଥି[illegible] ପ୍ରଧାନମନ୍ତ୍ରୀଙ୍କ ଆଶୀର୍ବାଦ ଫଳରେ ସମୁଦାୟ ୫ହଜାର କୋଟି ଟଙ୍କା ବିନିଯୋଗରେ ପାରାଦୀପଠାରେ ଦ୍ୱି[illegible] ଇସ୍‌ପାତ କାରଖାନା ଓ ସାର କାରଖାନା ଏବଂ ଏକ ବୃହତ୍ ଆଲୁମିନିୟମ୍ ପ୍ରକଳ୍ପ ପ୍ରତିଷ୍ଠିତ ହେବାକୁ ଯାଉଛି ବୋଲି ମୁଖ୍ୟମନ୍ତ୍ରୀ ସୂଚନା ଦେଇଥିଲେ । ଗ୍ରାମ୍ୟ ଓ କୁଟୀର ଶିଳ୍ପ ଏବଂ କାରିଗରୀ ଶିଳ୍ପ, ବିଶେଷତଃ ହସ୍ତତନ୍ତ ଶିଳ୍ପ ପ୍ରତିଷ୍ଠା ଦିଗରେ ଉଲ୍ଲେଖନୀୟ ଅଗ୍ରଗତି ହୋଇଛି ବୋଲି ପ୍ରକାଶ କରି ମୁଖ୍ୟମନ୍ତ୍ରୀ କହିଲେ ଯେ ଓ.ଟି.ଏମ୍ ପରି ରାଜ୍ୟର ଏକମାତ୍ର ପୂର୍ଣ୍ଣାଙ୍ଗ ଲୁଗାକଳକୁ ଖୁବ୍ ଅଳ୍ପକାଳ ମଧ୍ୟରେ ପୁଣି ଖୋଲା କରାଯାଇଛି । ଏହା ବ୍ୟତୀତ ଚନ୍ଦକା ଶିଳ୍ପପୁଞ୍ଜର ନିର୍ମାଣ କାର୍ଯ୍ୟ ତ୍ୱରାନ୍ୱିତ ହୋଇଛି ।

ମୁଖ୍ୟମନ୍ତ୍ରୀ କହିଲେ ଯେ ବ୍ୟାପକ ଶିଳ୍ପ ପ୍ରସାର ପାଇଁ ଉଭୟ ଦୀର୍ଘ ଓ ସ୍ୱଳ୍ପ ମିଆଦୀ ସୂତ୍ରରେ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କାର୍ଯ୍ୟକ୍ରମ ଆରମ୍ଭ ହେବା ସଙ୍ଗେ ସଙ୍ଗେ ବୈଷୟିକ ଜ୍ଞାନ ସମ୍ପନ୍ନ ବ୍ୟକ୍ତିଙ୍କ ସଂଖ୍ୟା ବୃଦ୍ଧି କରିବାକୁ ଉଦ୍ୟମ ହେଉଛି । ଏଥିପାଇଁ କୃଷି ମହାବିଦ୍ୟାଳୟରେ ଇଂଜିନିୟରିଂ ପାଠ୍ୟକ୍ରମ ପ୍ରବର୍ତ୍ତନ, ଇଂଜିନିୟରିଂ କଲେଜ ଗୁଡ଼ିକରେ ସ୍ଥାନସଂଖ୍ୟା ବୃଦ୍ଧି, ଗୋଟିଏ ପଲିଟେକ୍‌ନିକ୍ ଓ ଦୁଇଟି ଆଇ. ଟି. ଆଇ. ପ୍ରତିଷ୍ଠା କରାଯିବା ସଙ୍ଗେ ସଙ୍ଗେ

ହୋଟେଲ ପରିଚାଳନା ଓ ବ୍ୟବସାୟ ପରିଚାଳନା ପରି ବୈଷୟିକ ପାଠ୍ୟକ୍ରମ ପ୍ରଚଳିତ ହୋଇଛି । ଶିଳ୍ପ ଉନ୍ନୟନ ଦିଗରେ ରାଜ୍ୟ ଅର୍ଥ ଲଗାଣ ନିଗମର ଭୂମିକା ଉଲ୍ଲେଖ କରି ମୁଖ୍ୟମନ୍ତ୍ରୀ କହିଲେ ଯେ ଗତ ୨୩ବର୍ଷ ମଧ୍ୟରେ ଏହି ନିଗମ ତରଫରୁ ୬,୨୨୬ ଟି ଶିଳ୍ପ ସଂସ୍ଥାପାଇଁ ଋଣ ସାହାଯ୍ୟ ଦିଆଯାଇଥିବା ସ୍ଥଳେ କେବଳ ଗତ ବର୍ଷ ମଧ୍ୟରେ ୭,୫୬୪ ଟି ଶିଳ୍ପ ସଂସ୍ଥାକୁ ପ୍ରାୟ ୧୮ କୋଟି ଟଙ୍କା ଋଣ ମଂଜୁର କରାଯାଇଥିଲା । ଶିଳ୍ପ କ୍ଷେତ୍ରରେ ବିପୁଳ ପରିମାଣ ପୁଂଜି ବିନିଯୋଗ କରିବା ଆବଶ୍ୟକ ବୋଲି ମତ ବ୍ୟକ୍ତ କରି ଶ୍ରୀ ପଟ୍ଟନାୟକ କହିଲେ ଯେ ବର୍ତ୍ତମାନ ରାଜ୍ୟର ସୀମିତ ସମ୍ବଳଦୃଷ୍ଟିରୁ ଏଥିପାଇଁ ଆମମାନଙ୍କୁ ଅର୍ଥଲଗାଣକାରୀ ସଂସ୍ଥାଗୁଡ଼ିକ ଉପରେ ନିର୍ଭର କରିବାକୁ ପଡ଼ିବ । ଅନଗ୍ରସର ରାଜ୍ୟଗୁଡ଼ିକର ଉନ୍ନତି ଦିଗରେ ଏହି ସଂସ୍ଥାଗୁଡ଼ିକର ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପର୍କରେ ଉଲ୍ଲେଖ କରି ସେ କହିଲେ ଯେ ଗତ ୧୬ ବର୍ଷ ମଧ୍ୟରେ ଭାରତୀୟ ଶିଳ୍ପ ଉନ୍ନୟନ ବ୍ୟାଙ୍କ ଓ ଭାରତୀୟ ଶିଳ୍ପ ଅର୍ଥ ଲଗାଣ ନିଗମ ପରି ସର୍ବଭାରତୀୟ ସଂସ୍ଥା ତରଫରୁ ସମଗ୍ର ଦେଶରେ ବିନିଯୋଗ ହୋଇଥିବା ଅର୍ଥର ଶତକଡ଼ା ମାତ୍ର ଦୁଇଭାଗ ଓଡ଼ିଶାରେ ବିନିଯୋଗ ହୋଇଛି । ଓଡ଼ିଶା ପରି ଶିଳ୍ପ କ୍ଷେତ୍ରରେ ଅନଗ୍ରସର ରାଜ୍ୟକୁ ଶିଳ୍ପ ଲାଇସେନ୍ସ ଦେବା ସମ୍ପର୍କରେ କେନ୍ଦ୍ର ସରକାର ସ୍ପଷ୍ଟ ନୀତି ଗ୍ରହଣ କରିଥିବା ଆନନ୍ଦର ବିଷୟ । ରାଜ୍ୟ ଅର୍ଥଲଗାଣ ନିଗମ, ଶିଳ୍ପ ଉନ୍ନୟନ ନିଗମ ଓ ଇପିକଲ୍ ପ୍ରଭୃତି ସଂସ୍ଥାର ବହୁ ପ୍ରକଳ୍ପ ଆରମ୍ଭ କରିବାକୁ ପ୍ରସ୍ତାବଥିବାରୁ ସେମାନଙ୍କୁ ଯଥେଷ୍ଟ ପରିମାଣର ଅର୍ଥ ଯୋଗାଇ ଦେବା ଉପରେ ମୁଖ୍ୟମନ୍ତ୍ରୀ ଗୁରୁତ୍ୱ ଆରୋପ କରି ଏ ଦିଗରେ ଭାରତୀୟ ଶିଳ୍ପ ଉନ୍ନୟନ ବ୍ୟାଙ୍କର ଅଧ୍ୟକ୍ଷ ଶ୍ରୀ ଏନ୍. ଏନ୍. ପାଇଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ।



## ଓଡ଼ିଆ କାରିଗରମାନଙ୍କର ଲିବିୟା ଯାତ୍ରା

ବିଦେଶରେ ଚାକିରୀ ନିମନ୍ତେ ପ୍ରାର୍ଥୀ ସଂଗ୍ରହ କରିବା ପାଇଁ ଆମ ରାଜ୍ୟର ଇପିକଲ୍ ଏକ ସ୍ୱୀକୃତିପ୍ରାପ୍ତ ସଂସ୍ଥା ରୂପେ ଉଲ୍ଲେଖନୀୟ ସାଫଲ୍ୟ ଅର୍ଜନ କରିପାରିଛନ୍ତି । ଲିବିୟାରେ ଚାକିରୀ କରିବାପାଇଁ ୧୨୦ ଜଣ ବିଭିନ୍ନ ବୈଷୟିକ କାରିଗର ଶ୍ରେଣୀର ପ୍ରାର୍ଥୀଙ୍କୁ ଭାରତସ୍ଥିତ ଆନ୍ତର୍ଜାତୀୟ ବିମାନ ବନ୍ଦର କର୍ତ୍ତୃପକ୍ଷ ବାଛିଛନ୍ତି । ଏମାନଙ୍କ ମଧ୍ୟରୁ ପ୍ରଥମ ଦଫାରେ ୨୦ଜଣ କାରିଗରଙ୍କୁ ଗତ ସେପ୍‌ଟେମ୍ବର ୮ ତାରିଖରେ ଲିବିୟା ପଠାଯାଇ ସାରିଛି । ଦ୍ୱିତୀୟ ଦଫାରେ ଲିବିୟା ଯାତ୍ରା କରିବା ପାଇଁ ଆଉ ୧୬ ଜଣ ପ୍ରାର୍ଥୀ ଡିସେମ୍ବର ମାସ ୧୩ ତାରିଖରେ ନୀଳାଚଳ ଏକ୍ସପ୍ରେସ୍ ଯୋଗେ ଭୁବନେଶ୍ୱରଠାରୁ ଦିଲ୍ଲୀ ଯାତ୍ରା କରିଛନ୍ତି । ଏହି ପ୍ରାର୍ଥୀମାନଙ୍କୁ ରାଜ୍ୟର ବିଭିନ୍ନ ଘରୋଇ ତଥା ସରକାରୀ ସଂସ୍ଥାମାନଙ୍କରୁ ବଛାଯାଇଛି ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ୧୯୭୯ ମସିହାରେ ମଧ୍ୟ ୩୦ ଜଣ ତାଲିମପ୍ରାପ୍ତ କାରିଗରୀ ପ୍ରାର୍ଥୀଙ୍କୁ ଲିବିୟାରେ ଚାକିରୀ କରିବା ପାଇଁ ପ୍ରେରଣ କରାଯାଇଥିଲା । ସେମାନେ ସେଠାରେ ସଫଳତାର ସହିତ ୨ ବର୍ଷ କଣ୍ଟ୍ରାକ୍ଟ ସମୟ ଅତିବାହିତ କରି ସାରିଛନ୍ତି । ଆଉମଧ୍ୟ ୧୯୮୧ ଫେବ୍ରୁଆରୀ ମାସରେ ୨୩ ଜଣ ବୈଷୟିକ କାରିଗରଙ୍କୁ ମୋଜାମ୍ବିକ୍‌ରେ ଚାକିରୀ କରିବା ପାଇଁ ପଠାଯାଇଛି ।

# ଶିଳ୍ପ ସମୃଦ୍ଧିରେ ସହାୟତା କରିବା ପାଇଁ ମୁଖ୍ୟମନ୍ତ୍ରୀଙ୍କ ନିବେଦନ

ଓଡ଼ିଶାର ଦ୍ରୁତ ଶିଳ୍ପାୟନ ନିମନ୍ତେ ସମଗ୍ର ଦେଶର ଶିଳ୍ପପତିମାନେ ଶିଳ୍ପ ସ୍ଥାପନ ପାଇଁ ସେମାନଙ୍କର ପ୍ରସ୍ତାବିତ ପୁଞ୍ଜିର ଅନ୍ୟୂନ ଶତକଡ଼ା ଦଶଭାଗ ଓଡ଼ିଶାରେ ବିନିଯୋଗ କରନ୍ତୁ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ନିବେଦନ ଜଣାଇଛନ୍ତି । ସମଗ୍ର ଦେଶରେ ଶିଳ୍ପ ସ୍ଥାପନ ପାଇଁ ଏହି ପ୍ରସ୍ତାବିତ ପୁଞ୍ଜିର ପରିମାଣ ପ୍ରାୟ ଦଶ ହଜାର କୋଟି ଟଙ୍କା ହେବ ବୋଲି ସେ ପ୍ରକାଶ କରିଛନ୍ତି ।

ଡିସେମ୍ବର ୨୩ ମଧ୍ୟାହ୍ନରେ କଲିକତାଠାରେ ଅନୁଷ୍ଠିତ ଭାରତୀୟ ବାଣିଜ୍ୟ ଓ ଶିଳ୍ପ ମହାସଙ୍ଘର (ଫେଡ଼େରେସନ୍ ଅଫ୍ ଇଣ୍ଡିଆନ୍ ଚେମ୍ବର ଅଫ୍ କମର୍ସ ଆଣ୍ଡ ଇଣ୍ଡଷ୍ଟ୍ରି) ର କାର୍ଯ୍ୟନିର୍ବାହୀ ସମିତିର ଏକ ବୈଠକରେ ଉଦ୍‌ବୋଧନ ଦେଇ ମୁଖ୍ୟମନ୍ତ୍ରୀ କହିଥିଲେ ଯେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ବଳିଷ୍ଠ ନେତୃତ୍ୱରେ ଦେଶ ଦ୍ରୁତ ଶିଳ୍ପାୟନ ଦିଗରେ ଅଗ୍ରଗତି କରୁଥିବା ବେଳେ ଦେଶର ଶିଳ୍ପ ମାନଚିତ୍ରରେ ନିଜକୁ ପ୍ରତିଷ୍ଠିତ କରିବା ପାଇଁ ଓଡ଼ିଶା କଠୋର ପ୍ରୟାସ କରିଆସିଛି । ବିପୁଳ ପ୍ରାକୃତିକ ସଂପଦ ଓ ଦୃଢ଼ ରାଜନୈତିକ ମନୋବଳ ଦୃଷ୍ଟିରୁ ଏ ରାଜ୍ୟ ଅଦୂର ଭବିଷ୍ୟତରେ ମହାରାଷ୍ଟ୍ର ଓ ଗୁଜୁରାଟ ଭଳି ଏକ ଶିଳ୍ପ ସମୃଦ୍ଧ ରାଜ୍ୟରେ ପରିଣତ ହୋଇପାରିବ ବୋଲି ସେ ଦୃଢ଼ ଆଶା ପ୍ରକାଶ କରିଥିଲେ ।

ଓଡ଼ିଶାରେ ଶିଳ୍ପ ଉଦ୍ୟୋଗୀମାନଙ୍କ ପାଇଁ ଯେଉଁସବୁ ସୁବିଧା ସୁଯୋଗ ଦିଆଯାଉଛି, ସେ ସମ୍ପର୍କରେ ସୂଚନା ଦେଇ ମୁଖ୍ୟମନ୍ତ୍ରୀ କହିଲେ ଯେ ଉଚ୍ଚଶିକ୍ଷିତ କର୍ମଚାରୀମାନଙ୍କ ନିଷ୍ଠାପର ଉଦ୍ୟମ ଫଳରେ ଓଡ଼ିଶାର ପ୍ରଗତିଶୀଳ ଶିଳ୍ପନୀତି ବର୍ତ୍ତମାନ ବାସ୍ତବରେ ପରିଣତ ହେବାକୁ ଯାଉଛି । ଶିଳ୍ପ ବିକାଶ ପାଇଁ ଅନୁକୂଳ ଭିତ୍ତିଭୂମି ପ୍ରସ୍ତୁତ କରିବାରେ ଓଡ଼ିଶା ଯେପରି ଅଗ୍ରଗତି କରିଛି, ତାହା ନୂଆ ନୂଆ ଶିଳ୍ପ ସ୍ଥାପନ ନିମନ୍ତେ ଶିଳ୍ପୋଦ୍ୟୋଗୀମାନଙ୍କ ମଧ୍ୟରେ ଆଗ୍ରହ ସୃଷ୍ଟି କରିପାରିଛି । ଓଡ଼ିଶାକୁ ଆସିବାକୁ ଚାହୁଁଥିବା ଶିଳ୍ପୋଦ୍ୟୋଗୀମାନେ ଆମର ସମ୍ମାନିତ ଅତିଥି ବୋଲି ମୁଖ୍ୟମନ୍ତ୍ରୀ ପ୍ରକାଶ କରିଥିଲେ ।

ମୁଖ୍ୟମନ୍ତ୍ରୀ କହିଥିଲେ ଯେ ରାଜ୍ୟର ବିଭିନ୍ନ ଶିଳ୍ପାଞ୍ଚଳମାନଙ୍କରେ ଶିଳ୍ପ ଓ ବାଣିଜ୍ୟର ଦ୍ରୁତ ତଥା ଶୃଙ୍ଖଳିତ ବିକାଶ ନିମନ୍ତେ ଆବଶ୍ୟକୀୟ ସାହାଯ୍ୟ ଯୋଗାଇ ଦେବା ଉଦ୍ଦେଶ୍ୟରେ ଓଡ଼ିଶାରେ ଏକ ଶିଳ୍ପଭିତ୍ତି ଉନ୍ନୟନ ନିଗମ ସ୍ଥାପନ କରାଯାଇଛି । ଏହିସବୁ ଅଞ୍ଚଳକୁ ଶିଳ୍ପ ସ୍ଥାପନ ପାଇଁ ଉପଯୋଗୀ କରାଯାଇ ବୃହତ, ମଧ୍ୟମ ଓ କ୍ଷୁଦ୍ରଶିଳ୍ପ କ୍ଷେତ୍ରରେ ପୁଞ୍ଜି ବିନିଯୋଗ ନିମନ୍ତେ ଅନୁକୂଳ ବାତାବରଣ ସୃଷ୍ଟି କରାଯାଇଛି ।

ଶିଳ୍ପ ପ୍ରସାର ପାଇଁ ରାଜ୍ୟରେ ଦିଆଯାଉଥିବା ଅନ୍ୟାନ୍ୟ ସୁବିଧା ସୁଯୋଗ ସମ୍ପର୍କରେ ସୂଚନା ଦେଇ ମୁଖ୍ୟମନ୍ତ୍ରୀ କହିଥିଲେ ଯେ ସ୍ୱଳ୍ପକାଳୀନ ଓ ଦୀର୍ଘକାଳୀନ ଭିତ୍ତିରେ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ ବୃଦ୍ଧି ପାଇଁ ଏକ ସୁପରିକଳ୍ପିତ ଯୋଜନା ଗ୍ରହଣ କରାଯାଇଛି । ନୂଆ ନୂଆ ଶିଳ୍ପ ସ୍ଥାପନ ପାଇଁ ବିଦ୍ୟୁତ୍‌ଶକ୍ତି ଯୋଗାଇ ଦେବାରେ କୌଣସି ସମସ୍ୟା ଦେଖାଦେବ ନାହିଁ ବୋଲି ମୁଖ୍ୟମନ୍ତ୍ରୀ ପ୍ରତିଶ୍ରୁତି ଦେଇଥିଲେ ।

ସେ କହିଥିଲେ ଯେ ଓଡ଼ିଶାରେ ଶ୍ରମିକ ଅଶାନ୍ତି ନାହିଁ ଏବଂ ପରିଚାଳନା କର୍ତ୍ତୃପକ୍ଷ ଓ ଶ୍ରମିକମାନଙ୍କ ମଧ୍ୟରେ ବିଶେଷ ସୌହାର୍ଦ୍ଦ୍ୟପୂର୍ଣ୍ଣ ସଂପର୍କ ରହିଛି । ନିକଟରେ ଓଡ଼ିଶା ଗସ୍ତରେ ଆସି ଭାରତୀୟ ଶିଳ୍ପ ଉନ୍ନୟନ ବ୍ୟାଙ୍କର ଅଧ୍ୟକ୍ଷ ଶ୍ରୀ ପାଇ ଏହା ପ୍ରକାଶ୍ୟରେ ସ୍ୱୀକାର କରିଛନ୍ତି ।

ମୁଖ୍ୟମନ୍ତ୍ରୀ କହିଥିଲେ ଯେ ବର୍ତ୍ତମାନର ସରକାର କ୍ଷମତାକୁ ଆସିବାର ୪୫୦ ଦିନ ମଧ୍ୟରେ ୮୦୦ କୋଟି ଟଙ୍କାରୁ ଊର୍ଦ୍ଧ୍ୱ ପୁଞ୍ଜି ବିନିଯୋଗ କରାଯାଇ ବିଭିନ୍ନ ଧରଣର ପ୍ରାୟ ୨୫୦ ଟି ଶିଳ୍ପ ପ୍ରତିଷ୍ଠା କରାଯିବାର ବ୍ୟବସ୍ଥା କରାଯାଉଛି । ଏହାଛଡ଼ା ୨୦୦ କୋଟି ଟଙ୍କାରୁ ଊର୍ଦ୍ଧ୍ୱ ପୁଞ୍ଜି ବିନିଯୋଗ ଦ୍ୱାରା ଆହୁରି ପ୍ରାୟ ୫୦ ଟି ଶିଳ୍ପାନୁଷ୍ଠାନ ପ୍ରତିଷ୍ଠା କରାଯିବା ପାଇଁ ଉଦ୍ୟମ କରାଯାଉଛି । ସେ କହିଥିଲେ ଯେ ଚଳିତ ଯୋଜନା କାଳରେ କେନ୍ଦ୍ର ସରକାରଙ୍କ ପକ୍ଷରୁ ଓଡ଼ିଶାରେ ଶିଳ୍ପ ସ୍ଥାପନ ପାଇଁ ପ୍ରାୟ ୫,୦୦୦ କୋଟି ଟଙ୍କାର ପୁଞ୍ଜି ବିନିଯୋଗ କରାଯାଉଛି । ଏହାଛଡ଼ା ଚଳିତ ଯୋଜନାକାଳ ମଧ୍ୟରେ ଓଡ଼ିଶାରେ ପ୍ରତ୍ୟେକଟି ୧୦୦ ମାଇଲ୍ ଦୈର୍ଘ୍ୟ ବିଶିଷ୍ଟ ଦୁଇଟି ରେଳପଥ ନିର୍ମାଣ କରିବା ପାଇଁ ମଧ୍ୟ କେନ୍ଦ୍ର ସରକାର ସ୍ଥିର କରିଛନ୍ତି । କୋରାପୁଟଠାରୁ ରାୟଗଡ଼ା ଏବଂ ଗନ୍ଧମାର୍ଦ୍ଦନଠାରୁ ପାରାଦୀପ ମଧ୍ୟରେ ଏ ଦୁଇଟି ରେଳପଥ ନିର୍ମାଣ କରାଯିବ ।

ଓଡ଼ିଶାରେ ଶିଳ୍ପ ସ୍ଥାପନପାଇଁ ସବୁପ୍ରକାର ସୁବିଧା ରହିଥିବାରୁ ଏସବୁର ସୁଯୋଗ ଗ୍ରହଣ କରିବା ପାଇଁ ମୁଖ୍ୟମନ୍ତ୍ରୀ ସମଗ୍ର ଦେଶର ଶିଳ୍ପୋଦ୍ୟୋଗୀମାନଙ୍କୁ ଆହ୍ୱାନ ଜଣାଇଥିଲେ ।



# ସ୍ୱାଗତ ହେ ଶିଳ୍ପୋଦ୍ୟୋଗୀ

ଓଡ଼ିଶାରେ ନୂଆ ନୂଆ ଶିଳ୍ପ ସ୍ଥାପନ ପାଇଁ କଲିକତାରେ ପ୍ରତିଷ୍ଠିତ ଶିଳ୍ପୋଦ୍ୟୋଗୀମାନଙ୍କର ପ୍ରସ୍ତାବ ବିଚାର କରିବାରେ ଅଧିକ କୋହଳ ନୀତି ଅବଲମ୍ବନ କରିବା ନିମନ୍ତେ ରାଜ୍ୟ ସରକାର ସ୍ଥିର କରିଛନ୍ତି ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଘୋଷଣା କରିଛନ୍ତି ।

ଡିସେମ୍ବର ୨୩ ତାରିଖରେ କଲିକତାଠାରେ ସ୍ଥାନୀୟ ଶିଳ୍ପପତିମାନଙ୍କ ସହିତ ସାକ୍ଷାତ ଆଲୋଚନା କରି ମୁଖ୍ୟମନ୍ତ୍ରୀ ଓଡ଼ିଶାରେ ଶିଳ୍ପ ପ୍ରତିଷ୍ଠା ପାଇଁ ଯେଉଁଭଳି ଅନୁକୂଳ ସୁବିଧା ସୁଯୋଗ ରହିଛି,ସେ ସଂପର୍କରେ ସୂଚନା ଦେଇଥିଲେ । ସଂଧ୍ୟାରେ ମୁଖ୍ୟମନ୍ତ୍ରୀ ସ୍ଥାନୀୟ ଚାମ୍ବର ଅଫ୍ କମର୍ସର ପ୍ରତିନିଧି ଓ ରାଜ୍ୟରେ ପୁଂଜି ବିନିଯୋଗ କରିବାକୁ ଆଗ୍ରହୀ ଶିଳ୍ପପତିମାନଙ୍କ ସହିତ ଏକ ବୈଠକରେ ମିଳିତ ହୋଇଥିଲେ ।

ଓଡ଼ିଶାରେ ଶିଳ୍ପସ୍ଥାପନ ପାଇଁ ଅତି ସହଜରେ ବିଭିନ୍ନ ପ୍ରକାର ସୁବିଧା ସୁଯୋଗ ମିଳୁଥିବା ଦର୍ଶାଇ ମୁଖ୍ୟମନ୍ତ୍ରୀ ସ୍ଥାନୀୟ ଶିଳ୍ପପତିମାନଙ୍କୁ ଓଡ଼ିଶାରେ ପୁଞ୍ଜି ବିନିଯୋଗକରିବା ପାଇଁ ନିମନ୍ତ୍ରଣ ଜଣାଇଥିଲେ । ଏହା ଫଳରେ ସେମାନେ କେବଳ ଯେ ଅଧିକ ନିରାପଦ ଭାବରେ ସେମାନଙ୍କର ଶିଳ୍ପ ପ୍ରସାର କରିପାରିବେ ତାହା ନୁହେଁ, ଓଡ଼ିଶାର ଦ୍ରୁତ ଶିଳ୍ପାୟନ ଦିଗରେ ମଧ୍ୟ ବିଶେଷ ସହାୟକ ହୋଇପାରିବେ । ସେ କହିଥିଲେ ଯେ ମଧ୍ୟମ ଓ କ୍ଷୁଦ୍ର ଶିଳ୍ପରେ ପୁଞ୍ଜି ବିନିଯୋଗ ଉପରେ ରାଜ୍ୟ ସରକାର ଅଗ୍ରାଧିକାର ଦେଇଛନ୍ତି ।

ମୁଖ୍ୟମନ୍ତ୍ରୀ କହିଥିଲେ ଯେ କେବଳ ବୃହତ୍ ଧରଣର ଶିଳ୍ପ ଦ୍ୱାରା ଓଡ଼ିଶାର ଶିଳ୍ପୀକରଣ ସମ୍ଭବ ହେବନାହିଁ । ଓଡ଼ିଶାରେ ରାଷ୍ଟ୍ରାୟତ୍ତ ଶିଳ୍ପରୂପେ ପ୍ରତିଷ୍ଠିତ ହେଉଥିବା ବୃହତ୍ ଧରଣର ଶିଳ୍ପଗୁଡ଼ିକ ସଙ୍ଗେ ସଙ୍ଗେ ବହୁ ସଂଖ୍ୟକ ମଧ୍ୟମ ଓ କ୍ଷୁଦ୍ର ଧରଣର ଶିଳ୍ପ ପ୍ରତିଷ୍ଠା କରାଯିବାର ଆବଶ୍ୟକତା ରହିଛି ବୋଲି ସେ ଦର୍ଶାଇଥିଲେ ।

ଶିଳ୍ପ ପ୍ରସାର ଦ୍ୱାରା ସାଧାରଣ ଲୋକଙ୍କ ଅର୍ଥନୈତିକ ଉନ୍ନତି ବିଧାନ ପାଇଁ ରାଜ୍ୟର ସମସ୍ତ ଜିଲ୍ଲାରେ ଶିଳ୍ପୋଦ୍ୟୋଗକୁ ସଂପ୍ରସାରିତ କରିବା ନିମନ୍ତେ ସରକାର ନିଷ୍ପତ୍ତି କରିଛନ୍ତି ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ । ଅନୁନ୍ନତ ଓଡ଼ିଶାର ଅନୁନ୍ନତ ଅଞ୍ଚଳମାନଙ୍କରେ ଶିଳ୍ପସ୍ଥାପନ କରିବା-ପାଇଁ ଆଗ୍ରହୀ ଉଦ୍ୟୋଗୀମାନଙ୍କୁ ସ୍ୱତନ୍ତ୍ର ସୁବିଧା ସୁଯୋଗ ଦିଆଯିବ ବୋଲି ମଧ୍ୟ ସରକାର ସ୍ଥିର କରିଛନ୍ତି । ଏସବୁ ଅଞ୍ଚଳରେ ଶିଳ୍ପ ସ୍ଥାପନ ପାଇଁ ଆବଶ୍ୟକୀୟ ଆର୍ଥିକ ତଥା ବୈଷୟିକ ସାହାଯ୍ୟ ସହଯୋଗ ଯୋଗାଇଦେବା ପାଇଁ ରାଜ୍ୟ ଶିଳ୍ପ ଭିତ୍ତି ଉନ୍ନୟନ ନିଗମ ସମେତ ବିଭିନ୍ନ ଶିଳ୍ପ ଉନ୍ନୟନ ସଂସ୍ଥା ପ୍ରତିଷ୍ଠା କରାଯାଇଛି । ଏହାଛଡ଼ା ରାଜ୍ୟରେ ବର୍ତ୍ତମାନ ଥିବା ରାଜନୈତିକ ସ୍ଥିରତା ଓ କେନ୍ଦ୍ର ସହିତ ସୁସଂପର୍କ ମଧ୍ୟ ବହିରାଗତ ଶିଳ୍ପପତିମାନଙ୍କ ପକ୍ଷରେ ବିଶେଷ ସହାୟକ ହେବ ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ ।

ଶିଳ୍ପ କ୍ଷେତ୍ରରେ ଓଡ଼ିଶା ବହୁକାଳ ଧରି କିପରି କଲିକତା ଉପରେ ନିର୍ଭରଶୀଳ ହୋଇଆସିଛି, ସେ ସଂପର୍କରେ ସୂଚନା ଦେଇ ମୁଖ୍ୟମନ୍ତ୍ରୀ ଓଡ଼ିଶାର ଶିଳ୍ପାୟନ ଦିଗରେ କଲିକତାର ଶିଳ୍ପପତିମାନଙ୍କ ସହଯୋଗ କାମନା କରିଥିଲେ । ବିଗତ ୧୬ ମାସର ଅନୁଭୂତି ବର୍ଣ୍ଣନା କରି ସେ କହିଥିଲେ ଯେ କେବଳ ଗତ ଗୋଟିଏ ବର୍ଷ ମଧ୍ୟରେ ରାଜ୍ୟରେ ୧,୯୦୦ ଟି କ୍ଷୁଦ୍ର ଶିଳ୍ପ ସ୍ଥାପନ ପାଇଁ ଲକ୍ଷ୍ୟ ରଖାଯାଇଥିବା ସ୍ଥଳେ ୨,୧୦୦ ଟି କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା କରାଯାଇପାରିଛି । ପ୍ରାୟ ୨୦୦ କୋଟି ଟଙ୍କାର ପୁଂଜି ବିନିଯୋଗ ଦ୍ୱାରା ଆହୁରି ୫୦ ଟି ଶିଳ୍ପ ସ୍ଥାପନ କରାଯିବାର ଉଦ୍ୟମ ହେଉଛି । ଏହାଛଡ଼ା ୮୦୦ କୋଟି ଟଙ୍କାର ପୁଂଜି ବିନିଯୋଗ ଦ୍ୱାରା ପ୍ରାୟ ୨୦୦ ଟି ନୂଆ ଶିଳ୍ପ ସ୍ଥାପନ ପାଇଁ ଚିହ୍ନଟ ହୋଇଗଲଣି ।

ମୁଖ୍ୟମନ୍ତ୍ରୀ କହିଥିଲେ ଯେ ୧୫୦୦ କୋଟି ଟଙ୍କା ବ୍ୟୟରେ ନିର୍ମିତ ହେଉଥିବା ଆଲୁମିନା–ଆଲୁମିନିୟମ ପ୍ରକଳ୍ପ ୧୯୮୫ ସୁଦ୍ଧା ସଂପୂର୍ଣ୍ଣ ହେବ, ଦ୍ୱିତୀୟ ଇସ୍ପାତ କାରଖାନାରେ ୧୯୮୬ ସୁଦ୍ଧା ଉତ୍ପାଦନ ଆରମ୍ଭ ହେବ ଏବଂ ୩୦୦ କୋଟି ଟଙ୍କା ବ୍ୟୟରେ ନିର୍ମିତ ହେଉଥିବା ସାର କାରଖାନା ଯୋଜନା ଦ୍ରୁତ ଅଗ୍ରଗତି କରୁଛି ।

ଭାରତ ଚାମ୍ବର ଅଫ୍ କମର୍ସ ପକ୍ଷରୁ ଆୟୋଜିତ ଏହି ବୈଠକରେ ସ୍ୱାଗତ ଭାଷଣ ଦେଇ ସଂସ୍ଥାର ଅଧ୍ୟକ୍ଷ ଶ୍ରୀ ଆର୍. ଏଲ୍. ମାହେଶ୍ୱରୀ ଓଡ଼ିଶାରେ ଶିଳ୍ପ ସ୍ଥାପନର ବିଭିନ୍ନ ସମ୍ଭାବନା ସଂପର୍କରେ ସୂଚନା ଦେଇଥିଲେ । ଭାରତୀୟ ବାଣିଜ୍ୟ ଓ ଶିଳ୍ପ ମହାସଂଘର ପୂର୍ବତନ ଅଧ୍ୟକ୍ଷ ଶ୍ରୀ ଏଚ୍. ଏସ୍. ସିଂଘାନିଆ ଓଡ଼ିଶାର ଏକ ଶିଳ୍ପପତିରୂପେ ନିଜର ୨୦ ବର୍ଷର ଅଭିଜ୍ଞତା ବର୍ଣ୍ଣନା କରି ଶିଳ୍ପ ପରିଚାଳନା ପାଇଁ ଓଡ଼ିଶାକୁ ଏକ ଶାନ୍ତିପୂର୍ଣ୍ଣ ରାଜ୍ୟ ବୋଲି ପ୍ରକାଶ କରିଥିଲେ ।



## ଜନସଂଖ୍ୟା ନିୟନ୍ତ୍ରଣ ସଂପର୍କରେ ଶିକ୍ଷା କାର୍ଯ୍ୟକ୍ରମ

### ଏ ବାବଦରେ 'ୟୁନେସ୍କୋ' ତରଫରୁ ୧୮ ଲକ୍ଷ ଟଙ୍କା ମଞ୍ଜୁରି

ଜନସଂଖ୍ୟା ବୃଦ୍ଧିଜନିତ ବିଭିନ୍ନ ସାମାଜିକ ତଥା ଅର୍ଥନୈତିକ ସମସ୍ୟାର କୁପ୍ରଭାବ ପରିବାର, ସମାଜ ଓ ସର୍ବୋପରି ସମଗ୍ର ଦେଶ ଉପରେ କିପରି ପଡୁଛି, ସେ ସମ୍ପର୍କରେ ବ୍ୟାପକ ଗଣ ଚେତନା ସୃଷ୍ଟି କରିବା ଉଦ୍ଦେଶ୍ୟରେ ଚଳିତ ଷଷ୍ଠ ପଞ୍ଚବାର୍ଷିକ ଯୋଜନା ମଧ୍ୟରେ ଓଡ଼ିଶାରେ ବିଶେଷ ଶିକ୍ଷା କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି । ଜାତିସଂଘର ଶିକ୍ଷା, ବିଜ୍ଞାନ ଓ ସାଂସ୍କୃତିକ ସଂସ୍ଥା (ୟୁନେସ୍କୋ)ର ଆର୍ଥିକ ସହାୟତାରେ କେନ୍ଦ୍ର ସରକାର ରାଜ୍ୟରେ ଗତ ଅପ୍ରେଲ ମାସଠାରୁ ଏହି ଶିକ୍ଷା କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରୁଛନ୍ତି ଏବଂ ଏହା ୩ ବର୍ଷ ପର୍ଯ୍ୟନ୍ତ ଚାଲିବ । ସର୍ବଭାରତୀୟ ସ୍ତରରେ ଥିବା ଜାତୀୟ ପ୍ରଶିକ୍ଷଣ ଗବେଷଣା ତାଲିମ ପରିଷଦଙ୍କ ମାଧ୍ୟମରେ ଏଥିପାଇଁ ଏକ ସୁଚିନ୍ତିତ ତଥା ଧାରାବାହିକ କାର୍ଯ୍ୟକ୍ରମ ଆରମ୍ଭ କରାଯାଇ ଜନସଂଖ୍ୟା ସମ୍ପର୍କରେ, ବିଶେଷତଃ ଭାବୀ ନାଗରିକମାନଙ୍କ ମନରେ ଜାଗରଣ ସୃଷ୍ଟି କରିବାକୁ ଉଦ୍ୟମ ହେଉଛି । ତାଲିମ ପାଉଥିବା ଶିକ୍ଷକ ଏବଂ ଛାତ୍ରମାନଙ୍କୁ ସଂଶ୍ଳିଷ୍ଟ କରାଇବା ଲାଗି ପ୍ରାଥମିକ, ମାଧ୍ୟମିକ, ସେକେଣ୍ଡାରୀ ସ୍କୁଲ ଏବଂ ଶିକ୍ଷକ ତାଲିମ କଲେଜଗୁଡ଼ିକରେ ଏଥିପାଇଁ ଉପଯୁକ୍ତ ପାଠ୍ୟକ୍ରମ ପ୍ରଚଳନ କରାଯାଉଛି ।

ଏ ବାବଦରେ 'ୟୁନେସ୍କୋ' ଆଜି ସୁଦ୍ଧା ଓଡ଼ିଶା ପାଇଁ ୧୭ ଲକ୍ଷ ୯୪ ହଜାର ଟଙ୍କା ମଞ୍ଜୁର କରିଛନ୍ତି ଏବଂ ରାଜ୍ୟ ସରକାରଙ୍କ ପକ୍ଷରୁ ୩ ଲକ୍ଷ ୫୮ ହଜାର ଟଙ୍କା ବ୍ୟୟ ବରାଦ କରାଯାଇଛି ।

ରାଜ୍ୟ ସରକାରଙ୍କ ତରଫରୁ ଏହି କାର୍ଯ୍ୟକ୍ରମକୁ ରାଜ୍ୟ ଶିକ୍ଷା ପ୍ରଶିକ୍ଷଣ ତାଲିମ ପରିଷଦ କାର୍ଯ୍ୟକାରୀ କରିବେ । ଏହି ପରିଷଦକୁ ପରାମର୍ଶ ଦେବା ପାଇଁ ଶିକ୍ଷା ବିଭାଗ ଶାସନ ସଚିବଙ୍କ ଅଧ୍ୟକ୍ଷତାରେ ଏକ ୧୨ ଜଣିଆ ରାଜ୍ୟସ୍ତରୀୟ ପରାମର୍ଶଦାତା ବୋର୍ଡ ଗଠନ କରାଯାଇଛି । ଏହି ବୋର୍ଡର ଅନ୍ୟାନ୍ୟ ସଦସ୍ୟମାନେ ହେଲେ, ଉଭୟ ଡି-ପି-ଆଇ-, ସେକେଣ୍ଡାରୀ ବୋର୍ଡ ଓ ମାଧ୍ୟମିକ ବୋର୍ଡର ସଭାପତି, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗର ନିର୍ଦ୍ଦେଶକଦ୍ୱୟ, ଆକାଶବାଣୀ ନିର୍ଦ୍ଦେଶକ, ମାଧ୍ୟମିକ ବୋର୍ଡରେ ଥିବା ୩ଟି ସିଲାବସ୍ କମିଟିର ଅଧ୍ୟକ୍ଷମାନେ, ରାଜ୍ୟ ଶିକ୍ଷା ପ୍ରଶିକ୍ଷଣ ତାଲିମ ପରିଷଦର କର୍ତ୍ତୃପକ୍ଷ । ଏହି ପରିଷଦର ନିର୍ଦ୍ଦେଶକ ବୋର୍ଡର ଆବାହକ ଅଛନ୍ତି ।

ବିଭିନ୍ନ ଜିଲାରେ ଏହି ସ୍ୱତନ୍ତ୍ର ଶିକ୍ଷା କାର୍ଯ୍ୟକ୍ରମର ପ୍ରସାର ଲାଗି ୬ଟି ସରକାରୀ ତାଲିମ କଲେଜକୁ ଦାୟିତ୍ୱ ଦିଆଯାଇଛି ଏବଂ ସେଗୁଡ଼ିକ ରାଜ୍ୟ ପ୍ରଶିକ୍ଷଣ ଗବେଷଣା ତାଲିମ ପରିଷଦର ନିର୍ଦ୍ଦେଶାନୁଯାୟୀ ଆଞ୍ଚଳିକ କେନ୍ଦ୍ର ରୂପେ କାର୍ଯ୍ୟ କରିବେ । ତଦନୁଯାୟୀ କଟକସ୍ଥ ରାଧାନାଥ ଶିକ୍ଷକ ତାଲିମ କଲେଜକୁ କଟକ ଓ କେନ୍ଦୁଝର ଜିଲା, ବାଲେଶ୍ୱର ଶିକ୍ଷକ ତାଲିମ କଲେଜକୁ ବାଲେଶ୍ୱର ଓ ମୟୂରଭଞ୍ଜ ଜିଲା, ଅନୁଗୁଳ ତାଲିମ କଲେଜକୁ ଢେଙ୍କାନାଳ ଓ ପୁରୀ ଜିଲା, ସମ୍ବଲପୁର ତାଲିମ କଲେଜକୁ ସମ୍ବଲପୁର ଓ ସୁନ୍ଦରଗଡ଼ ଜିଲାର ଦାୟିତ୍ୱ ଦିଆଯାଇଛି । ସେହିପରି ବଲାଙ୍ଗୀର ଶିକ୍ଷକ ତାଲିମ କଲେଜର ଦାୟିତ୍ୱରେ ବଲାଙ୍ଗୀର ଓ କଳାହାଣ୍ଡି ଜିଲା ଏବଂ ବ୍ରହ୍ମପୁର ତାଲିମ କଲେଜ ଦାୟିତ୍ୱରେ ଗଞ୍ଜାମ, ଫୁଲବାଣୀ ଓ କୋରାପୁଟ ଜିଲାଗୁଡ଼ିକୁ ରଖାଯାଇଛି । ଏହା ବ୍ୟତୀତ ଜିଲାଗୁଡ଼ିକରେ ୧୨୦ଟି ତାଲିମ କେନ୍ଦ୍ର ଖୋଲାଯାଇ ବହୁସଂଖ୍ୟକ ଶିକ୍ଷକ ଏବଂ ତତ୍ତ୍ୱାବଧାରକଙ୍କୁ ଜନସଂଖ୍ୟା ସମ୍ପର୍କୀୟ ବିଭିନ୍ନ ତାଲିମ ଦେବାର ବ୍ୟବସ୍ଥା ହୋଇଛି । ଏହି ତାଲିମ କେନ୍ଦ୍ରଗୁଡ଼ିକରୁ ମାଧ୍ୟମିକ ତାଲିମ ବିଦ୍ୟାଳୟଗୁଡ଼ିକରେ ୬୯ଟି କେନ୍ଦ୍ର ଏବଂ କେତେକ ସରକାରୀ ହାଇସ୍କୁଲରେ ଅବଶିଷ୍ଟ ୫୧ଟି ତାଲିମ କେନ୍ଦ୍ର ପରିଚାଳିତ ହେବ ।

ଏହି ଶିକ୍ଷା କାର୍ଯ୍ୟକ୍ରମର ସଫଳତା ପାଇଁ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ, ହରିଜନ ଓ ଆଦିବାସୀ କଲ୍ୟାଣ, ଗୋଷ୍ଠୀ ଉନ୍ନୟନ ଓ ଗ୍ରାମ୍ୟ ପୁନର୍ଗଠନ, ସୂଚନା ଓ ଲୋକ ସମ୍ପର୍କ, ସାଂସ୍କୃତିକ, ଶିଳ୍ପ ଏବଂ କୃଷି ବିଭାଗ ସମେତ ଆକାଶବାଣୀ ଓ ଦୂରଦର୍ଶନର କର୍ତ୍ତୃପକ୍ଷମାନେ ସାହାଯ୍ୟ ଓ ସହଯୋଗ କରିବେ ବୋଲି ନିଷ୍ପତ୍ତି ହୋଇଛି ।

## ୧୯ ଲକ୍ଷ ୫୬ ହଜାର ମିଟର ହସ୍ତତନ୍ତ ବସ୍ତ୍ର ଉତ୍ପାଦିତ

ଗତ ନଭେମ୍ବର ମାସରେ ରାଜ୍ୟରେ ୧୩୮୫ ଜଣ ବୁଣାକାରଙ୍କୁ ସମବାୟ ପରିସରଭୁକ୍ତ କରାଯାଇଛି ଏବଂ ୪ ଗୋଟି ନୂତନ ବୁଣାକାର ସମବାୟ ସମିତି ଗଢ଼ାଯାଇଛି । ବର୍ତ୍ତମାନ ସୁଦ୍ଧା ଏହି ୪ ଗୋଟି ସମିତିକୁ ମିଶାଇ ରାଜ୍ୟରେ ମୋଟ ୪୬୫ଟି ବୁଣାକାର ସମବାୟ ସମିତି ଗଢ଼ାଯାଇଛି ଏବଂ ମୋଟ ୪୨,୧୧୬ ଜଣ ବୁଣାକାର ସମବାୟ ପରିସରଭୁକ୍ତ ହୋଇ ସାରିଛନ୍ତି ।

ଉପରୋକ୍ତ ମାସରେ ୭୯ ଲକ୍ଷ ୩୬ ହଜାର ଟଙ୍କା ମୂଲ୍ୟର ୧୯ ଲକ୍ଷ ୫୬ ହଜାର ମିଟର ହସ୍ତ ତନ୍ତ ବସ୍ତ୍ର ଉତ୍ପାଦିତ ହେବା ସଙ୍ଗେ ସଙ୍ଗେ ୫୨ ଲକ୍ଷ ୬୩ ହଜାର ଟଙ୍କା ମୂଲ୍ୟର ୧୩ ଲକ୍ଷ ୬୧ ହଜାର ମିଟର ହସ୍ତତନ୍ତ ବସ୍ତ୍ର ବିକ୍ରି କରାଯାଇଛି ।



OGP—MP-VI (I. & P. R.) 87—15,000—21-1-1982



ଓଡ଼ିଶାର ରାଜ୍ୟପାଳ ଶ୍ରୀ ସି. ଏମ୍. ପୁନାଚ୍ଛଙ୍କ ସହ ଭୁବନେଶ୍ୱର ରାଜଭବନଠାରେ କଲିକତାସ୍ଥିତ ବ୍ରିଟିଶ୍ ଡେପୁଟି ହାଇ କମିଶନର ମି: ଏ. ଜି. ହେଡେଙ୍କ ଆଲୋଚନା



ନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ୧୯୮୨ ରୀ ୪ ତାରିଖ ଦିନ କୃଷି ପ୍ରଦର୍ଶନୀ ଉଦ୍‌ଘାଟନ କଲାପରେ ଷ୍ଟଲ୍ ବୁଲି ଦେଖୁଛନ୍ତି ।




ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଦ୍ୱାରା ୧୯୮୧ ଡିସେମ୍ବର ୨୧ ତାରିଖ ଦିନ ଖୋର୍ଦ୍ଧା ଶିଳ୍ପାଞ୍ଚଳର ଭିତ୍ତିପ୍ରସ୍ତର ସ୍ଥାପିତ ।




୯୮୧ ଡିସେମ୍ବର ୧୦ ତାରିଖ ଦିନ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଦ୍ୱାରା ଫୁଲବାଣୀ ମହିଳା ମହାବିଦ୍ୟାଳୟର ଭିତ୍ତି ସ୍ଥାପନ ।

ଦୁଃଖୀ ରତନରେ ! ମୋ ପାପ ନୟନେ
ତୋର ଦରଶନ ପାଇଁ
ମରି ହଜି ଯିବା ଆଗରୁ ତୋ'ପାଶେ
ଦୋଳାରେ ଆସିଚି ଧାଇଁ

ମୋର ଦାନା କନା ପାଇଁ ମନ ଦେଲୁ
ଭାଙ୍ଗିବି ମୁଁ କେତେ ଦିନ
ବଞ୍ଚି ରହିଥାଉ ହୃଦୟେ ତୋରରେ,
ଦୁଃଖୀ ସେବା ଚିରଦିନ






କାଠ କଣ୍ଢେଇରେ, ଧୂଳି ବାଲି ଘରେ,
ଖେଳିବାକୁ ବେଳ କାହିଁ ?
ସରକାର ମୋତେ କାମ ଦେଇଅଛି
ତସର କାଟିବାପାଇଁ ।

ନିଜ ଦୁଃଖ ନିଜେ ଶୁଣି ଦେଉଥିଲୁ
ସରୁ ନଥିଲୁ ତ ଦିନ,
ଏବେ ସେଲାଇରେ ବେଳ ନ ଅଣ୍ଟଇ,
କାହିଁରେ ନ ଲାଗେ ମନ ।





ଗାଁ ଗହଳର ଦୀନ ଦୁଃଖୀଙ୍କର
ଦୁଃଖକୁ ପୋଛିବା ପାଇଁ,
'ମାଲିକ' ଆଦରେ ଆଗକର ଗଢେ !
କିଏ ବା କରିବ ନାହିଁ ?

PRINTED AT ORISSA GOVERNMENT PRESS, CUTTACK-10

